ଅନ୍ତର୍ଭାରତୀୟ ପୁସ୍ତକମାଳା

# ଏକୋଇଶଟି ବଂଗଳା ଗଳ୍ପ

ସଂପାଦନା

ଅରୁଣ କୁମାର ମୁଖୋପାଧ୍ୟାୟ

ଅନୁବାଦ

ସଚ୍ଚିଦାନନ୍ଦ ରାଉତରାୟ



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ISBN 81-237-0210-8

ପ୍ରଥମ ସଂସ୍କରଣ 1984 (ଶକାବ୍ଦ 1906)
ଦ୍ୱିତୀୟ ସଂସ୍କରଣ 1993 (ଶକାବ୍ଦ 1914)
© ସମ୍ପୃକ୍ତ ଲେଖକଗଣ
ଓଡ଼ିଆ ଅନୁବାଦ © ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, 1984
Original Title: Ekushati Bangla Galpa (*Bengali*)
Ekoeshati Bangla Galpa (*Oriya*)

**ଟ. 38.00**

ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ,
ନୂଆଦିଲ୍ଲୀ–110016 କର୍ତ୍ତୃକ ପ୍ରକାଶିତ ।

# ଭୂମିକା

ଭାରତୀୟ ପାଠକସମାଜ ପାଇଁ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟର 'ଆଦାନପ୍ରଦାନ' ପ୍ରକାଶନ ଯୋଜନାର ଅଂତର୍ଭୁକ୍ତ ଏଇ ବଂଗଳା ଛୋଟ ଗଳ୍ପ ସଂକଳନଟି । ଆମ ଚିନ୍ତା କାଳର ମଣିଷ ଓ ସମାଜର ଛବି ଏହି ସଂକଳନରୁ ମିଳିବ ।

ବଂଗଳା ଛୋଟ ଗଳ୍ପର ପ୍ରଥମ ଶିଳ୍ପୀ ରବୀଂଦ୍ରନାଥ ଠାକୁର । ତାଂକ ହାତରେ ଛୋଟ ଗଳ୍ପ ପ୍ରାଣ ପାଇଛି, ଆଶ୍ଚର୍ଯ୍ୟ ବିକାଶ ଲାଭ କରିଛି । ଛୋଟ ଗଳ୍ପର ସବୁ ଦିଗରେ ତାଂକ ପ୍ରତିଭାର ସ୍ୱାକ୍ଷର ରହିଛି । ପ୍ରେମ, ପ୍ରକୃତି, ସମାଜ, ସମସ୍ୟା; ଦାର୍ଶନିକତା, କାବ୍ୟଧର୍ମିତା, ରୋମାନ୍ସ, ଇତିହାସ, ବ୍ୟଙ୍ଗ ସବୁ କ୍ଷେତ୍ରରେ ହିଁ ତାଂକର ସ୍ୱଚ୍ଛଂଦ ବିହାର । 1890 ଠାରୁ 1940 ଖ୍ରୀଷ୍ଟାବ୍ଦ ପର୍ଯ୍ୟଂତ ଅର୍ଦ୍ଧଶତାବ୍ଦୀ ଧରି ସେ ଗଳ୍ପ ଲେଖିଛନ୍ତି ।

ରବୀଂଦ୍ରନାଥଂକ ସମକାଳରେ ତ୍ରୈଲୋକ୍ୟନାଥ ମୁଖୋପାଧ୍ୟାୟ, ପ୍ରଭାତ କୁମାର ମୁଖୋପାଧ୍ୟାୟ, ଶରତଚଂଦ୍ର ଚଟ୍ଟୋପାଧ୍ୟାୟ ଓ ପ୍ରମଥ ଚୌଧୁରୀ ବଂଗଳା ଛୋଟ ଗଳ୍ପ ଭଣ୍ଡାରକୁ ବିଚିତ୍ର ଶସ୍ୟରେ ସମୃଦ୍ଧ କରନ୍ତି ।

ବର୍ତ୍ତମାନ ସଂକଳନରେ ଆମର ଚିନ୍ତାକାଳର ଛୋଟଗଳ୍ପ କ୍ଷେତ୍ରରୁ ଗଳ୍ପଗୁଡ଼ିକ ନିର୍ବାଚନ କରାହୋଇଛି । ରବୀଂଦ୍ରନାଥ ଓ ଶରତଚଂଦ୍ର ଠିକ୍ ଆମର ଚିନ୍ତାକାଳର ନୁହନ୍ତି । ରବୀଂଦ୍ରନାଥ ଓ ଶରତ୍-ପରବର୍ତ୍ତୀ ବଂଗଳା ଛୋଟ ଗଳ୍ପରେ ଗତ ପଚିଶ ବର୍ଷର ବଂଗାଳୀ ମାନସିକତାର ବିଚିତ୍ର ଅଭିଜ୍ଞତା ରୂପାୟିତ ହୋଇଛି । ସେହି କାରଣରୁ ଶରତ୍–ପରବର୍ତ୍ତୀ ଛୋଟ ଗଳ୍ପ ପର୍ବରୁ ସାଂପ୍ରତିକ ପର୍ବ ପର୍ଯ୍ୟଂତ ଯେଉଁ ବିଚିତ୍ର ଗଳ୍ପ-ସଂମ୍ଭାର, ତାରି ଭିତରୁ ହିଁ ଏ ଗଳ୍ପଗୁଡ଼ିକ ସଂକଳିତ ହୋଇଛି ।

ବଂଗଳା ସାହିତ୍ୟରେ ରବୀଂଦ୍ରନାଥ–ଶରତଚଂଦ୍ରଂକ ଅବ୍ୟବହିତ ପରବର୍ତ୍ତୀ ଯେଉଁ ପର୍ବ, ତାର ନାମ କଲ୍ଲୋଳ ପର୍ବ । ଏଇ ପର୍ବର ସମୟ ସୀମା 1923 ରୁ 1939 ଖ୍ରୀଷ୍ଟାବ୍ଦ । କଲ୍ଲୋଳ-କାଳୀକଲମ ଗୋଷ୍ଠୀର ଛୋଟ ଗଳ୍ପ ଲେଖକମାନେ ବିଶ୍ୱବ୍ୟାପୀ ଅର୍ଥନୈତିକ ଅନାଟନ ଓ ଭାରତରେ, ଇଂରେଜ ବିରୋଧୀ ଆନ୍ଦୋଳନ ସତ୍ତ୍ୱେ ମୋଟା ମୋଟି ଶାଂତି ଓ ସୁସ୍ଥିତ ମଧ୍ୟରେ ଗଳ୍ପ ଲେଖି ପାରିଥିଲେ । ଏହି

ପର୍ବରେ ଦେଖା ଦେଇଲେ ତାରଶଂକର ବଂଦୋପାଧ୍ୟାୟ, ଅଚିନ୍ତ୍ୟକୁମାର ସେନଗୁପ୍ତ, ପ୍ରେମେଂଦ୍ର ମିତ୍ର, ବୁଦ୍ଧଦେବ ବସୁ, ସୁଶୀଳ ଘଟକ (ଯୁବନାଶ୍ୱ) ପ୍ରବୋଧକୁମାର ସାନ୍ୟାଲ, ମାଣିକ ବଂଦୋପାଧ୍ୟାୟ, ଅନ୍ନଦାଶଂକର ରାୟ, ବନଫୁଲ; ବିଭୂତିଭୂଷଣ ମୁଖୋପାଧ୍ୟାୟ, ଶରବିଂଦ ବଂଦୋପାଧ୍ୟାୟ; ରବୀଂଦ୍ରନାଥ ମୈତ୍ର, ପରିମଳ ଗୋସ୍ୱାମୀ; ସଜନୀକାନ୍ତ ଦାସ; ପ୍ରେମାଙ୍କୁର ଆତର୍ଥି, ସରୋଜକୁମାର ରାୟ ଚୌଧୁରୀ, ପ୍ରମଥନାଥ ବିଶୀ, ଗଜେନ୍ଦ୍ରକୁମାର ମୈତ୍ର; ଆଶାପୂର୍ଣ୍ଣା ଦେବୀ, ମନୋଜ ବସୁ; ବିମଳ ମିତ୍ର । ଏଇ ପର୍ବରେ ହିଁ ଦେଖାଦେଇଛନ୍ତି ପରଶୁରାମ (ରାଜଶେଖର ବସୁ) ଉତ୍କୃଷ୍ଟ ବ୍ୟଂଗକୌତୁକ ହାସ୍ୟରସର ଗଳ୍ପ ନେଇ ।

କଲ୍ଲୋଲ—ପରବର୍ତ୍ତୀ ପର୍ବ କହିଲେ ଯେଉଁ ସମୟକୁ ଆମେ ବୁଝୁ, ତା'ର ପୂର୍ବ ସୀମା ଦ୍ୱିତୀୟ ମହାସମରର ସୂଚନା, ଉତ୍ତରସୀମା ସ୍ୱାଧୀନତାପ୍ରାପ୍ତି ଓ ଦେଶ—ବିଭାଗ ୧୯୩୯-୪୭ ଖ୍ରୀଷ୍ଟାବ୍ଦ । ଅଳ୍ପ ବହୁତ ଏଇ ଦଶ ବର୍ଷ ବଂଗାଳୀ ସମାଜ ଓ ରାଷ୍ଟ୍ରରେ କଳାନ୍ତରର ପଦ । ମନ୍ୱନ୍ତର, ବିମାନ-ଆକ୍ରମଣ କଂଟ୍ରୋଲ ଓ ରେଶନିଂ, ଅର୍ଥନୈତିକ ବିପର୍ଯ୍ୟୟ, ନୈତିକ ମୂଲ୍ୟବୋଧର ବିନାଶ, ଦଂଗା, ସ୍ୱାଧୀନତା, ଦେଶବିଭାଗ ଓ ଉଦ୍‌ବାସ୍ତୁ ସ୍ରୋତ ଏଇ ପର୍ବ ମଧ୍ୟ ଦେଇ ଏହି ବିପର୍ଯ୍ୟୟକାରୀ ଘଟଣା ମାନ ଘଟି ଯାଇଛି ।

ଏଇ ପର୍ବରେ ଯେଉଁମାନେ ଗଳ୍ପ ଲେଖାରେ ହାତ ଦେଇଛନ୍ତି, ସାହିତ୍ୟ ଚେତନାର ଉନ୍ମେଷ ସଂଗେ ସଂଗେ ଏଇ ଆଲୋଡ଼ିତ ବିପର୍ଯ୍ୟସ୍ତ ଯୁଗ ସଂବଂଧରେ ସେମାନଂକର ପ୍ରତ୍ୟକ୍ଷ ପରିଚୟ ଘଟିଛି । ଏଇ ପର୍ବର ସାମାଜିକ ବାତାବରଣ ଅଶାନ୍ତ; ବିକ୍ଷୁବ୍‌ଧ । ଏଇ ବାତାବରଣ ସେମାନଂକ ଦୃଷ୍ଟିକୁ କିଛିଟା ବ୍ୟାହତ, ତୀକ୍ଷ୍ଣ ଓ ଆବିଳ କରି ଦେଇଛି । କଲ୍ଲୋଳ ପର୍ବର ରୋମାଂଟିକତା, ବୋହେମିଆନ ମନୋଭାବ ଓ ନଗରଛିଣ୍ଡା ପ୍ରେମର ଅଭିଯାନ ଏଇ ପର୍ବର ଗଳ୍ପରେ ଅନୁପସ୍ଥିତି । ଆମ ସମାଜରେ ଏଇ ପର୍ବରେ ପରିବର୍ତ୍ତନ ଦ୍ରୁତ ଓ ଅସଂଖ୍ୟ । ସମାଜ ଓ ବ୍ୟକ୍ତି ଜୀବନରେ କେତେ ଭଂଗାଗଢ଼ା କେତେ ସମସ୍ୟା, କେତେ ଅସାଧାରଣ ବ୍ୟତିକ୍ରମ ସବୁ କିଛି ମିଳି ଯେଉଁ ପରିବର୍ତ୍ତନର ପ୍ରବଳ ପ୍ରବାହ ତାହା ଗଳ୍ପକାରର କୌତୂହଳ ତଥା ମେଧାଶକ୍ତିକୁ ତୀକ୍ଷ୍ଣ କରିଛି, ସୁପ୍ରଚଳିତ ବିଧି ନିୟମ ଶିଥିଳ ହୋଇଛି, କେତେ ଉତ୍‌କେଂଦ୍ରିକତା ଓ ଅସ୍ୱାଭାବିକତା ଦେଖା ଦେଇଛି, କେତେ ସୂକ୍ଷ୍ମ ଅତୃପ୍ତିରେ ମଣିଷ ପୀଡ଼ିତ, କେତେ ରୁଚିବିକାର ଭିତରେ ନୂତନର ପ୍ରତ୍ୟାଶା, କେତେ ନୂଆ ଶପଥ ଓ ଅଙ୍ଗୀକାରରେ ଜୀବନ ସଂଗ୍ରାମର ନୂତନ ରୂପ—ଯୁଦ୍ଧପୂର୍ବ ଯୁଗରେ ତାହା ଥିଲା ଅଚିନ୍ତନୀୟ । ଯୁଦ୍ଧ ଏକ ଭୟାବହ ଭୂମିକମ୍ପ । ତା' ଫଳରେ ଭଦ୍ରତାର ଆବରଣ, ନୀତିର ରକ୍ଷାକବଚ

ପାରିବାରିକ ମାନସଂଭ୍ରମ, ମାୟା-ମମତା, ଆନୁଗତ୍ୟ, ଧର୍ମସଂସ୍କାର—ସବୁକିଛି ଏଇ ଭୂମିକମ୍ପରେ ଧୂଳିସାତ୍ ହୋଇଛି । ତାରି ଭିତରେ ଶୁଣଯାଏ ନୂତନ ସମାଜ ଗଢ଼ିବାର ସ୍ୱପ୍ନ ଆଉ ଶପଥର ଉଚ୍ଚାରଣ ।

ଏଇ ସବୁ ପରିବର୍ତ୍ତନ ଯେଉଁମାନଙ୍କର ଛୋଟ ଗଳ୍ପରେ ଅଭିସିକ୍ତ ହୋଇଛି, ସେମାନେ ହେଲେ, ସୁବୋଧ ଘୋଷ, ସତୀନାଥ ଭାଦୁଡ଼ି, ସନ୍ତୋଷ କୁମାର ଘୋଷ, ନାରାୟଣ ଗଙ୍ଗୋପାଧ୍ୟାୟ, ନରେନ୍ଦ୍ରନାଥ ମିତ୍ର, ନବେନ୍ଦୁ ଘୋଷ, ନନୀ ଭୌମିକ, ସୁଶୀଲ ଜାନା, ଜ୍ୟୋତିରିନ୍ଦ୍ର ନନ୍ଦୀ । ଏମାନଙ୍କ ସଙ୍ଗେ ପୂର୍ବ ତେ ଯେଉଁ ସବୁ ଗଳ୍ପକାରଙ୍କ ନାମ ସ୍ମରଣୀୟ ସେମାନେ ହେଲେ ଜଗଦୀଶ ଗୁପ୍ତ, ମାଣିକ ବନ୍ଦୋପାଧ୍ୟାୟ, ଅଚିନ୍ତ୍ୟ କୁମାର ସେନଗୁପ୍ତ, ପ୍ରବୋଧକୁମାର ସାନ୍ୟାଲ ପ୍ରମୁଖ କଲ୍ଲୋଳଗୋଷ୍ଠୀଭୁକ୍ତ ଲେଖକ, ଏବଂ ବିଭୂତି ଭୂଷଣ ବନ୍ଦୋପାଧ୍ୟାୟ, ତାରାଶଙ୍କର ବନ୍ଦୋପାଧ୍ୟାୟ, ମନୋଜ ବସୁ, ସରୋଜ କୁମାର ରାୟଚୌଧୁରୀ, ଆଶାପୂର୍ଣ୍ଣା ଦେବୀ ପ୍ରମଥନାଥ ବିଶୀ, ପରିମଳ ଗୋସ୍ୱାମୀ, ବନଫୁଲ, ବାଣୀ ରାୟ, ସୁଶୀଲ ଘୋଷ ଚାରୁଚନ୍ଦ୍ର ଚକ୍ରବର୍ତ୍ତୀ ପ୍ରମୁଖ ବିଚିତ୍ରା-ଶନିବାରର ଚିଠି ଗୋଷ୍ଠୀଭୁକ୍ତ ଲେଖକ ବୃନ୍ଦ ।

ଏହି କାଳ-ପର୍ବ ପରେ ଆସିଲା ରକ୍ତାକ୍ତ ଖଣ୍ଡିତ ସ୍ୱାଧୀନତା । ଆସିଲା ଉଦ୍‌ବାସ୍ତୁର ସ୍ରୋତ, ଆସିଲା ବ୍ୟାପକତାର ସାମାଜିକ ଅନୈତିକତା ବିଚ୍ୟୁତି । ସ୍ୱାଧୀନତାର ତୋରଣ-ଦ୍ୱାରରେ ଯେଉଁ ଆଶା ଓ ଆନନ୍ଦର ବାଣୀ ଉଚ୍ଚାରିତ ହେଲା ତାକୁ ଛପାଇ ଉଠିଲା ଉଦ୍‌ବାସ୍ତୁ ଆଉ ବଂଚିତର କ୍ରନ୍ଦନ । ଏଇ ବିକ୍ଷୁବ୍ଧ ରକ୍ତାକ୍ତ ସ୍ୱଦେଶ ଭୂମିରେ ଦେଖା ଦେଲେ ଏକ ନୂଆ ଶ୍ରେଣୀର ଗଳ୍ପ ଲେଖକ—ସମରେଶ ବସୁ, ବିମଳ କର, ରମାପଦ ଚୌଧୁରୀ, ସୟଦ ମୁଜତାବ ଅଲୀ, ହରିନାରାୟଣ ଚଟ୍ଟୋପାଧ୍ୟାୟ, ପ୍ରଭାତ ଦେବ ସରକାର, ଶାନ୍ତିରଞ୍ଜନ ବନ୍ଦୋପାଧ୍ୟାୟ, ସ୍ୱରାଜ୍ୟ ବନ୍ଦୋପାଧ୍ୟାୟ, ପ୍ରାଣତୋଷ ଘଟକ ଓ ଆଶୁତୋଷ ମୁଖୋପାଧ୍ୟାୟ, ଏମାନଙ୍କର ସମସ୍ତଙ୍କର ଜନ୍ମ 1916 ରୁ 1922 ଖ୍ରୀଷ୍ଟାବ୍ଦ ମଧ୍ୟରେ । ଦ୍ୱିତୀୟ ବିଶ୍ୱସମରର ସୂଚନା ମୁହୂର୍ତ୍ତରେ କଲିକତା ତଥା ବଙ୍ଗଳାର ସାବେକ୍ ପାଲଟିବାର ଅଦ୍ଭୁତ ମୁହୂର୍ତ୍ତରେ ଏମାନେ ଯୌବନରେ ପଦାର୍ପଣ କରିଛନ୍ତି । ସେହିଦିନରୁ ଆଜି ପର୍ଯ୍ୟନ୍ତ ଏମାନେ ସଜୋରରେ ଲେଖି ଚାଲିଛନ୍ତି । ସମାଜ ଓ ବ୍ୟକ୍ତି ଜୀବନରେ ବିଭିନ୍ନ ପରିବର୍ତ୍ତନର ସାକ୍ଷ୍ୟ ବହନ କରିଛି ତିରିଶ ବର୍ଷ (1940–1970) ମଧ୍ୟରେ ଲେଖା ଏମାନଙ୍କର ଛୋଟ ଗଳ୍ପ ସବୁ ।

ବଙ୍ଗଳା ଛୋଟ ଗଳ୍ପର ଆଉ ଗୋଟାଏ ପର୍ବ ଏଇ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସଙ୍କୁଚିତ ହୋଇଛି । ଏହି ପର୍ବର ଅନ୍ତର୍ଗତ ଯେଉଁ ତରୁଣ ଗଳ୍ପକାର ବୃନ୍ଦ, ସେମାନଙ୍କର ଜନ୍ମ ହୋଇଛି (1930 ରୁ 1940) ମଧ୍ୟରେ । ବସ୍ତୁତଃ ଏମାନେ ନୂତନ

ପ୍ରଜନ୍ମର ଲେଖକ । ସୈୟଦ୍ ମୁସାର୍ଫ ସିରାଜ, ମତି ନନ୍ଦୀ, ସୁନିଲ ଗଙ୍ଗୋପାଧ୍ୟାୟ, ଶ୍ୟାମଳ ଗଙ୍ଗୋପାଧ୍ୟାୟ, ବରେନ୍ ଗଙ୍ଗୋପାଧ୍ୟାୟ, ଶୀର୍ଷେନ୍ଦୁ ମୁଖୋପାଧ୍ୟାୟ, ପ୍ରଫୁଲ୍ଲ ରାୟ, ଅତୀନ୍ ବନ୍ଦୋପାଧ୍ୟାୟ, ଦିବ୍ୟେନ୍ଦୁ ପାଳିତ, ଦୀପେନ୍ଦ୍ରନାଥ ବନ୍ଦୋପାଧ୍ୟାୟ ଦେବେଶ ରାୟ, ସନ୍ଦୀପନ ଚଟ୍ଟୋପାଧ୍ୟାୟ, ଲୋକନାଥ ଭଟ୍ଟାଚାର୍ଯ୍ୟ, ଶଙ୍କର ଏହି ପର୍ବର ଅନ୍ତର୍ଭୁକ୍ତ ଗଳ୍ପ ଲେଖକ ।

ଏଇ ନୂତନ ପ୍ରଜନ୍ମର ଗଳ୍ପ ଲେଖକମାନଙ୍କ ସଙ୍ଗରେ ଅବ୍ୟବହିତ–ପୂର୍ବ ପର୍ବର ଗଳ୍ପ ଲେଖକ ମାନଙ୍କର କୌଣସି ମେଳ ନାହିଁ । ଏମାନେ ଏକ ନୂତନ ଗୋଷ୍ଠୀ ।

ଏମାନେ ଆଗର କିଛି ହିଁ ଦେଖି ନାହାନ୍ତି । କୌଣସି ଉତ୍ତରାଧିକାରର କୃତଜ୍ଞତା ବା ସ୍ମୃତି ହୀନ ହୋଇ ଏମାନେ ଜନ୍ମ ହୋଇଛନ୍ତି ବା ବଡ଼ ହୋଇଛନ୍ତି ବ୍ଲାକ୍-ଆଉଟ୍, ଦୁର୍ଭିକ୍ଷ, ଦଙ୍ଗା, ରକ୍ତାକ୍ତ ସ୍ୱାଧୀନତାର ଅବ୍ୟବହିତ ପରେ ଉଦ୍‌ବାସ୍ତୁ କଲୋନୀ ଗୁଡ଼ିକର ପାଖା ପାଖି ବା ବାହାରେ ପୂର୍ବତନ ଗୋଷ୍ଠୀଭୁକ୍ତ ଲେଖକମାନଙ୍କ ଦୃଷ୍ଟିରେ ଏମାନେ ନୂଆ ବ୍ଲଡ୍ ଗ୍ରୁପ୍ । ପୂର୍ବବର୍ତ୍ତୀ ଲେଖକମାନଙ୍କ ସଙ୍ଗରେ ନାହିଁ କୌଣସି ଆତ୍ମୀୟତା, ଏମାନେ ଯେତେବେଳେ ବଡ଼ ହେବାକୁ ଆରମ୍ଭ କରିଛନ୍ତି, ସେତେବେଳେ ଯୌଥ ଜୀବନରେ ସୌମ୍ୟ ସୌଧ ଭାଙ୍ଗି ଚୁରମାର ହୋଇ ଯାଇଛି । ଶ୍ରଦ୍ଧା ଭକ୍ତି ଖାଲି ଶୁଣା କଥା । ନାରୀ ପୁରୁଷର ସମ୍ପର୍କ ଅନ୍ୟ ରକମ, ଅର୍ଥାତ୍ ମୌଳ ତାଗିଦ ଗୁଡ଼ିକ ଠିକ୍ ଅଛି, ପୁରୁଣା କୌଣସି ମାୟାବି ସ୍ମୃତି ନାହିଁ । ବୈରୀ ବିଶ୍ୱରେ ବାସ କରିବା ପାଇଁ ସେମାନେ ତିଆର ହେଉଛନ୍ତି୍ କେବେ ଏକଜୁଟ ହୋଇ ବା ହେବାର ବାହାନା କରି ପ୍ରକୃତରେ ଏମାନେ ଆହୁରି ବେଶି ନିଃସଙ୍ଗ କିଛି ନ ହେଲେ ବି ସତତ କ୍ଷୁବ୍ଧ, ପ୍ରତିକାର ଖୋଜିଛନ୍ତି ଅଶେଷ ବିକାରରେ, ନତୁବା ସ୍ନାୟୁ ଜ୍ୱରରେ ।

ତରୁଣ ଗଳ୍ପ ଲେଖକମାନଙ୍କୁ ପୂର୍ବବର୍ତ୍ତୀ ପ୍ରଜନ୍ମର ଲେଖକମାନେ ଏଇ ଦୃଷ୍ଟିରେ ଦେଖିଛନ୍ତି । ମନେହୁଏ ଦୁଇ ପ୍ରଜନ୍ମର ଲେଖକମାନେ ପରସ୍ପର ବିଚ୍ଛିନ୍ନ ଦ୍ୱୀପ । କଲ୍ଲୋଲ-ପର୍ବର ଲେଖକମାନଙ୍କ ସଙ୍ଗରେ ଦ୍ୱିତୀୟ ବିଶ୍ୱସମରକାଳୀନ ଲେଖକମାନଙ୍କ ମାନସିକ ବ୍ୟବଧାନ ଦୃଷ୍ଟିଭଙ୍ଗିର ତଫାତ୍ ଯେତେଟା, ତରୁଣ ଲେଖକମାନଙ୍କ ସଙ୍ଗରେ ଦ୍ୱିତୀୟ ବିଶ୍ୱସମରକାଳୀନ ଲେଖକମାନଙ୍କର ବ୍ୟବଧାନ ତାଠାରୁ ଅନେକ କଲ୍ଲୋଲର ରୋମାଣ୍ଟିକ୍‌ତା ପରବର୍ତ୍ତୀ ପର୍ବରେ ନ ଥିଲା, କିନ୍ତୁ ଜୀବନରେ ଆନନ୍ଦ ଓ ମୂଲ୍ୟବୋଧ ପ୍ରତି ଶ୍ରଦ୍ଧା ଥିଲା । ଆଜିକାଲିର ତରୁଣ ଲେଖକମାନଙ୍କର ତା' ନାହିଁ । ଏ କ୍ଷେତ୍ରରେ ବ୍ୟବଧାନ ଦୁସ୍ତର; କୌଣସି କୌଣସି କ୍ଷେତ୍ରରେ ଅନତିକ୍ରମ୍ୟ ।

ବ୍ୟବଧାନ କେବଳ ମାନସିକତାରେ ନାହିଁ, ଭାଷାରେ ଓ ଆଙ୍ଗିକରେ;

କେବଳ ଜୀବନ ଦର୍ଶନରେ ନୁହେଁ, ଜୀବନର ନାନା ଉପକରଣର ଅଭିନବ ବ୍ୟବହାରରେ । ଏଥିରୁ ଜଣାଯାଏ, କେବଳ ରବୀନ୍ଦ୍ରନାଥଙ୍କଠାରେ ହିଁ ବଙ୍ଗଳା ଛୋଟ ଗଳ୍ପର ଚରମ ପରକାଷ୍ଠା ହୋଇ ନାହିଁ । ବଙ୍ଗଳା ଛୋଟ ଗଳ୍ପ ବାରବାର ଆଗେଇଛି, ମୋଡ଼ ଫେରିବାର ଚେଷ୍ଟା କରିଚି, ଘଣ୍ଟା ବାଜିଚି ବାରବାର, ପରୀକ୍ଷା–ନିରିକ୍ଷାରେ କେବେ ଭଟ୍‌ଟା ପଡ଼ି ନାହିଁ, ଜୀବନକୁ ନୂତନ ଭାବରେ ଦେଖିବାର ଉତ୍ସାହ କେବେ ସରି ଯାଇ ନାହିଁ । କେତୋଟି ନିର୍ଦ୍ଦିଷ୍ଟ ସର୍ତ୍ତମାନି ନିର୍ଦ୍ଦିଷ୍ଟ ପୃଷ୍ଠା ସଂଖ୍ୟା ମଧ୍ୟରେ ନିର୍ଦ୍ଦିଷ୍ଟ ସଂଖ୍ୟକ ଛୋଟ ଗଳ୍ପ ନିର୍ବାଚନ କରିବାର ତାଗିଦାରେ ଯେଉଁ ସଙ୍କଳନ କରିଛି ତା' ସମସ୍ତଙ୍କର ମନଃପୂତ ହେବ, ଏପରି ଭରସା କରି ନାଇଁ । କିନ୍ତୁ ଯେଉଁଠି ନାନା ସର୍ତ୍ତ ଓ ସୀମାରେଖା ମାନି ଚଳିବାକୁ ହୁଏ, ସେଠି ଏହାଛଡ଼ା ଅନ୍ୟ କୌଣସି ପଥ ନାହିଁ । ରବୀନ୍ଦ୍ର–ଶରତ୍ ପରବର୍ତ୍ତୀ ବଙ୍ଗଳା ଛୋଟ ଗଳ୍ପର ତିନି ପର୍ଯ୍ୟାୟର ଫଳସମ୍ଭାର ଏତେ ବୈଚିତ୍ର୍ୟ ପୂର୍ଣ୍ଣ ଏବଂ ସମୃଦ୍ଧିଶାଳୀ ଯେ କୌଣସି ନିର୍ବାଚନ ହିଁ ମନକୁ ପାଇବ ନାହିଁ । ତେଣୁ ପାଠକର ସହାନଭୂତି ଓ ପ୍ରଶ୍ରୟ ଉପରେ ନିର୍ଭର କରିବା ଛଡ଼ା ମୋର ଅନ୍ୟ ଉପାୟ ନାହିଁ ।

ଏଇ ଛୋଟ ଗଳ୍ପ ସଙ୍କଳନରୁ ଆଧୁନିକ ବଙ୍ଗଳା ସାହିତ୍ୟର ଦୁଇଜଣ ଦିଗପାଳକଙ୍କର ଦୁଇଟି ଗଳ୍ପ (ବିଭୂତିଭୂଷଣ ବନ୍ଦୋପାଧ୍ୟାୟଙ୍କ 'ଆହ୍ୱାନ' ଆଉ ମାଣିକ ବନ୍ଦୋପାଧ୍ୟାୟଙ୍କ ର 'ନମୂନା') ଶେଷ ମୁହୂର୍ତ୍ତରେ ବାଦ୍ ଦେବାକୁ ହେଲା, କାରଣ ବର୍ଷେ କାଳ ଚେଷ୍ଟା କରି ମଧ୍ୟ କପିରାଇଟ୍ ସମସ୍ୟାର କୌଣସି ସମାଧାନ ହୋଇ ପାରିଲା ନାହିଁ । ଆଶାକରେ ପାଠକ ସମାଜ ଆମର ଏଇ ଅନିଚ୍ଛାକୃତ ତ୍ରୁଟି ମାର୍ଜନା କରିବେ ।

ବଙ୍ଗଭାଷା ଓ ସାହିତ୍ୟ ବିଭାଗ,
କଲିକତା ବିଶ୍ୱବିଦ୍ୟାଳୟ ।

ଅରୁଣକୁମାର ମୁଖୋପାଧ୍ୟାୟ

# ସୂଚୀପତ୍ର


| | | | |
|---|---|---|---|
| 1. | ଶେଷକଥା | ତାରାଶଙ୍କର ବନ୍ଦୋପାଧ୍ୟାୟ | 1 |
| 2. | ଭୋଟର ସାବିତ୍ରୀବାଳା | ବନଫୁଲ | 12 |
| 3. | କାପ୍ତାନ | ଅଚିନ୍ତ୍ୟ କୁମାର ସେନଗୁପ୍ତ | 17 |
| 4. | ରାଣୀ ପସନ୍ଦ | ଅନ୍ନଦା ଶଙ୍କର ରାୟ | 32 |
| 5. | ନିରୁଦ୍ଦେଶ | ପ୍ରେମେନ୍ଦ୍ର ମିତ୍ର | 51 |
| 6. | ଧସ | ସତୀନାଥ ଭାଦୁଡ଼ି | 64 |
| 7. | ସୀମାରେଖାର ସୀମା | ଆଶାପୂର୍ଣ୍ଣା ଦେବୀ | 82 |
| 8. | ଠଗିନୀ | ସୁବୋଧ ଘୋଷ | 95 |
| 9. | ଗୋଟିଏ ପ୍ରେମର ଗଳ୍ପ | ନରେନ୍ଦ୍ର ନାଥ ମିତ୍ର | 112 |
| 10. | ମାନନୀୟ ପରୀକ୍ଷକ ମହାଶୟ ସମୀପେଷୁ | ନାରାୟଣ ଗଙ୍ଗୋପାଧ୍ୟାୟ | 128 |
| 11. | ଛୋଟ କଥା | ସନ୍ତୋଷ କୁମାର ଘୋଷ | 142 |
| 12. | ଗଛ | ଜ୍ୟୋତିରୀନ୍ଦ୍ର ନନ୍ଦୀ | 155 |
| 13. | ପ୍ରାଣ-ପିପାସା | ସମରେଶ ବସୁ | 166 |
| 14. | ବନ୍ଧୁ ପାଇଁ ଭୂମିକା | ବିମଳ କର | 178 |
| 15. | ଭାରତ ବର୍ଷ | ରମାପଦ ଚୌଧୁରୀ | 192 |
| 16. | ତାସର ଘର ପରି | ସୈୟଦ ମୁସ୍ତାଫା ସିରାଜ | 205 |
| 17. | ଶେଷ ଅପରାହ୍ନର ଦୁଇଟି ମୁଖ | ମତି ନନ୍ଦୀ | 221 |
| 18. | ଖରା | ସୁନୀଲ ଗଙ୍ଗୋପାଧ୍ୟାୟ | 232 |
| 19. | ବଞ୍ଚିବା ପାଇଁ | ପ୍ରଫୁଲ୍ଲ ରାୟ | 246 |
| 20. | ମୋତେଦେଖନ୍ତୁ | ଶୀର୍ଷେନ୍ଦୁ ମୁଖୋପାଧ୍ୟାୟ | 259 |
| 21. | ପଶ୍ଚାତ୍ ଭୂମି | ଦେବେଶ ରାୟ | 272 |
| | ଲେଖକ ପରିଚିତି | | 287 |

# ଶେଷ କଥା

## ତାରାଶଙ୍କର ବନ୍ଦୋପାଧ୍ୟାୟ

ଲାଟ ଭରତପୁର, ପରଗଣା ପୂର୍ବଚକ, ସଂପତ୍ତିଟା ଖୁବ୍ ବଡ ସଂପତ୍ତି । ଗଛର ପତ୍ରସବୁ କୂଳ ପରି, ଡାଳ ଢିଂକି ପରି, ଘଷା ହରିଚଂଦନ ପରି ମୁଲାୟମ ମାଟି–ଦିହରେ ବୋଳିଦେଲେ ଦିହ ଶୀତଳ ହୋଇଯାଏ । ଯାହା କେବଳ ବିହନ ବୀଜ ପଡ଼ିବା ପାଇଁ ଅନାଇଁ ରହିଛି—ଦେଖୁ ଦେଖୁ ଫସଲରେ ଭରିଯାଏ ବିଲ । ତା' ଛଡ଼ା ଭରତପୁରରେ ନ ମିଳେ କଣ ? ସୁନାର ସଂପତ୍ତି ଯାହା କହନ୍ତି ଖାଲି ତୁଣ୍ଡର କଥା ନୁହେଁ । ଆଗେ ଲୋକେ ନଈ ବାଲିରୁ ସୁନା ଦାନା ବାହାର କରୁଥିଲେ । ମାଟି ତଳେ ସତରେ ସୁନା ଅଛି । ପ୍ରଜାମାନେ ସବୁ ବେକୁବ୍ ଦଳ । ଚାଷ କରି ଖାଆନ୍ତି, ମାଡ ଖାଇ ହସନ୍ତି, କହନ୍ତି, ତୁମେ କଣ ମୋର ପର ? ଦିହରେ ଛୋଟ ଲୁଗା ଖଣ୍ଡେ, କପାଳରେ ତିଳକ ଚିତା, ବେକରେ ତୁଳସୀମାଳର କଂଠୀ, କଳା ରଂଗ । ଏଇଥିରୁ ହିଁ ବେକୁବ୍‌ପଣ ପ୍ରମାଣ ହୋଇଯାଏ । ସମସ୍ତେ ଚାଷୀ ଲୋକ । ଜମିଦାର ପକ୍ଷ କହନ୍ତି, ଚଷା । ଆଗେ ଭଗ ଦେଉଥିଲେ, ଚାଷ କରୁଥିଲେ ଆଉ ଗୁଡାଖୁ ଟାଣୁଥିଲେ, ଶୋଉଥିଲେ । ଏବେ ଆଉ ସେ କାଳ ନାଇଁ, କଳି ବୋଧହୁଏ ଚାରି ପାଆ ପୂରହୋଇ ଉଠିଛି, ତା' ଫଳରେ ଆଜି କାଲି ଅଧା ପେଟେ ଖାଆନ୍ତି, ରୋଗରେ ଧଇଁ ପେଲନ୍ତି କୌଣସି ପ୍ରକାରେ ଚାଷ କରନ୍ତି, ଭଗବାନଙ୍କୁ କେହି କେହି ଡାକନ୍ତି, କେହି ବି ଡ଼ାକେନା ଅର୍ଥାତ୍ କିଏ କାଂଦେ, କିଏ ବସି ବସି ଦାନ୍ତ ନିକିଟେ ।

ପଦ୍ମା ସେପାରି ସାହୁ ମହାଶୟମାନେ ଏବେ ଭରତପୁରର ଜମିଦାର । ଆଗେ ଥିଲା ମଂଗଳକୋଟର ମିଆଁମାନଂକ ଜମିଦାରି । ସାହୁ ମହାଶୟଂକ ବଂଶ ଯେତେବେଳେ ଏଠିକି ବ୍ୟବସାୟ କରିବାକୁ ଆସିଥିଲେ । ମିଆଁ ମାନଂକ ଭିତରେ ଘରୋଇ ଝଗଡ଼ା ଲାଗିବା ପରେ ଏକ ପକ୍ଷ ସାହୁ ମାନଂକଠାରୁ କିଛି ଟଂକା ଧାର ନେଇଥିଲେ । ଧାର୍ ସହସ୍ର ଧାରରେ ଯେତେବେଳେ ବଢ଼େ, ସେତେବେଳେ ଆଉ କଣ

ରକ୍ଷା ଅଛି ? ତା' ପରେ ଏଇ ଗ୍ରୁଷୀ ପ୍ରଜାମାନଂକର ପୋଉଁମାନେ ମାତବ୍ବର, ସେମାନେ ବି ଯେତେବେଳେ ପ୍ରାୟ ସମସ୍ତେ ସାକ୍ଷୀ ଦେଇଥିଲେ ଏଇ ସାହୁମାନଂକ ତରଫରୁ ।

ଥାଉ ସେ ସବୁ କଥା । ତେବେ ଇଲଗେ ସେମାନେ ନିଜ ନିଜ ଗାଲରେ—ସେ କଥା ବି ଥାଉ, ପୁରୁଣା କସୁଂଦୀ* ଘାଂଟି ଲଭ ନାହିଁ ? ବିସ୍ତାରିତଭବେ କହିବାକୁ ଗଲେ ପୋଥି ବଢ଼ିଯିବ । ଏକାବେଳେକେ କହିବା ହିଁ ଭଲ । ପଦ୍ମା ସେପାରି ସାହୁ ମହାଶୟଗଣ ବର୍ତ୍ତମାନ ଜମିଦାର । ଗାଆଁ ଗାଆଁକେ କଚିରି, ପ୍ରତି କଚେରିରେ ନାୟେବ, ବଡ଼ କଚେରିରେ ବଡ଼ ନାୟେବ । ଏହାଛଡ଼ା ପଦ୍ମା ସେପାରି ନିଜ ଦେଶରୁ ଆମଦାନି କରି ପାଇକ ଥାଟ ଆଣି ପକ୍କା ବଂଦୋବସ୍ତ କରି ରଖିଛନ୍ତି ସାହୁ ମହାଶୟମାନେ । ଏହାଛଡା ସାହୁ ମହାଶୟମାନଂକର ଜ୍ଞାତିଗୋଷ୍ଠିର ଅନେକେ ଆସି ଦୋକାନପାଟ ଖୋଲି ବ୍ୟବସାୟ ବାଂଧି ବସିଛନ୍ତି । ଅନେକ କଳକାରଖାନା ମଧ୍ୟ ବସାଇଛନ୍ତି, ଇଆଡ଼ର ଅନେକ ଲେକ ଆଜିକାଲି କଳରେ ବି ଖଟନ୍ତି । ଏମାନେ ସମସ୍ତେ ବି କେହି ଦାନ୍ତ ନିକିଟନ୍ତି, କିଏବା କାନ୍ଦନ୍ତି, କାନ୍ଦନ୍ତୁ ବା ଦାନ୍ତ ନିକିଟନ୍ତୁ, ଦିନ ଗ୍ରୁଲିଯାଉଥିଲ ଭଲରେ ମଂଦରେ । ଜମିଦାରର କର୍ମଗ୍ରୁରୀମାନଂକ ସଂଗରେ ଗଛର ମାଲିକାନା ନେଇ ଝଗଡ଼ା କରି, ଜମିର ସ୍ୱତ୍ୱ ନେଇ ଆପତ୍ତି ଜଣାଇ, ପାଇକମାନଂକ ଖୋରକୀ ରେଜି ପ୍ରଭୃତି ନେଇ 'ନା–ନା' କରି, ସାହୁ ଦୋକାନଦାରମାନଂକ ସାଂଗରେ ଲୁଣର ଦର, ତେଲ ଦର ଏବଂ କପଡ଼ା ଦର ନେଇ ବାକ୍–ଗ୍ରୁତୁରି କରି, କଳକାରଖାନାର ମଜୁରୀ ନେଇ ବିଶମ୍ବାଦ କରି ନାନା ଗୋଳଘାଣ୍ଟ ମଧ୍ୟ ଦେଇ ଦିନ କଟି ଯାଉଥିଲ ଏକ ରକମର । ଘଣା ଗ୍ରୁରିପଟେ ଅଂଧପୁଟୁଳି ବଂଧା ବଳଦର ଶିଙ୍ଗ ହଲଇ ମୋଡ଼ ଖାଇଲ ପରି ସମସ୍ତେ ଗ୍ରୁଲିଥିଲେ । ତେଲ ବି ବାହାରୁଥିଲ—ତାହା ନେଉଥିଲ ତେଲୀ, ଆଉ ପିଡ଼ିଆ ବି ହେଉଥିଲ—ତୀକୁ ଖାଉଥିଲ ବଳଦ ।

ହଠାତ୍ ଭୂମିକଂପରେ ହଲି ଉଠିବା ପରି ସବୁ ହଲି ଉଠିଲ । ଭୟାନକ କାଂଡ଼ ଘଟିଗଲ । ସାହୁ ମହାଶୟମାନଂକ ସଂଗରେ ହଲଦୀବାଡ଼ିରୁ 'ସାଇଁ' ଜମିଦାରମାନଙ୍କର ସୀମାନା ନେଇ ଫୌଜଦାରି ହୋଇଗଲ । ନିପଟ-ଫୌଜଦାରି, କୁହାନାହିଁ. ବୋଲ ନାହିଁ, ନୋଟିଶ ନାଇଁ, ପତ୍ର ନାଇଁ, ସାଇଁ ବାବୁଂକ ପାଇକ ଦଳ

* କସୁଂଦୀ—ଷୋଡ଼ଶ ଖଣ୍ଡ । ପୁରଣା କଥାକୁ ଦୋହରାଇବା ବିଷୟରେ ଏହି ବାକ୍ୟଟି ଏକ ବଙ୍ଗଳା ପ୍ରବାଦ ।

ହଠାତ୍ ବଣ-କାଂତାର ଭାଂଗି, ଲଠିବାଡ଼ି-ଢେଙ୍କା-ବଲ୍ଲମ ନେଇ ଭରତପୁର ପାଖ ଲଟ—ଲଟ ଧର୍ମପୁରରେ ଚଢ଼ାଉ କଲେ । ବେଦିଠିରେ ଢୁକି—ମାରଧର ଖୁଣ୍ଟଖମ କରି ଦଖଲ କରିଦେଲେ ସବୁ । ସାହୁବାବୁଂକ ଦଳ ଆସି ଭରତପୁର କତିରିରେ ଢୁକିଲେ । ଖାଲି ସେତିକି ନୁହେଁ, ସାଇଁ ବାବୁମାନଂକ ଲୋକବାକଂକ କାଣ୍ଡ କାରଖାନା ଦେଖି ଭରତପୁର ସମ୍ବଂଧରେ ମଧ୍ୟ ଚିନ୍ତାର କାରଣ ଘଟିଗଲା । ଲଠି-ଠେଂଗାରେ ତେଲ ମାଖି ତଲୋୟରରେ ଶାଣ ଦେଇ ଏପରି ତୋଡ଼ ଜମାଇଲେ ଯେ, ଭରତପୁରରେ ପଶି ଯେ ସେମାନେ ଶେଷକୁ ଗୋଟାଏ ହାଂଗାମା ଘଟାଇ ପାରନ୍ତି—ଏଥିରେ ଆଉ କାହାର ସଂଦେହ ରହିଲା ନାହିଁ । ଗ୍ରିଆଡ଼େ ହା ହାଲୋଳ ପଡ଼ିଗଲା । ଭରତପୁରର କଚିଚିରେ ସାଜ—ସାଜ ରବ ଉଠିଲା ।

ଗ୍ରଷୀମାନେ ସବୁ ଚମକି ଉଠିଲେ । ଦୁଇ ଲଢୁଆ ଷଂଢ଼ର ପାଦ ତଳେ ଦୁବଘାସର ଦଶା ସେମାନଂକର । ସେମାନେ ସବୁ ଚଂଚଳ ହୋଇଉଠିଲେ ।

ବୁଢ଼ା ଲାଲମୋହନ ପାଂଡ଼େ ଭରତପୁରର ଗ୍ରଷୀମାନଂକ ଭିତରେ ଗ୍ରଇଁ । ଛୋଟ କରି ବାଳ କଟା, ଦାଁତ ସବୁ ପଡ଼ି ଯାଇଛି, ମିଠା ମିଠା ହସ, ବୁଢ଼ା ଭାବନାରେ ମୁଂଡ଼ରେ ହାତ ବୁଲାଇବାକୁ ଲାଗିଲା ।

ଦଳକୁ ଦଳ ଭରତପୁର ଲଟର ଲୋକମାନେ ଆସି ବୁଢାକୁ ଘେରି ବସିଲେ ।

ସସମ୍ମାନେ ହାତ ଜୋଡ଼ କରି ବୁଢ଼ା ପାକୁଆ ପାଟିରେ ମାଆ କୋଳର ଶିଶୁମାନେ ଯେଉଁ ହସ ହସନ୍ତି ନିଜର ବାପ, ଦାଦା, ଭାଇ ଭଉଣୀମାନଂକୁ ଦେଖି, ସେଇ ହସ ହସି କହିଲା, ଆସଂତୁ ପଂଚ ।

ସମସ୍ତେ ବସିଗଲେ । ତା'ପରେ କହିଲେ କେବଳ ଗୋଟିଏ କଥା, କର୍ତ୍ତା* ? ଏଇ ଗୋଟିଏ କଥାରେ ହିଁ ସେମାନଂକର ସବୁ କୁହା ହୋଇଗଲା । କର୍ତ୍ତା ସବୁ ବୁଝିନେଲା ।

ବୁଢ଼ାର ସୁଖରେ ହସ, ଦୁଃଖରେ ବି ହସ, ଭାବନାରେ ବି ହସ । ବୁଢ଼ା ଭାବୁ ଭାବୁ ହସିବାକୁ ଲାଗିଲା ।

ଗୌରପୁରର ଜଣେ କହିଲା, ସାଉବାବୁ ଆମ ଜମିର ମାଲିକାନା ମାନୁ

---

* କର୍ତ୍ତା—କର୍ତ୍ତା

ନାହାନ୍ତି ! ଆମେ କାହିଁକି ଛାଡ଼ିଦେବା ପ୍ରତିଷ୍ଠା ? ସାଉବାବୁମାନେ ଜମିଦାର–ସାଇଁ ବାବୁମାନେ ମଧ୍ୟ ଜମିଦାର ତେହିଁକି ସାଇଁ ବାବୁମାନେ ଯଦି ଆମର ଜମିର ମାଲିକାନା ମାନନ୍ତି, ତେବେ ସେମାନଙ୍କଂର ହୋଇ ସାକ୍ଷୀ ଦିଅ ନା କଉ। ।

ବୁଢ଼ା ମୁଂଡ ହଲଇବାକୁ ଲାଗିଲା, ଉଁ–ହୁ ! ପାପ ହେବ ।

ଜଣେ କହିଲା : ତେବେ ଆମେ ଏକଜୁଟ ହୋଇ ଲଗେଇବା ଫୌଜଦାରି ଆସ ।

ବୁଢ଼ା ବେକ ହଲାଇଲ, ଉଁ–ହୁ ।

କାହିଁକି, ଭୟ ଲଗୁଚି ନା କଣ ଜଣେ ଭେଡ଼ିଂଆ ଖେଁକାରି ଉଠିଲ ।

ବୁଢ଼ା ହସିଲ । ସେ ହସ ସାମନାରେ ଭେଂଡ଼ିଆ ଏତେ ଟିକିଏ ହୋଇଗଲ ।

ବୁଢ଼ା ହସି କରି କହିଲ, ଭୟ ନୁହେ ରେ ଭଇ, ପାପ ହେବ ।

ତେବେ ? ଆଉ କଣ କରିବ କହ । କେଉଁଥିରେ ପାପ ହୁଏନା, ତା’ କୁହ ।

ହୁଁ । ଟିକିଏ ରହରେ ଭଇ । ମନକୁ ପଗ୍ଚରେ ।

ମନ ପଗ୍ଚୁ ଭଗବାନଂକୁ । ଦେବେ ତ ।

ରତନଲଲ କହିଲ, ଯା ହେଉ ଚଟ୍‌ପଟ୍ ଠିକ୍ କରି ପକା କଉ। । ତୁମେ ଯାହା କହିବ, ମୁଁ ତା କରିବି ।

ବୁଢ଼ା ହସିଲ, ରତନ ଉପରେ ତା'ର ଅନେକ ଭରସା । ଭରି ଭଲ ପିଲଟାଏ । ଆଉ ସେଥିରେ ପୁଣି କି ସାହସ !

ଠୁକ୍ ଠୁକ୍ କରି ବୁଢ଼ା କଚିରିରେ ଯାଇ ଉଠିଲ

ଗମ–ଗମ ଗୋ ଲାଏବ ମାଶାୟ ।

କିଏ, ଲାଲମୋହନ ? ଆସ ଆସ ।

ହଁ, ଆସିଗଲି ଟିକେ ।

ଆସିଲି–ଫାସିଲି ନାଇଁ । ଲାଗି ଯାଅ, ସମସ୍ତେ ଅଂଟା ଭିଡ଼ି ଲାଗି ଯାଅ ଥରେ । ସାଇଁ ବେଟାଂକୁ ଏକବାର ମାରି ଛତୁ କରିଦେବାକୁ ହେବ । ଏକ ଧାରରୁ କାଟି ଧକାଇବାକୁ ହେବ ।

ବୁଢ଼ା ହସିଲା । କ’ଣ ଯେ କହୁଛନ୍ତି ଲାଏବ ମହାଶୟ ।

କାହିଁକି ?

ଏଇ । କାଟି ପକାଇଲେ ରକ୍ତ ପଡ଼ିବ ଯେ ଗୋ । ମରିଯିବେ ଯେ ଲୋକଗୁଡା । ପାପ ହେବ ଯେ । ବୁଡା ଆଖିରୁ ପାଣି ଗଡ଼ିବାକୁ ଲଗିଲା ।

ନାୟବଂକ ଗୋଡ଼ଠାରୁ ମୁଂଡ ପର୍ଯ୍ୟନ୍ତ ଜଳିଗଲା ବୁଢ଼ାର ଏଇ ଭଣ୍ଡାମି ଦେଖି । ହେଲେ ଲୋକଟା ଖାତିରର ଲୋକ, ତେଣୁ ରାଗି ମଧ୍ୟ ଭଦ୍ରଭାବରେ କହିଲେ, ହୁଁ, ବୁଝିଲି । ସେମାନଂକ ରକ୍ତ ଦେଖି ତମ ଆଖିରେ ଲୁହ ଆସୁଛି । ବୁଝି ପାରିଛି ସବୁ । କହି ଖସ୍ ଖସ୍ କରି କେଇଧାଡ଼ି ଲେଖି ପୁଣି କହିଲେ, ଆଉ ଆମ ପାଇକମାନଂକୁ ଯିଏ ଖୁଣ୍ ଜଖମ କରିଛି, ରକ୍ତରେ ରକ୍ତଗଂଗା ବୁହାଇ ଦେଇଛି, ତା ବେଳକୁ–

ବୁଢ଼ାର ଓଠ ଥରଥର ହୋଇ କମ୍ପିବାକୁ ଲାଗିଲା । ଆଖିର ପାଣି ଦ୍ୱିଗୁଣ ହୋଇଗଲା, ହେ ଭଗବାନ । ସେ କଥା ଶୁଣି ଖୁବ୍ କାନ୍ଦିଛି ନାୟେବ ବାବୁ, ଆଃ–ହାୟ ହାୟ ହାୟ । କେତେ କାଟିଲା ସେମାନଙ୍କୁ ଭାବନ୍ତୁ ଦେଖି, ସେ ଘେରଗୁଡ଼ା, ଯେମିତି ଆମରି ବୁକୁରେ ବାଜିଲା ଗୋ ।

ନାୟେବ ତୀକ୍ଷ୍ଣ ଦୃଷ୍ଟିରେ ତା' ଆଡ଼କୁ ଚାହିଁ ରହିଲା । ଲୋକଟା ଭଣ୍ଡ ପାଷାଣ୍ଡ ନା ସତରେ ସାଧୁ ? ମେଣ୍ଢା ଶିଙ୍ଗରେ ଧକ୍କା ଲାଗିଲେ ହୀରାର ଧାର ବି ଭାଙ୍ଗିଯାଏ, ଠିକ୍ ସେମିତି ନାୟେବର ଇସ୍ପାତରେ ଢ଼ଳେଇ ଶକ୍ତ ଧାରୁଆ ବୁଦ୍ଧି ବୁଢ଼ାର ମୋଟା ବୁଦ୍ଧିର ଦରଜାରେ ଠିକ୍ ଗର୍ତ୍ତ କରିପାରୁ ନାହିଁ । ଅନେକ କ୍ଷଣ ତା' ମୁହଁ ଆଡକୁ ଚାହିଁ ରହି ନାୟେବ କହିଲେ, ତା' ହେଲେ ? ତା' ହେଲେ କଣ କରିବାକୁ ହେବ ଶୁଣେ ?

ସେଇଥିପାଇଁ ତ କହୁଚି ଗୋ ଆପଣଙ୍କୁ । ଆଖିର ଲୁହ ଭିତରେ ପୁଣି ବୁଢ଼ାର ହସ ଫୁଟି ଉଠିଲା ।

କଣ କହୁଛ ?

କହୁଛି, ଆମ ପ୍ରଜାମାନଙ୍କ ଜମିର ମାଲିକାନାଟି ମାନି ନିଅ ତୁମେମାନେ, ସବୁ ପାଇକ ବରକନ୍ଦାରି ତଫାତ୍ ହୋଇଯାଆନ୍ତୁ, ଦେଖ ସାଇଁମାନଙ୍କୁ ଆମେ ରୋକି ଦେବୁଁ ।

ରୋକି ଦେବ ? ଫୌଜଦାରି କଣ ବୁଝ ତୁମେ ସବୁ ? ଗୁଳ କର, ଖାଅ । ଲାଠି ଧରି ଜାଣ ? ବର୍ଛା ଚଳାଇ ଜାଣ ?

ବୁଢ଼ା ହସିଲା ।

ହସୁଛ କଣ ?

ଆପଣଙ୍କ କଥା ଶୁଣି ହସୁଛି ଗୋ । ଆମେ ଲାଠି ବର୍ଛା ଧରିବୁଁ ନାଇଁ ଯେ । ତା'ହେଲେ କିମିତି ରୋକିବ ?

ସେମାନେ ଆସିବେ, ଆମେ ପିଠି ପତାଇ ଛିଡ଼ା ହେବୁଁ, ନେ ମାର ଲଠି । ବୁକୁପାତି ନେବୁଁ, ଚଳାଅ ବର୍ଛା । ଆମର ରକ୍ତ ପଡ଼ିବ, ମାଟି ଲଲ ହୋଇ ଉଠିବ, ଆମେ ମରିବୁଁ । ତେବେ ଯାଇ ସେମାନଙ୍କର ଅକ୍‌କଲ ହେବ, ବୁକୁରେ କୋହ ପୁରିବ. ଆଖିରେ ଲୁହ ଆସିବ । ଭଗବାନ ଜ୍ଞାନ ଦେବେ । ସେମାନେ ଲାଜ ପାଇ ଫେରିଯିବେ ।

ନାୟେବ ହା-ହା କରି ହସି ଉଠିଲା, ଏଇ ତୋର ବୁଦ୍ଧି ?

ବୁଢ଼ା କିନ୍ତୁ ଆଶ୍ଚର୍ଯ୍ୟ । ସେ ଟିକିଏ ବି ଅପ୍ରତିଭ ହେଲା ନାହିଁ । ତା'ର ଦନ୍ତ-ହୀନ ମୁଖରେ ସେଇ ପିଲାଳିଆ ହସ ଫୁଟି ଉଠିଲା । ହୁଏ ଗୋ, ହୁଏ । ମୋର ମନ ପଚାରିଲା ଯେ ଭଗବାନଙ୍କୁ । ଭଗବାନ ଯେ କହିଦେଲେ ଗୋ । ଆପଣମାନଙ୍କର ମନ ଯେ ଭଗବାନଙ୍କୁ କିଛି ପଚାରେ ନାହିଁ ଗୋ । ନ ହେଲେ ବୁଝି ପାରନ୍ତ ମୋ କଥା ?

ଯେମିତି ଦେବା, ସେମିତିକା ଦେବୀ, ବୁଢାର ବୁଢ଼ିଟି ଠିକ୍ ଟୁଆଁର ଟୁଇଁ ଭଳି ।

ସବୁ ଶୁଣି ସେ ଭୟାନକ ଚିନ୍ତିତ ହୋଇ ପଡ଼ିଲା । ଚିନ୍ତାଟା ତା'ର ବୁଢ଼ା ପରି ସାଉ-ନାୟେବିଙ୍କ ପାଇଁ ଚିନ୍ତା । ଏତ ସହଜ କଥା, ସୋଜା କଥା । ଏମାନେ କାହିଁକି ବୁଝି ପାରୁ ନାହାନ୍ତି ? ହଁ, ଗୋ, ବୁଢ଼ା ?

ସେଇ ତ ଲେ ବୁଢ଼ି ।

ତେବେ କ'ଣ ହେବ ? କ'ଣ କରିବ ତୁମେ ?

ମୁଁ ? ଅନେକ ଭବି ବୁଢ଼ା ହସିଲା, ହଁ ହୋଇଛି ।

ଠିକ୍ ହୋଇଛି ।

କ'ଣ ?

ମୁଁ ମରିବି ।

ମରିବ ?

ହଁ, ମୁଁ ମରିବି । ମୁଁ ଯଦି ମରେ ତା' ହେଲେ ଏମାନେ ମନରେ ଦୁଃଖ ପାଇବେ । ଭଗବାନ ଜ୍ଞାନ ଦେବେ । ତେବେ ଆମ କଥା ଏମାନଙ୍କ ସମଝକୁ ଆସିବ ?

ବୁଢ଼ୀ କିଛି ସମୟ ଭବିଲା । ଭବି ସେ ଖୁସି ହୋଇ ହୋଇ ଉଠିଲା । ହସି ବାରମ୍ବାର ମୁହଁ ହଲାଇ କହିଲା, ହଁ ଠିକ୍ କହିଚ ତୁମେ ।

କହି ନାଇଁ ? ହସି ବୁଢ଼ା ବୁଢ଼ୀ ଆଡ଼କୁ ଅନାଇଲା ।

ହଁ, ସେଇଆ କର ତୁମେ । ମଗମରି ସେମାନଙ୍କୁ ବୁଝାଇ ଦିଅ ।

ବାହାରୁ ରତନଲାଲ ଡ଼ାକିଲା, କତ୍ତା ।

ବେଟା । ଆ ବେଟା ଆ । ଲଲମୋହନର ମୁଖ ହସରେ ଭରି ଉଠିଲା ।

ରତନଲାଲ ଆସି ଠିଆ ହେଲା ହସ ମୁହଁରେ । କହିଲା, ସମସ୍ତେ ଆସି ଛିଡ଼ା ହୋଇଛନ୍ତି କତ୍ତା । କ'ଣ ହେଲା, କ'ଣ କରିବୁଁ କୁହ । ରତନ ଯେମିତି ନିଆଁର ଶିଖା ପରି ଜଳୁଚି ।

ବୁଢ଼ା ବାହାରକୁ ଆସି ଜୋଡ଼ହାତ ହୋଇ କହିଲା, ନମୋ ପଂଗ୍ଭ ।

ତା' ଆଗରୁ କିଛି ଗୋଟାଏ ଗଣ୍ଡଗୋଳ ଘଟିଗଲ । ସାଉବାବୁଙ୍କ ପାଇକ–ବରକନ୍ଦାଜ ଆସି ସବୁ ଘେରି ଛିଡ଼ାହେଲେ । ସାଉବାବୁଙ୍କ ସଦର–ନାୟେବ ଗ୍ଭରୁ ଶୀଳ, ଜବରଦସ୍ତ ନାୟେବ । ସେ କାହାରିକୁ ପରୁଆ କରେ ନାଇଁ । ସେ ଏଠିକାର ନାୟେବକୁ ହୁକୁମ ପଠାଇଛି ପାଗଳାଟାକୁ ଧରି ଅଟକାଇ ରଖ । ଖାଲି ପାଗଳ ନୁହେଁ, ରତନଲାଲ-ଚୈତନଲାଲ ଚେଲାଗ୍ଭମୁଣ୍ଡା ତମାମ ଆଦମୀ ଅଟକ କର-ବିଲକୁଲ ।

ବୁଢ଼ା ହସି କହିଲା, ଗ୍ଭଲ । ରତନଲାଲ ପ୍ରଭୃତି ଚେଲାମାନଂକ ଆଡ଼କୁ ଗ୍ଭହିଁ କହିଲ, ଗ୍ଭଲ ବେଟାଲୋକ ।

ବୁଢ଼ୀ ଏକ ଗାଲ ହସି ଆଗେଇ ଆସି କହିଲା, ମୁଁ ?

ସାଉବାବୁଂକ ଲୋକମାନେ କହିଲେ, ହଁ, ହଁ, ସେ ହୁକୁମ ବି ଅଛି !

ବୁଢ଼ୀ କହିଲା, ରହ ବାବା, ଜେଗ ସେ ସବୁର କର ବେଟା: ବୁଢ଼ାର କୋପୀନ୍, ମୋ କପଡ଼ା ଆଉ ସେଇ ଲୋଟାଟା ନେଇଆସେ । ଏଇ ଲୋଟାଟାରେ ପାଣି ନ ପିଇଲେ ମୋର ପିଆସ ମେଣ୍ଟେନା ।

ବୁଢ଼ା ହସି ବେକ ହଲାଏ, ହଜାର ହେଲେ ବି ତିରିଲ କିନା । ଲୋଟାର ମାୟା ଛାଡ଼ିପାରେ ନାଇଁ ।

ସାଉବାବୁ ଘର ବୁଢ଼ାକୁ ଅଟକ କଲେ ମଧ୍ୟ ଖୁବ୍ ଯତ୍ନ କରି ରଖିଲେ । ସେଆଡ଼ୁ ସେମାନେ ଟିକେ ହେଲେ କସୁର ରଖିଲେ ନାଇଁ । ବୁଢ଼ା କିନ୍ତୁ ସେଇ ବୁଢ଼ା, ଅଟକ ଭିତରେ ଥାଇ ବି ହସେ, ଭଗବାନଂକୁ ଡାକେ, ଆଉ ଭବେ । ମନେ ମନେ କହେ, ଭଗବାନ, ମୋ ମନକୁ କହିଦିଅ, କଣ କରିବି ? ମରିବି ? ମୁଁ ମଲେ ସେମାନେ

ଦୁଃଖ ପାଇବେ ? ତୁମେ ସେମାନଂକୁ ଜ୍ଞାନ ଦେବ ?

ବୁଢ଼ୀ ଅଟକ ଭିତରେ ବି ଘୁର ଘୁର କରି ଘୁରି ବୁଲେ, ବୁଢ଼ାର ଖାଇବାଟି ତିଆରି କଲେ ବିଛଣା ମାନେ କମ୍ବଳଟି ଝାଡେ, ଲୋଟାଟି ଝକଝକ କରି ମାଜି ରଖେ । ଆଉ ଯେମିତି ଏ ଅବସ୍ଥାଟା କିଛିଟା ଭଲ ବି ଲାଗେ । ବୁଢ଼ାକୁ ଅନେକଟା ପାଖରେ ପାଇଛି । ବାହାରେ ତ ବୁଢ଼ାର ହଜାରେ କାମ, ମୁହୂର୍ତ୍ତେ ଫୁରସତ୍ ହୁଏନା ବିପଦ କଥା ହେବାକୁ, ଘରୁଆ କଥା କହିବାକୁ । ସବୁ କଥାଇ ତାର ଭରତପୁର କଥା, ନୋହିଲେ ମଣିଷ କଥା । ଆଜି ଏଠି, କାଲି ସେଠି, ଏ ଆସିଛି, ସେ ଆସିଛି, ଲୋକ-ବାକହିଁ ବୁଢାକୁ ଘେରି ରଖି ଦିଅନ୍ତି, ଏଠି ସେ ଅନେକଟା ବୁଢାର ପାଖାପାଖି ହୋଇ ପାରିଛି । କିନ୍ତୁ କେତୁଟା ଦିନ ନ ଯାଉଣୁ ବୁଢ଼ୀର ଭୁଲ ଭାଙ୍ଗିଗଲା । ବୁଢ଼ା ସେଇ ବୁଢ଼ା । ଲୋକଙ୍କ ଭିଡ଼ ନାଇଁ, କିନ୍ତୁ ବୁଢ଼ା ମୁଣ୍ଡରେ ଭାବନାର ଭିଡ ଏତେ ଟିକେ ବି କମି ନାଇଁ । ଲୋକମାନେ ବାହାରେ କୁହାକୁହି ହୁଅନ୍ତି, ବୁଢାଟି ପଥର । ବୁଢ଼ୀର ମନେ ହୁଏ କଥାଟା ମିଛ ନୁହେଁ ।

ସେ କହେ ବୁଢା

ଉଁ । ବୁଢା ତା ଆଡ଼କୁ ଚାହେ, ବୁଢୀର ମନେ ହୁଏ ବୁଢା ତା ଆଡ଼କୁ ଚାହିଁ ନାଇଁ । ଚାହିଁ ରହିଛି—କେଉଁ ଦିଗନ୍ତକୁ, ଅନେକ ଦୂରରେ ସେଇ ପାହାଡ଼ ମୁଂଡରେ ଅଛି ଯେଉଁ ଠାକୁର ମଂଦିର, ସେଇ ମଂଦିରର ଚୂଡ଼ା ଆଡ଼କୁ ।

କଣ ଭାବୁଚ ?

ଭାବୁଛି ? ବୁଢ଼ା ହସେ ।

ହସନା ବୁଢ଼ା, ଏ ହସଟି ତମର ଭଲ ଲାଗୁ-ନାଇଁ ମତେ ।

ହୁଁ । ଛୋଟ ଗୋଟିଏ ହୁଁ ବୋଲି ବୁଢ଼ା ଚୁପ କରିଯାଏ ।

ଭୟରେ, ବିସ୍ମୟରେ ଅବାକ୍ ହୋଇଯାଏ ବୁଢ଼ୀ, ସଂଗେ ସଂଗେ ମନକୁ ମନ କହେ, ଭଗବାନ ବୁଢ଼ାକୁ ବଂଚାଇ ରଖ ନହେଲେ ଏତେ ଭାବନା ଭାବିବ କିଏ ?

ହଠାତ୍ ଦିନେ ବୁଢ଼ା କହିଲା, ମୁଁ ମରିବି । ବୁଢ଼ୀର ବୁକୁଟା ଯେମିତି ଫାଟିଯିବା ଭଳି ହେଲା, କିନ୍ତୁ ସେ କଥା ତ ମୁହଁ ଖୋଲି କହିବାର ଉପାୟ ନାହିଁ । ବୁଢ଼ା ତା ହେଲେ ମୁହଁ ଖୋଲି ଏମିତି ହସ ହସି ଖାଲିଟାରେ କହିବ, ଛି । ସେଥିରେ ବୁଢ଼ୀ ମରମରେ ମରିଯିବ । ସେ କେବଳ କହିଲା, କିଆଁ ମ ବୁଢ଼ା, ମରିବ କିଆଁ ?

ମରିବି । ସାହୁବାବୁମାନେ କହୁଛଂତି, ମୁଁ ବାହାରେ ଲୋକମାନଂକୁ କହି ଆସିଥିଲି ଫୌଜଦାରି, ଦଂଗା କରିବାକୁ । ବାହାରର ଲୋକମାନଂକ ସଂଗେ ବାବୁଘର ପାଇକମାନଂକର ମାରପିଟ ହୋଇଯାଇଛି । ଆମ ଲୋକମାନେ ସେମାନଂକୁ ମାରିଛନ୍ତି, ଅନେକ କ୍ଷତି କରିଛନ୍ତି । ବାବୁଘର କହୁଛଂତି, ଏ ସବୁ ମୋ'ରି ଶିକ୍ଷା ।

ରତନଲାଲ କହିଲା, ସେଇଥିପାଇଁ ତ ବାପା, ବାବୁଘର ପାଇକମାନେ ଲୋକମାନଂକୁ ଖୁବ୍ ମାଡ଼ ଦେଇଛନ୍ତି ।

ବୁଢ଼ା ବେଶ ହାଲାଇ ହସିଲା । କହିଲା, ଖାଲି ସେତିକି ନୁହେଁ ରତନ । ଆମ ଲୋକ ମାରିଲେ ଯେତେବେଳେ, ସେତେବେଳେ ଲୋକମାନଂକର ପାପ ହେଲା । ମୁଁ ମରେଁ, ମରି ଭଗବାନଂକୁ କହିବି, ଭଗବାନ, ତୁମେ ପାପଟି କ୍ଷମା କର, ଖାଲି ଆମ ପାପ ନୁହେଁ, ଏଇ ପାଇକମାନଂକ ପାପ ବି କ୍ଷମା କର । ଆଉ–

ଆଉ କଣ ବାପା ?

ବୁଢ଼ା ହସିଲା । ତେବେ ତ ସେମାନେ ବୁଝିବେ, ମୁଁ ପାପୀ ନୁହେଁ ।

ବୁଢ଼ା ମରଣପଣ କରି ବସେ । ଖିଆ ନାଇଁ, ପିଆ ନାଇଁ ଚୁପ୍ କରି ପଡ଼ିଥାଏ ।

ବୁଢ଼ୀର କଥାବାର୍ତ୍ତା ସବୁ ନିକାଶ ହୋଇଯାଇଚି, ଯେପରି, ସେ ଚୁପ୍ କରି ବସି ଚାହିଁଥାଏ । ହାୟ, ବୁଢ଼ା ତାର ହଜିଗଲା । ତା ଆଡକୁ ଥରେ ଫେରି ଚାହିଁବାର ବି ଫୁରସତ ନାହିଁ । କନ୍ଦାକଟା ଲାଜକଥା । ବୁଢ଼ୀର କାଂଦିବାର ବି ଉପାୟ ନାଇଁ ।

ଅଟକଖାନା ବାହାରେ ହୋ ହୁରି ହୁଏ, ଭଗବାନ, ଆମ ବାପାକୁ ବଂଚାଇ ଦିଅ ।

ରତନଲାଲ ଆଉ ସବୁ ଚେଲାମାନେ ଯେପରି ଉଦାସ ହୋଇ ଯାଇଛନ୍ତି ।

ବୁଢ଼ୀ ଆଉ ରହିପାରେ ନାଇଁ । ସେ ବୁଢ଼ାକୁ କିଛି କହିବାକୁ ସାହସ କରେ ନା । ସେ ଭଗବାନଂକୁ ମନେ ମନେ ଡାକେ, କହେ, ବୁଢାକୁ ବଂଚାଅ ଦେବତା । ଏତେ ଗୁଡାଏ ମଣିଷଂକ ମୁହଁକୁ ଚାହଁ । ମୋ ମୁହଁକୁ ଚାହଁ । ବୁଢୀର ମନେ ହୁଏ ବୁଢ଼ା ଅପେକ୍ଷା ଭଗବାନଂକ ମନଟା ନରମ ।

ବୁଢୀର ମନେହୁଏ, ଭଗବାନ ଯେମିତି ହସୁଛନ୍ତି ।

ବୁଢ଼ା ସତରେ ମରେନା । ମରଣର ସବୁ ଲକ୍ଷଣହିଁ ହୋଇଥିଲ, ସାଉବାବୁ ଘର ବନ୍ଦ ବୈଦ୍ୟ ବି ପଠାଇଥିଲେ ସେମାନେ କହିଥିଲେ, ଆମର ଅସାଧ୍ୟ । ନ ଖାଇଲେ ମଣିଷ ବଂଚେନା, ବଂଚି ପାରେନା । ତେବେ ବି ବୁଢ଼ା ବଂଚେ । ଆଶ୍ଚର୍ଯ୍ୟ ବୁଢ଼ା, ସବୁବେଳେ ତା ମୁହଁରେ ସେଇ ପିଲଟି ଓଠର ହସ ରେଖାଟିଏ ମିଳାଇ ଯାଏ ନାଇଁ । ଧୀରେ ଧୀରେ ସବୁ ମରଣ ଲକ୍ଷଣ ମିଳାଇ ଗଲ । ଆଖିର ଘୋଳା ରଂଗ ଘୁଂଚି ଯାଇ ସାଦା ପଦ୍ମର ପାଖୁଡ଼ାର ଆଭ ଫୁଟି ଉଠିଲ, ମୁହଁର ରଂଗରେ ଫୁଟି ଉଠିଲ ମା କୋଳର ପିଲଟି ମୁହଁ ପରି ଝକମକିଆ ତେଜ । ବୁଢ଼ା କହିଲ, ମୁଁ ବଂଚିଲି । ଭଗବାନ ମୋର ମନକୁ କହିଲେ ତୋର ପାପ ନାଇଁ ।

ବୁଢ଼ୀ ମୁହଁରେ ହସ ଫୁଟି ଉଠିଲ ।

ସେ କହିଲ, ବୁଢ଼ା ମୁଁ ଏଥର ମରିବି ।

କିଆଁ ଲେ ?

ମୋ ଦେହ ଖରପ ଲଗୁଚି । ଆଉ--

ଆଉ କଣ ?

ବୁଢ଼ୀ କିନ୍ତୁ କୌଣସି ମତେ ସେ କଥା କହେନା ।

ଖାଲି ହସିଲ ଟିକିଏ ।

ବୁଢ଼ୀ ସତରେ ମରିଗଲ । ଜର ହେଲ ସାମାନ୍ୟ । ସେଇ ଯୋଗୁହିଁ ମରିଗଲ । ମରିବା ସମୟରେ ଏକ ଦୃଷ୍ଟିରେ ସେ ଚାହିଁଥିଲ ବୁଢ଼ା ଆଡ଼କୁ ।

ପଥରର ବୁଢ଼ା । ଲେକେ ମିଛ କହନ୍ତି ନାଇଁ ।

ହଠାତ୍ ବୁଢ଼ୀର ମନେ ହେଲ, ଲେକଂକ କଥା ମିଥ୍ୟା, ମିଥ୍ୟା, ସତ ନୁହେଁ, ସତ ନୁହେଁ । ବୁଢ଼ା ଆଖିରେ ଲୁହ । ହଁ, ହଁ, ବୁଢ଼ା ଆଖିରେ ଲୁହ ।

ସେ କହିଲା, ବୁଢ଼ା :

ଆଖିରେ ଲୁହ ଟଳମଳ କରୁଥିଲା, ତଥାପି ବୁଢା ମୁହଁରେ ହସ ଫୁଟି ଉଠିଲା, ବୁଢା କହିଲା, କହ ବୁଢ଼ୀ, କ'ଣ କହୁଛ କହ ।

ମରଣ ଭରୀ ସୁଂଦର ଗୋ ବୁଢ଼ା, ମରଣ ଭରୀ ସୁଂଦର ।

ବୁଢ଼ା ହସିବାକୁ ଲାଗିଲା, ଆଖିର ଲୁହ ଟପଟପ କରି ଝରି ପଡ଼ିଲା. ଝରି ପଡ଼ିଲା ବୁଢ଼ୀର କପାଳ ଉପରେ । ବୁଢ଼ା ପୋଛି ଦେବାକୁ ଗଲା ସେ ଲୁହ । ବୁଢ଼ୀ କହିଲା, ନା, ଥାଉ ।

# ଭୋଟର ସାବିତ୍ରୀବାଳା

## ବନଫୁଲ

ତା'ର ନାମଟି ଟିକିଏ ଅଦ୍‌ଭୂତ ଧରଣର ଥିଲା । ରିପୁନାଶ । ତା'ର ବଡଭଇର ନାଁ ଥିଲା ତମୋନାଶ । କିନ୍ତୁ କାଳର ଏଭଳି ଗତି ଯେ କେହି କିଛି ନାଶ କରି ପାରି ନାହାନ୍ତି । ନିଜେଇ କେବଳ ନଷ୍ଟ ହୋଇଥିଲେ । ତମୋନାଶ ଜୀବନରେ ଟିକିଏ ହେଲେ ଆଲୁଅ ପ୍ରବେଶ କରି ନାହିଁ । ଅ ଆ କ ଖ ପର୍ଯ୍ୟନ୍ତ ଶିଖିନାଇଁ ସେ । ଏକାବେଳେକେ ନିରକ୍ଷର ଥିଲା । ବ୍ରାହ୍ମଣର ପୁଅ ଥିଲେ ବୋଲି ହିଁ ଦୁଇଜଣଂକର ଦୁଇଟି ସଂସ୍କୃତ ନାମକରଣ ହୋଇଥିଲା । ଦୁହିଁଙ୍କ ପିତା ଥିଲେ ଟୋଲ୍‌ର ପଣ୍ଡିତ, ମୋହନାଶ ତର୍କତୀର୍ଥ । ଲୋକେ ସଂକ୍ଷେପରେ କହନ୍ତି ମୋହନ ପଣ୍ଡିତ । ସମାଜରେ ଆଜିକାଲି ସଂସ୍କୃତ ପଣ୍ଡିତମାନଂକର ଆଉ ଆଦର ନାଇଁ । ଅତିଶୟ ଦରିଦ୍ର ଥିଲେ ସେ । ପୁରୋହିତଗିରି କରୁଥିଲେ । ସେ ଯେତେବେଳେ ମଲେ ପୁଅ ତମୋନାଶର ବୟସ ସେତେବେଳକୁ ଛଅ ବର୍ଷ, ରିପୁନାଶର ତିନି । ସେମାନଙ୍କ ମା ରୋଷେଇଆଣୀ-ଗିରି କରି ସଂସାର ଚଳାଉଥାନ୍ତି । ତମୋନାଶର ବୟସ ଯେତେବେଳେ ଷୋଳ ବର୍ଷ ସେତେବେଳକୁ ସେ ଲାଏକ ହୋଇ ଉଠିଲା । ଓସ୍ତାତି କରି ବୁଲେ । ଗୁଣ୍ଡା ଦଳରେ ଥିଲା । ଦଳରେ ତାର ନାମ ଥିଲା ତମ୍‌ନା । ଗୁଣ୍ଡାମି କରି କିଛି ରୋଜଗାର କରୁଥିଲା ସେ । କିଛି ଟଂକା ମା'କୁ ଆଣି ଦେଉଥିଲା । କିଛି ଟଂକା ନିଜର ଆମୋଦ ପ୍ରମୋଦରେ ବ୍ୟୟ କରୁଥିଲା । କିନ୍ତୁ ଏ ଜୀବନ ସେ ବେଶୀ ଦିନ ଚଳାଇ ପାରିନଥିଲା । ଗୁଣ୍ଡାମି କରିବାକୁ ଯାଇ ଛୁରିକାହତ ହୋଇ ମରିଗଲା ସେ ଦିନେ । ତାର ଦେହଟା ଫୁଟ୍‌ପାଥରେ କିଛି ସମୟ ପଡ଼ି ରହିଲା ତା'ପରେ ପୁଲିଶବାହିତ ହୋଇ ଗଲା ମାର୍ଗକୁ, ମଇନା ତଦନ୍ତ ପାଇଁ ଡ଼ାକ୍ତରମାନେ ତା ଦେହକୁ ଛିନ୍ନଭିନ୍ନ କଲେ । ଅବଶେଷରେ ସେଟାକୁ ଡ଼ୋମ୍ ଅଧିକାର କଲେ । ତମୋନାଶର ମା ତାର ମୃତ ପୁତ୍ରର ଶବଦେହଟା ଆଉ ବାଦୀ କରି ନଥିଲେ । ଲୋକବାକ ଯୋଗାଡ଼ କରି ଶବ ଦେହଟାର ସଂସ୍କାର କରିବାକୁ ଯେଉଁ ଟଂକା ଲାଗେ ତାହା ତାଂକ ପାଖରେ ନଥିଲା ।

ଗୁରିଆଡ଼େ ଧାଡ ଜମି ଯାଇଥିଲ । ଆଉ ଧାର ବଢ଼ାଇବାକୁ ଇଛା ହେଲ ନାଇଁ ତାଂକର । ଡ଼ୋମମାନେ ତମୋନାଶର ଶରୀରର ଅସ୍ଥି ଗୁଡ଼ିକ ବାହାର କରି ପରିଷ୍କାର କଲେ ଏବଂ ଅବଶେଷରେ ସେଗୁଡ଼ିକୁ 'ଆନାଟମି'ର ଛାତ୍ରମାନଂକ ପାଖରେ ବିକ୍ରୟ କରି କିଛି ପଇସା ରୋଜଗାର କଲେ । ଏହିଠାରେହି ତମୋନାଶର ଜୀବନ ବୃତ୍ତାନ୍ତ ଶେଷ । ତମୋନାଶର ମା ସାବିତ୍ରୀ ଖୁବ୍ ବେଶୀ କାଂଦି ବି ନାହାନ୍ତି । ତାଙ୍କ ଆଖି ଆଉ ମୁହଁରେ ପ୍ରଛନ୍ନ ଏକ ଅଗ୍ନି ଖାଲି ଧକଧକ କରି ଜ୍ୱଳୁଥିଲ । ତାହା ବାଙ୍ମୟ କି ଦୃଶ୍ୟ ନୁହେଁ, କିନ୍ତୁ ନିଦାରୁଣ । ସାବିତ୍ରୀ ଯାହାଂକ ଘରେ ରାଂଧୁଣୀ ଥିଲା ସେଇ ଭଦ୍ରଲୋକ ତମୋନାଶର ମୃତ୍ୟୁ ପରେ ସାବିତ୍ରୀର ଦୁଇ ଟଂକା ଦରମା ବଢ଼ାଇ ଦେବାର ପ୍ରସ୍ତାବ ଦେଇଥିଲେ । ସାବିତ୍ରୀ ରାଜି ହୋଇ ନାଇଁ । ସଂକ୍ଷେପରେ କେବଳ କହିଥିଲା 'ଦରକାର ନାଇଁ' । ରିପୁନାଶ ରାସ୍ତାରେ ରାସ୍ତାରେ ଘୂରି ବୁଲୁଥିଲା । ଯେଉଁମାନଂକର ଘରେ ସ୍ଥାନ ନାଇଁ, ରାସ୍ତାରେ ରାସ୍ତାରେ ବୁଲି ଯେଉଁମାନେ ଜୀବନ ଅତିବାହିତ କରନ୍ତି, ଯେ କୌଣସି ମଜା, ଯେ କୌଣସି ଗୋଲମାଲ, ଯେ କୌଣସି ମୋଟର ଆକ୍ସିଡେଣ୍ଟ ଯେଉଁମାନଂକୁ ଆକୃଷ୍ଟ କରେ ସେଇମାନେ ହିଁ ଥିଲେ ରିପୁନାଶର ସଂଗୀ । ଦଳ ମଧ୍ୟରେ ତାର ନାମ ଥିଲା 'ରିପୁନ୍' । ରିପୁନ୍ କିଂନ୍ତୁ ତମ୍ନା ପରି ବଳିଷ୍ଠ ନଥିଲା । ରୋଗା ପଟକା ଚେହେରା । ବଜାର କତିରେ ଘୁରି ବୁଲୁଥାଏ, କୁଲିକାମ କରି ରୋଜଗାର କରୁଥିଲା କିଛି । ବିଡ଼ିଖିଆ ଶିଖିଥିଲା । ପ୍ରତ୍ୟହ ବଣ୍ଡିଲିଏ ବିଡ଼ି କିଣିବା ପରେ ଯାହା ଅବଶିଷ୍ଟ ରହୁଥିଲା ତାହା ମା'କୁ ଆଣି ଦେଉଥିଲା । ଏଇ ପରି ଚାଲୁ-ଥିଲା । ରିପୁନ୍‌ର ବୟସ ଯେତେବେଳେ ଷୋଳ-ସତର ବର୍ଷ ସେତେବେଳେ ହଠାତ୍ ଦିନେ ଏକ କାଣ୍ଡ ଘଟିଲା । ସେ ଏକ ବଡ଼ କୋବି ବୋଝ ବୋହି ଆଣି ଏକ ମୋଟର ଓ୍ୱାଲା–ବାବୁର ମୋଟର କେରିଆରରେ ସେଗୁଡ଼ିକ ସଜାଇ ରଖୁଥିଲା, ଗଳା ଭିତରଟା କେମିତିକା କଟକଟ କଲା । କାଶ ଆରଂଭ ହୋଇଗଲା । ମୋଟର-ଓ୍ୱାଲା ବାବୁ ତାର ପ୍ରାପ୍ୟ ମଜୁରି ବାରଅଣା ପଇସା ଦେଇ ଚାଲିଗଲେ । ରିପୁନ୍ ଫୁଟପାଥରେ ବସି କାଶିବାକୁ ଲାଗିଲା । ହଠାତ୍ କାଶ ସଂଗରେ ପୋଷେ ରକ୍ତ । ରିପୁନ୍ କିଛି ସମୟ ରକ୍ତଟା ଆଡକୁ ଅନାଇ ରହିଲା, ତାପରେ ଘରକୁ ଚାଲିଗଲା ।

ସାବିତ୍ରୀ ତାକୁ ନେଇଗଲେ ସାହୀର ଡାକ୍ତରବାବୁଙ୍କ ପାଖକୁ । ସେ ଛାତି-ପିଠି ପରୀକ୍ଷା କରି କହିଲେ ଯକ୍ଷ୍ମା ହୋଇଛି । ଆହୁରି କହିଲେ, ମୋତେ କିଛି ଫି ଦେବାକୁ ହେବ ନାଇଁ । କିଂନ୍ତୁ ଔଷଧ ଇଂଜେକସନ୍ କିଣିବାକୁ ହେବ । ତା' ଛଡ଼ା ଭଲ ଖିଆ ପିଆ କରିବାକୁ ହେବ । ଅଣ୍ଡା, ଛେନା, ମାଛ, ମାଂସ, ଫଳ ଇତ୍ୟାଦି । ସାବିତ୍ରୀ

ନୀରବରେ ଡ଼ାକ୍ତରଂକ ମୁହଁକୁ ଗୃହିଁ ରହିଲା । ତାର ଆଖି ଓ ମୁହଁର ଅଦୃଶ୍ୟ ଅଗ୍ନିଶିଖାର ବାର୍ତା ସଂଭବତ ଡାକ୍ତରବାବୁଂକ ମନରେ ଯାଇ ପହଂଚିଲା । ସେ କହିଲେ-ତମର ଯଦି ସାମର୍ଥ୍ୟ ନାଇଁ ହାସପାତାଳରେ ଭର୍ତ୍ତି ହେବାହିଁ ଭଲ । ତମକୁ ଗୋଟାଏ ଚିଠି ଲେଖି ଦେଉଛି ସେଇଟାକୁ ନେଇ ହାସପାତାଳ ଯାଅ । ଚିଠି ନେଇ ସାବିତ୍ରୀ ସାତ ଦିନ ହାସପାତାଳର ଭିଡ଼ରେ ଧକ୍କାଧକି କଲା । କିଛିହିଁ ହେଲା ନାଇଁ । ଜଣେ ରୋଗୀ କହିଲା, ଏଠି ବି ବିନା ପଇସାରେ କିଛି ହୁଏ ନାହିଁ । ଘୁଷ୍ ଦେବାକୁ ହୁଏ । ଏ କଥା ଶୁଣିବା ପରେ ରିପୁନ୍ ଆଉ ହାସପାତାଳକୁ ଯାଇ ନାଇଁ । ପୁଣି ସେ ରସ୍ତାରେ ଘୁରି କୁଲିଗିରି ଆରଂଭ କଲା । ଦିନେ ତାର ଜଣେ ସଂଗୀ ତାକୁ କହିଲା—ଦେଖ୍ ମୁଣ୍ଡକୁ ଏକ ବୁଦ୍ଧି ଆସିଛି । ତୁ ଯଦି କୌଣସି ପ୍ରକାରେ ଛଅ ମାସ ଆଲିପୁର ଜେଲ୍‌ରେ କଟାଇ ପାରୁ, ତୋର ଯକ୍ଷ୍ମା ଭଲ ହୋଇଯିବ !

'ଜେଲକୁ ଗଲେ ଜକ୍ଷ୍ମା ଭଲ ହୋଇଯିବ, କ'ଣ ତୁ କହୁଛୁ ?'

ରିପୁନ୍ କଥାଟାକୁ ପ୍ରଥମେ ବିଶ୍ୱାସ କଲା ନାଇଁ ।

ସଂଗୀ କହିଲା—'ହରୁ ଜେଲରୁ ଭଲ ହୋଇ ଫେରି ଆସିଚି । ତାର ଯକ୍ଷ୍ମା ହୋଇଥିଲା । ସେଠି ଖୁବ୍ ଭଲ ହାସପାତାଳ ଅଛି । ବିନା ପଇସାରେ ଚିକିତ୍ସା ହୁଏ ।

ତୁ ଜେଲ ଗ୍ଲିଯା' ।

କେତେଦିନ ପରେ ରିପୁନ୍ ଟ୍ରାମ୍‌ରେ ପକେଟ ମାରିବାକୁ ଯାଇ ହାତେ ହାତେ ଧରା ପଡ଼ିଲା । ସମସ୍ତେ ଯଥେଷ୍ଟ ପ୍ରହାର କରି ତାକୁ ଶେଷରେ ପୁଲିଶ ହାତରେ ସଁପିଦେଲେ ।

ଅଦାଲତରେ ବିଚାରକ କହଲେ—'ତୁମେ ତୁମର ପକ୍ଷ ସମର୍ଥନ ଲଗି ଓକିଲ ଦେଇପାର, ଯଦି ଓକିଲ ନିୟୋଗ କରିବାର ସାମର୍ଥ୍ୟ ନ ଥାଏ ଆମେ ତମ ପକ୍ଷରେ ଲଢ଼ିବା ପାଇଁ ଓକିଲ ଦେଇପାରୁ ଜଣେ ।'

ରିପୁନ୍ ହାତ ଜୋଡ଼ କରି କହିଲା—ନା ହଜୁର, ଓକିଲ ଦରକାର ନାଇଁ । ମୁଁ ଚୋରି କରିବି ବୋଲିହିଁ ଏଇ ଭଦ୍ରଲୋକଂକ ପକେଟରେ ହାତ ପୁରଇଥିଲି ।

ବିଚାରକ ରାୟ ଦେଲେ—ପଚାଶ ଟଂକା ଜୋରିମାନା, ଅନାଦାୟେ ମାସେ ଜେଲ୍ ।

ରିପୁନ୍ ହାତ ଯୋଡ଼ି କରି କହିଲା–'ଧର୍ମାବତାର, ଟଂକା ମୁଁ ଦେଇ ପାରିବି ନାଇଁ । କିଂତୁ ମୋତେ ଏକ ମାସ ଜେଲ ନ ଦେଇ ଛ ମାସ ଜେଲ ଦିଅନ୍ତୁ ।

ବିଗ୍ରକ ଅବାକ ହେଲେ ।

'ଛ ମାସ ଜେଲ ଗ୍ରହୁଁ ଛ କାହିଁକି ?'

'ମୋର ଯକ୍ଷ୍ମା ହୋଇଛି । ଶୁଣିଛି ଆଲିପୁର ଜେଲରେ ଯକ୍ଷ୍ମାର ଭଲ ଚିକିତ୍ସା ହୁଏ' ।

ବିଗ୍ରକ ରାୟ କିନ୍ତୁ ବଦଳାଇଲେ ନାଇଁ ।

ଜେଲ ହାସପାତାଳରେ କିନ୍ତୁ କିଛି ବେମାରି ଭଲ ହେଲା ନାଇଁ । ରିପୁନ୍ କାଶି କାଶି ହିଁ ଜେଲ ଭିତରୁ ବାହାରି ଆସିଲା ଏକ ମାସ ପରେ । ଏହାପରେ ସେ ଆଉ ମାସେ ବଂଚିଥିଲା । ଦିନେ ଗଭୀର ରାତ୍ରୀରେ ଖୁବ୍ କାଶି କାଶି ସେ ଉଠି ବସିଲା ଏବଂ ମାର ପାଦ ଉପରେ ଝଲକ ବାନ୍ତି କରି ଇହଲୋକ ତ୍ୟାଗ କରିଗଲା ବିଗ୍ରଧ ।

ନିସ୍ତବ୍ଧ ହୋଇ ବସି ରହିଲା ସାବିତ୍ରୀ । ତାର ଆଖିର ଦୃଷ୍ଟି ଭିତରୁ ନିଆଁ ହୁଳା ବାହାରି ଆସିଲା । ଟୋପାଏ ଅଶ୍ରୁ ବିସର୍ଜନ କରିଲା ନାଇଁ ସେ ।

ଏହାର ମାସ ଦୁଇ ପରେ ନିର୍ବାଚନ ହୋଇଥିଲା । ସାବିତ୍ରୀବାଳା ଜଣେ ଭୋଟର । ତା ଦୁଆରେ ମ ନ୍ୟଗଣ୍ୟ ଜଣେ ଭୋଟପ୍ରାର୍ଥୀ ଆସି ଉପସ୍ଥିତ ହେଲେ ।

ସାବିତ୍ରୀ ତାଂକ ଆଡ଼କୁ ଅଗ୍ନି ଦୃଷ୍ଟି ନିକ୍ଷେପ କରି କହିଲା, ଆପଣଂକୁ ଭୋଟ ଦେବି ? କି ଉପକାର କରିଛନ୍ତି ଆପଣ ମୋର ? ଆପଣ ଯେତେବେଳେ ଗାଦିରେ ଥିଲେ–ସେତେବେଳେ ମୋର ବିଦ୍ୱାନ ସ୍ୱାମୀ ଭିଖାରି ପରି ମରିଗଲେ । ମୋ' ବଡ଼ପୁଅକୁ ଲେଖାପଢ଼ା ଶିଖାଇ ପାରି ନାଇଁ, ଶେଷରେ ସେ ଗୁଣ୍ଡା ହୋଇ ଛୁରି ମାଡ଼ରେ ମଲା । ଛୋଟ ପୁଅଟା ମଲା ଯକ୍ଷ୍ମାରେ, ତାର କୌଣସି ଚିକିତ୍ସା ହେଲା ନାଇଁ, ସବୁଠି ଘୁଷ୍ ଲୋଡ଼ା । ଆପଣମାନଂକୁ ଭୋଟ ଦେବି କାହିଁକି ? କାହାରିକୁ ମୁଁ ଭୋଟ ଦେବି ନାଇଁ ।

ଭୋଟ ପ୍ରାର୍ଥୀ ଭଦ୍ରଲୋକ କହିବାକୁ ଯାଉଥିଲେ 'କିନ୍ତୁ ଦେଖନ୍ତୁ ଗଣତଂତ୍ର-'

କିନ୍ତୁ ସାବିତ୍ରୀ ତାଂକୁ ତାକ କଥା ଶେଷ କରିବାକୁ ଦେଲ ନାଇଁ ।

ତୀକ୍ଷଣ କଂଠରେ ଚିହ୍ନାର କରି ଉଠିଲ—ଚ୍ଲିଯାନ୍ତୁ ଆପଣ ମୋ ଘରୁ ।

ଭଦ୍ଲୋକ ଚଟାପଟ ଚ୍ଲିଗଲେ ।

ଧଡ଼ାସ୍ କରି କବାଟଟା ବଂଦ କରିଦେଲ ସାବିତ୍ରୀ ।

# କାପ୍ତାନ

## ଅଚନ୍ତ୍ୟ କୁମାର ସେନଗୁପ୍ତ

ମା ନାସିମ୍‌କୁ ମାରିଚି । ମା ମାରିଚି ମାତ୍ର, କିନ୍ତୁ ସେ ମାରିବ କିଆଁ ? ସେ କିଏ ?

ଗୋରୁ-ବାଛୁରୀ ରଖେ ନ ରଖେ, ବୃକ୍ଷ-ରୋପଣ କରେ ବା ନକରେ, ସେଥିରେ ତାର ଯାଏ ଆସେ କେତେ ? ଜମି-ପଡ଼ିଆ ପଡ଼ିବ ତ ପଡୁ, ତାର ସେଥିପାଇଁ କାହିଁକି ଏତେ ମୁଣ୍ଡ ବଥା । ଘର ଛପର ଦରକାର କି ନ ଦରକାର ସେକଥା ଆମେ ବୁଝିବୁଁ । ତିନ୍ତିଲେ ତିନ୍ତିବୁଁ ଆମେ ମାଆ-ପୁଏ । ତାକୁ ଛତା ମେଲିବାକୁ ଡ଼ାକିବ ନାହିଁ କିଏ ।

ନା, ଗୋଲବାନୁ କହେ, ଏଣିକି ଘରର ତଦ୍ଵନେବ ଗହରଲି ।

କିଏ ଗହରଲି ? ନାସିମ୍. ବେକ ଝାଙ୍କି ପାଟି କରେ ।

ମସ୍ତ ଲୋକ । ଜମି ଅଛି ପାଂଚ ମାଣ । କଚିରି ଅଛି ଦରଜାରେ । ଡାୟେରୀ ମୋକଦମା ଅଛି କେଇ ନଂବର ।

ସେଥିରେ ଆମର କଣ ଗଲା ?

ଯାକୁ ଧରିଲେ ଜମି ଜାଗା ଠିକ୍ ରହିବ, ଖାଇବା ପିଂଧିବାର କଷ୍ଟ ରହିବ ନାହିଁ, କୁଟା-ନଡ଼ା ବଦଳରେ ଟିଣ-ଟାଇଲର ଘର ଉଠିବ ଦିନେ ।

ଦରକାର ନାହିଁ ଏ ସବୁ । ଆମର ଏଇ ଭଂଗା ଘରଇ ଭଲ । ଆମେ ଶାଗ-ଭଟି ଖାଇ ରହିବୁ । ତୁ ତାକୁ ତଡିଦେ ।

ବେଜାୟ ମାଡ଼ ଦେଲା ଗହରଲି । ସଂଗେ ସଂଗେ ଗୋଲବାନୁ ବି ହାତ ମିଳାଇଲା ।

ବାପ ବଂଚିଥିଲେ ଏମିତି କେହି ମାରି ପାରି ନଥାନ୍ତେ ତାକୁ । ଗୋଠକୁ ଯିବା ପାଇଁ ତାକୁ କେହି ଠେଲାଠେଲି କରନ୍ତା ନାହିଁ । ସେ ଜାଲ ନେଇ ବିଲ-ପଦରକୁ

ବାହାରି ପଡ଼ନ୍ତା ମାଛ ଧରିବାକୁ । ବାପ କହନ୍ତା, ହାଟରେ ତୋତେ କପଡ଼ାର ଦୋକାନ କରିଦେବି ଖଣ୍ଡେ । ତା ଅପେକ୍ଷା ବରଂ ମୋତେ ଖଣ୍ଡିଏ ଡଂଗା କିଣିଦିଅ । କହନ୍ତା ନାସିମ୍ । ମାଟି ଅପେକ୍ଷା ଦରିଆର ପାଣି ମୋତେ ବେଶୀ ଭଲ ଲାଗେ । ବାପର ନୌକା କିଣିଦେବାର ସାଧ୍ୟ ନଥିଲା । ନାସିମ୍ ଏଇଲାଗେ ଏତେ ବଡ଼ ହୋଇନାଇଁ ଯେ ଘାଟ ନାଆ ବାହି ଖଟି ଖାଇବ । ତାର ଜାଲ କେବଠୁ ଛିଣ୍ଡି ଗଲାଣି । ତଥାପି ଜାଲର ଆକର୍ଷଣ ସେ ଭୁଲି ପାରିନାଇଁ । ନଦୀ କୂଳରେ ଚୁପ ହୋଇ ସେ ବସି ରହେ । ତା ଗାଲ ଦେଇ ଝରିପଡ଼େ ଟୋପା ଟୋପା ଲୁହ ।

ସେ ଶୁଣିଚି, ମା ନିକା ବସିବ ଗହଗଲି ସାଂଗରେ । ଗୋଟିଏ ଘରର ଲୋକ ହୋଇ ରହିବେ ସେମାନେ । ନାସିମର ଆଉ ଜାଗା କେଉଁଠି ? ପଛ-ଦୁଆରେ । ଲୋକେ ଯେତେବେଳେ ମାକୁ ପଗ୍ଭରିବେ, ଇଏ କିଏ, ତେବେ ମା କହିବ, ମୋର ଆଗର ମିଣିପର ପୁଅ । କାହା ଭିତରେ ଅଛୁ ? ଯେବେ କିଏ ପଗ୍ଭରିବ ନାସିମକୁ, ସେ କହିବ, ଗହଗଲିର । ବୁକୁ ଭିତରଟା ଜଳୁଥାଏ ନାସିମର ।

ମାଇଲିଏ ଦୂରରେ ବ୍ରାଂଚ ଲାଇନ୍‌ର ଇଷ୍ଟିମର ରହେ । ଝୋଟକ୍ଷେତ ପାଖରେ । ଜେଟି ବା ପ୍ଲ୍ୟାଟ ନାଇଁ । ବାଦାମ ଗଛ ଗଣ୍ଡିକୁ ଲଗି ଷ୍ଟିମର ଆସି ଘାଟରେ ଲାଗେ, ଆଶ୍ଚର୍ଯ୍ୟଜନକ ଭାବରେ ଗଛରେ ଘଷି ନ ହୋଇ । ଘାଟ ଉପରେ ସିଢ଼ି ପଡ଼େ ଦିଖଣ୍ଡ । ସିଢ଼ିର ଏ ପଟୁ ସେପଟ ଯାଏ ବାଉଁଶ ଲଗି ଧରି ଛିଡ଼ା ହୁଅନ୍ତି ଦୁଇଜଣ ଖଲାସୀ । ଓହ୍ଲାନ୍ତି ଚଢ଼ନ୍ତି ଯାତ୍ରୀମାନେ । ବାଦାମ ଗଛ ତଳେ ବସି ଛୋଟ ଏକ ଟିଣ ବାକ୍‌ସରୁ ଟିକିଟ ବିକେ ଘାଟ ସରକାର । ଯେଉଁମାନେ ଓହ୍ଲାଇ ଯା'ନ୍ତି ସେମାନଙ୍କଠୁ ଟିକଟ ସଂଗ୍ରହ କରେ, ଫାଙ୍କି ଦେଇ ଯିଏ ଖସି ଆସି ପାରିଚି ତା ସାଂଗରେ ଗୋଟାଏ ଫାଙ୍କରେ କଥାଟା ଛିଣ୍ଡାଇନିଏ । ତାପରେ ଉଠିଆସେ ଇଷ୍ଟିମରକୁ, ହିସାବ-କିତାବ କରିବା ପାଇଁ କାହାଜର ବାବୁ ସାଙ୍ଗରେ । ଘାଟ-ସରକାର ଓହ୍ଲାଇ ନ ଯିବା ପର୍ଯ୍ୟନ୍ତ ସିଢ଼ି ଉଠେନା । ଖଣ୍ଡେ ଉଠାଇଲେ ବି ଆଉ ଖଂଡେ ପଡ଼ିଥାଏ । ଲଗି ଦରକାର ହୁଏନା ଘାଟ-ସରକାରର ।

ବୁଢ଼ି ମୂଲକ, ପ୍ରାୟ ସବୁ ସମୟରେ ପାଣି ଜମି ରହିଥାଏ । ଗଛ ତଳଟା ହିଁ ଯାହା ଟିକିଏ ଟାଂଗଣା ଧରଣର । ଯାତ୍ରୀମାନେ ପାଣି କାଟି ଯାଇ ଗାଁର ରାସ୍ତା ଧରନ୍ତି । ହାଲୁଠେଲା ଜଙ୍ଗା ଅଛି ଖଂଡିଏ । ମାଲପତ୍ର ଥିଲେ ତାର ଶରଣ ନିଅନ୍ତି । ପିଲା-

କବିଲା କାଂଧରେ ପାର ହୁଅନ୍ତି । ନୂଆ ବୋହୂ ହେଲେ ଦି'ଆଡୁ ଧରି ଟେକି ଟେକି ନିଅନ୍ତି ।

'ସିଡ଼ି ଉଠାଅ' । ଦୋତାଲାରୁ କାପ୍ତାନ ('ସାରେଂଗ୍') ହୁକୁମ ଦିଏ ।

ଘାଟ ସରକାର ଏ ପର୍ଯ୍ୟନ୍ତ ଓହ୍ଲାଇନି ନା କଣ ? ନା ଏଇ ହେଇତ ଓହ୍ଲାଇ ଗଲା ବଂକା ଟଂକା ପାଦରେ । ଶେଷ ସିଡ଼ିଟା ଉଠିଗଲା । ହଡ଼-ହଡ-ହଡ଼-ହଡ଼ କରି ମୋଟା ଶିଂକୁଳିରେ ବଂଧା ନଂଗର ଉଠି ଆସିବାକୁ ଲାଗିଲା ।

ଜଣେ ଲୋକ ଜଲଦିବାଜିରେ ଓହ୍ଲାଇ ପାରିନାହିଁ ବୋଧହୁଏ । ଲୋକ କିଏମ ? ଦଶ ବାର ବର୍ଷର ପିଲାଟିଏ । ପ୍ୟାସେଂଜର ନା କଣ ? କିଏ ଜାଣେ ? ଜାହାଜ ଦେଖିବାକୁ ଉଠି ଆସିଥିଲା ହୁଏତ କେତେବେଳେ । ତେବେ ଓହ୍ଲାଇ ଯିବାକୁ କହ ଆଗ ଘାଟରେ, ପାତାକଟାରେ । ଶେଷ ପହରର ଭଟ୍ଟାରେ ତରବରରେ ଚାଲି ଯାଇ ପାରିବ ଏଙ୍କ ମାଲାର ଡଂଗାରେ । ଅଂଧକାର ହୋଇଯିବ । ଘରକୁ ଯିବ କିମିତି ? ଆହା ବାପ ମା କେତେ କଣ ଭାବିବେ କେଜାଣି ।

ଛୋଟ ଷ୍ଟିମର । ଉପର ତାଲା ଡେକରେ ଖାଲି ଥାର୍ଡ଼ କ୍ଲାସ । ସାମନା ପଟେ ଫାଷ୍ଟ କ୍ଲାସର ଦୁଇଟା ପାଗଭଡ଼ି, ଆଉ ତା ସାମନା ଖୋଲା କଣରେ କାପ୍ତାନର (ସାରେଂଗ୍) ହୁଇଲ । ନାସିମ ଏକାବେଳେକେ ସେଠି ଆସି ହାଜର ହେଲା ।

ପ୍ରଥମଟା କେହି ଦେଖି ବି ଦେଖିନି । ଭାବିଲେ କଲର କାଇଦା ଦେଖିବା ପାଇଁ ଏମିତି ଉଠି ଆସିଚି ବୋଧେ । କିଂତୁ ନା, ଚଂକୁନାହିଁ ପିଲାଟା ।

"କଣ ଦରକାର ?" ଚଟି ପାଦରେ, କିସ୍ତି ଟୋପି ମୁଂଡରେ କାପ୍ତାନ (ସାରେଂଗ୍) ହୁଂକା ଫୁକୁଥିଲା ଠିଆ ଠିଆ । ବେକ ଘୂରାଇ ପଗ୍ଧରିଲା ।

"ହଜୁରଂକର ଯଦି ଚାକର ଦରକାର ଥାଏ, ମୋତେ ରଖି ପାରନ୍ତି ।"

"ତୋ ଘର କେଉଁଠି ?" କାପ୍ତାନ କିଛିବେଳ ଅନାଇ ରହିଲା ନାସିମ୍ ମୁହଁକୁ ।

'ଏଇଠି ହଜୁର, କନକଦିୟା ।'

"ମା ବାପ ଅଛନ୍ତି ?"

"କେହି ନାହିଁ ।"

'ଆହୁରି କିଛି ସମୟ ଅନାଇ ରହିଲା କାପ୍ତାନ । କହିଲା, କାମ କରି ପାରିବୁ ତୁ ?'

"କଣ କାମ ହଜୁର ?"

'ରଂଧାବଢ଼ା, ଧୂଆ-ପୋଛା, ଲୁଗାକଚା, ବାସନମଜା—ଏଇ ସବୁ ଆଉ କଣ ? ବେଶ୍, ଲାଗି ଯା ତାହାହେଲେ । ମୁଫତ୍ ଗୋଟାଏ ପିଲା ଯଦି ମିଳେ ତ ମଂଦ କଣ ?' ହୁଇଲର ଲୋକ ଇୟାଦାଲି ସଂଗେ ଥରେ ଆଖି ମିଳାଇ ନେଲା । ଅନ୍ତତ ହୁକାଟି ତ ସଜାଡ଼ି ପାରିବ । ଗୋଡ଼ ହାତ ମୋଡ଼ି ଦେଇ ପାରିବ ତ ଦରକାର ହେଲେ ।'

ଇୟାଦାଲି କହିଲା, 'ଦରମା ପାଇବୁ ନାଇ କିଛି ।'

'ଦରମା ନା ହାତୀ ।' କାପ୍ତାନ ପାଟି କରି ଉଠିଲା 'ସୁଅର ଶିଉଳି ଦେଇ ତରକାରି ରଂଧି ଖାଇବାକୁ ହେବ ! ମୋର ଗରଜ ପଡ଼ିଛି, ଏମିତି ତ ରହିଲେ ରହିବ, ନୋହିଲେ ଓହ୍ଲାଇ ଦେବି ଜବର୍ଦସ୍ତ । କଣ ଟିକିଟ ଅଛି ?'

'ନା, ହଜୁର, ଦରମା ଦରକାର ନାହିଁ ମୋର ।

ଜାହାଜରେ ସେ ଯାଗା ପାଇଛି ଏଇ ନାସିମର ଖୁବ୍ । ବାପ ନୁହେଁ, ଗୁରୁ ନୁହେଁ, ମୁନିବ ନୁହେଁ, ମାଲିକ ନୁହେଁ, ଫାଲତୁ ବାଜେ ଲୋକର ଯେ ମାଡ଼ ଖାଇବାକୁ ହେବ ନାହିଁ ମୁହଁକୁ ବୁଜି, ଏଇ ତାର ବହୁତ । ଅଜଣାର ଆକର୍ଷଣରେ ସେ ଭସି ବୁଲିବ ।

'ଭଲ କରି କାମ କଲେ ଜାହାଜରେ ହିଁ ବାହାଲ କରିବ ଦିନେ । ପ୍ରଥରେ ସିଡ଼ି ପରେ ପାଟାତନ, କ୍ରମେ କ୍ରମେ ଶୁଖାନି, ଶେଷରେ ସାରେଂଗ ବା କାପ୍ତାନ* ! କିଏ କହି ପାରିବ ? ଆଗେ ବିନା ମାଇନାରେ ଚାକର, ଶେଷରେ ଏଇ ଜାହାଜର ଜମିଦାର ।' ସାରେଂଗ ତାର ଶାଦା ଶୀର୍ଣ ଦାଢ଼ିରେ ହାତ ବୁଲାଇବାକୁ ଲାଗିଲା ।

କିନ୍ତୁ ପ୍ରଥମ ଦିନ ଘଡିରେଇ ନାସିମ ମାଡ଼ ଖାଇଲା କାପ୍ତାନ ହାତରେ । ବେଖିଆଲରେ ଭାଂଗି ପକାଇ ଥିଲା ଖଣ୍ଡେ କାଚ ବାସନ । ଆଉ ଯାଏ କୁଆଡ଼େ ? କଥା ନାଇ ବାର୍ତା ନାହିଁ ପିଠିରେ ବେକମୁଣ୍ଡାରେ ପଡ଼ିବାକୁ ଲାଗିଲା ବିଧା ଉପରେ ଚାପୁଡ଼ା । ଝରଝର କରି କାଂଦି ପକାଇଲା ନାସିମ । ବେଶୀ ଗୋଳମାଳ କରିବୁ ତ ହାତ ଗୋଡ଼ ବାଂଧି ଫିଙ୍ଗି ଦେବି କଳା ପାଣିରେ ।

---

*ପାଟାତନବାଲା, ଶୁଖାନି ସମସ୍ତେ ଷ୍ଟିମରର କର୍ମଚାରୀ ।

କଷ୍ଟ ଅପେକ୍ଷା ଆଶ୍ଚର୍ଯ୍ୟ ଲଗିଲ ବେଶୀ ନାସିମର । କିଂତୁ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଏଥିରେ । ଏଇ ଏଠିକାର ରେଓୟାଜ । ସମସ୍ତଙ୍କୁ ମାଡ ଖାଇବାକୁ ହୁଏ କାପ୍ତାନଠାରୁ । ଯେଉଁମାନେ ସିଡ଼ି ଦିଅନ୍ତି, ଯେଉଁମାନେ ପାଟାତନ ଧୁଅନ୍ତି, ଯେଉଁମାନେ ଲଂଗର କାମରେ ଅଛନ୍ତି, ଯିଏ ଦୌଡ଼ିଟଣା କାମ କରନ୍ତି କିଂବା ଲଇଟ୍ ଘୂରନ୍ତି, ସେମାନଂକ କାମରେ ଟିକିଏ ଗଲତି ବା ଗଫିଲତି ହେଲେଇ ଆରମ୍ଭ ହୋଇଯାଏ ମାରଧର । ତଳେ ମିସ୍ତିରିର ଛଲକା । ତାକୁ ଘେରି କାମ କରନ୍ତି କୋଇଲବାଲା, ନିଆଁବାଲା, ଇଂଜିନ୍‌ବାଲା । କିଂତୁ ଚରମ ଶାସନର ଭର କାପ୍ତାନର ହେପାଜତ୍‌ରେ । ଭୁଲ କରିଚି କିଏ, ଏକ କଳ ଘୂରଇବାକୁ ଯାଇ ଆଉ ଏକ କଳ ଘୂରଇ ଦେଇଛି, ତା'ହେଲେ ଆଉ ରକ୍ଷା ନାଇଁ । ଗୋଇଠା ଚପଡ଼ା, ଜାତି ବେଜାତିର ଗାଳିମଂଦ, ଯୋତାମାଡ଼ ପର୍ଯ୍ୟନ୍ତ । ସେଥିରେ କିଛି ଫଳ ନ ହେଲା ତ ଚାକିରିରୁ ବରଖାସ୍ତ ।

କାହିଁକି ବା ନ ହେବ ଶୁଣେ ? କୋଂପାନୀ ଖାଲି କାପ୍ତାନକୁଇ ମାନେ । ଜାହାଜର ଜିଲା-ମାଜିଷ୍ଟ୍ରେଟ୍ ସେ । ସମସ୍ତ ଦାୟିତ୍ୱ ତାର । ଚାଲିବା ବେଳେ ଷ୍ଟିମର ଯଦି ନୌକା ବୁଡ଼େଇ ଦିଏ, ଖେସାରତ ଦେବାକୁ ପଡ଼େ କାପ୍ତାନ ସାହେବକୁ । ଦୁର୍ଯୋଗ ପଡ଼ି ଖୋଦ୍ ଷ୍ଟିମାର ଯଦି ବୁଡ଼ିଯାଏ, ଦାୟୀ କିଏ ? କୋଂପାନୀର ସାହେବମାନେ ନୁହନ୍ତି । ଯାହା କିଛି ମାଲିମୋକଦ୍ଦମା ଚଳନ୍ତି ଷ୍ଟିମରକୁ ନେଇ ସମସ୍ତ ଫଳାଫଳ କାପଟେନ ସାହେବର । ଆଉ ଯଦି ଝଡ଼-ତୋଫାନରୁ ଷ୍ଟିମରକୁ କୂଳରେ ଲଗାଇ ଦିଆଯାଏ ତାର ପୁରସ୍କାର ଏଇ କାପ୍ତାନ ସାହେବରଇ ପ୍ରାପ୍ୟ । ମିସ୍ତିରି ଖଲସୀମାନେ ଯେତେ ଡାକହାକ ଦୌଡ଼ଧପଡ କରନ୍ତୁ, ଯେତେ କାଇଦା-କରାମତି ଦେଖାନ୍ତୁ, ଟଂକା ତୋଡ଼ାର ଟିକିଏ ଛିଟା ବି ତାଙ୍କ ବରାଦରେ ଜୁଟିବ ନାଇଁ । ଯେତେ ମେଡେଲ ସବୁ କାପ୍ତାନ ସାହେବ ଗଳାରେ ଝୁଲିବ ।

'କଣ ହେଲା ହଠାତ୍ ?'

ଷ୍ଟିମର ଚରରେ ଭିଡ଼ିଯାଇଚି । ଗ୍ରେଗ ଚର, କୁହୁଡ଼ିରେ ଠଉରଇ ପାରି ନାହିଁ । ଚକ ଧସି ଯାଇଛି ମାଟି ଭିତରେ, ଜଲଦି ଖଲାସ ହେବ ବୋଲି ମନେ ହୁଏନା । ଖବର ପଠାଇବାକୁ ହେବ୍ ବଂଦରର ଡକ୍‌କୁ, ଜାଲି ବୋଟରେ ଲୋକ ପଠାଇବାକୁ ହେବ ପାଖ ଇଷ୍‌ଟେସନକୁ । ସେ ବି ଏମିତି କିଛି ନୁହେଁ । ଅଧିକାଂଶ ଇଷ୍‌ଟେସନ ତ ଗଛତଳେ ବା ଖେତ ଖାଲ ଜାଗାରେ । କମ୍ ସେ କମ୍ ସାତ ଆଠ ଘଂଟା ଲେଟ୍ ଆଜି ନିର୍ଘାତ । ମଝିରେ ମଝିରେ ଯେତେ ଘାଟରେ ଯାତ୍ରୀମାନେ ଷ୍ଟିମର ଆଶାରେ

ବସିଛନ୍ତି ଆଜି ସେମାନେ ଗତି ସାର ଖାଲି ଦୂରରେ ଧୂଆଁ ଦେଖିବେ ଏବଂ ହୁଇସିଲ ଶୁଣିବେ ।

'ଦୋଷ କାହାର ?'

ଦୋଷ ଶୁଖାନିର, ଦୋଷ ସେକେଣ୍ଡ ମେଟ୍‌ର । ଲଂମ୍ବା ଚଉଡ଼ା ଯୁଆନ ମରଦ ସବୁ, ଏବେ ଅଣ୍ଡ ମାରିଲେ ଆରମ ଲଗେନା, ନିଜ ହାତ ପାଦ ଓଲଟି ଦୁରଜ ହୁଏ । କିନ୍ତୁ ଯିବେ କୁଆଡ଼େ ? ଏଇ ମାସର ପୂରା ମାଇନା ବରବାଦ ହୋଇଯିବ ତାଙ୍କର । ଖୋରକ ବି କିଣିବାକୁ ହେବ ନିଜ ପଇସାରେ ।

କାପ୍ତାନ ଯେମିତି ଏ ଜାହାଜର ଇଜାରଦାର । ମୋକରରି ଇଜାରା । ଯେତେ ଖରଚ ସରଂଜାମ ବାବଦ, ମରମତ ବାବଦ, ଖଲାସୀ ମିସ୍ତିରି ମାଇନା ବାବଦ—ହିସାବ କରି ଗୋଟାଏ ମୋଟା ଟଂକା କାପ୍ତାନ ହାତରେ ଧରେଇ ଦିଏ କୋଂପାନୀ । ସବୁ ବିଲ୍ ବ୍ୟବସ୍ଥାର ମାଲିକ ଏଇ କାପ୍ତାନ । ଯାହାକୁ ଖୁସି ପୂରା ମାଇନା ଦିଏ, ଯାହାକୁ ଖୁସି ଜୋରିମାନା କରେ, ଯାହାକୁ ଖୁସି ଖୋରକି କାଟେ, ଯାହାକୁ ଇଚ୍ଛା ବରଖାସ୍ତ କରେ । ଏହା ବିରୁଦ୍ଧରେ ନାଲିଶ ନାହିଁ, ଫୟସଲା ନାହିଁ । ଭିତରର ଶାସନ ନେଇ କୋଂପାନୀ ମୁଣ୍ଡ ଖେଳାଏ ନାହିଁ । ସେ ଦେଖେ ଘାଟରୁ ଘାଟ ମାଲ-ମଣିଷରେ ବୋଝେଇ ହୋଇ ଷ୍ଟିମର ମୋଟା ମୁନାଫା ଆଣିପାରେ କି ନା ।

ପୂରା ଷ୍ଟିମରଟି ତେଣୁ କାପ୍ତାନ କଥାରେ ଉଠେ ବସେ । ସବୁ କର୍ମଚାରୀ ତାର ତାଁବେଦାର । ଷ୍ଟିମର ତ ନୁହେଁ, ଯେମିତି ଲଟଦାରି ପାଇଚି ।

'କାଂଦିଲେ କିଛି ଲାଭ ନାହିଁ । ପାଖରେ ଥାଇ କହିଲା ମକବୁଲ । ଏମିତି ଅନେକ ମାଡ଼ ଖାଇବାକୁ ହେବ । ମାଡ଼ ଖାଇ ଖାଇ ତେବେ ପ୍ରମୋଶନ ।'

ମକବୁଲ ବି ପ୍ରଥମେ ଆସିଲା ଚାକର ହୋଇ । ରଂଧାବଢ଼ା ନୁହେଁ, କାପ୍ତାନର ଧୋବା-ମୋଚିର କାମ । ତିନି ବର୍ଷ ପରେ ସେ ସିଡ଼ି ପାଇଚି । ପରେ ପାଟାତନ, ଦଉଡ଼ି । ମାଡ ନ ଖାଇଲେ ଉନ୍ନତି ନାହିଁ ଜାହାଜରେ ।

'ସାହେବଙ୍କୁ ସୁଦୃଷ୍ଟି ନ ହେଲେ କିଛି ହିଁ ହେବାର ଜୋ ନାହିଁ । ଦଶ-ବାର ବର୍ଷ ପରେ ସାହେବଂକର ଯଦି ଦୟା ହୁଏ । ତେବେ ସାର୍ଟିଫିକେଟ ଦେବେ । ପରେ ସେଇ ସାର୍ଟିଫିକେଟ ବଳରେ ଦିଆଯିବ କାପ୍ତାନଗିରି ପରୀକ୍ଷା ।' ମୁରବ୍ବି ଭଳି ବହେ ଆପଘର ଉଦ୍ଦନ । 'ସେଇ ସାର୍ଟିଫିକେଟ ନ ହେଲେ ସବୁ ଫକ୍କା । ତେଣୁ ଭଲ କରି କାପ୍ତାନ ପାଦରେ ତେଲ ମାଲିସ କରିବା ଚାହିଁ । ତା' ପରେ ପାଶ

କରି ଥରେ ହୋଇଯାଇ ପାରିଲେ ତେଣିକି ପାଏ କିଏ । ସେତେବେଳେ ଜମିଦାର, ତବିଲଦାର ସବୁ ଜଣେ ।'

'ନା, ହେ ନା, ଇଆ ଭିତରେ ଟିକିଏ କଥା ଅଛି । ଯିଏ ଚ୍ଚଟଗାଁର* ଲୋକ, ସେଇମାନଂକ ଆଡ଼କୁଇ ସାହେବର ଟିକିଏ ଟାଣ ବେଶି ।' ସ୍ୱର କମାଇ କହେ ବୟଲରର ଖଲସୀ, ବିଲୟତ ଆଲି । ନିଜ ଘର ଚ୍ଚଟଗାଁ କିନା । କହେ ଚ୍ଚଟଗାଁ ଛଡ଼ା ସାରେଂଗ (କାପ୍ତାନ) କାହାନ୍ତି ? କଥାରେ ଅଛି, ସାରେଂଗ, ଶୁଖୁଆ, ଦରଗା, ଏ ତିନ ନେଇ ଚ୍ଚଟଗାଁ । ଧାନ, ଡ଼କାୟତ, ଖାଲ ଏ ତିନ ନେଇ ବରିଶାଲ । ସାରେଂଗି କରିବା ତ ଡ଼କାୟତି କରିବା ନୁହେଁ ।

'ତୋ ଘର କେଉଁଠିରେ ପିଲ ?' ସମସ୍ତେ ପଚ୍ଚରନ୍ତି ଏକ ସଂଗରେ । 'ଏଇ ଅଂଚଳରେ ।' ହତାଶ ସ୍ୱରରେ କହେ ନାସିମ । ଆଉ ସମସ୍ତଙ୍କ ମୁହଁ ଯେମିତି ଝାପସା ହୋଇ ଆସେ ।

ପରଦିନ ବେଦମ ମାଡ଼ ଖାଇଲା ଅବଦୁଲ । ପାଣି ମାପିବାକୁ ଯାଇ ଗୋଟିଏ ଲୁହା କାଠି ହଜାଇ ଦେଇଛି ।

ମାରିବା ବେଳେ କେହି ଧରିବାକୁ ଆସନ୍ତି ନାଇଁ, ଛଡ଼ାଇବାକୁ ଆସନ୍ତି ନାଇଁ । ଇଏ ଏକବାରେ ହିହଘଷା ନିତିଦିନିଆ ବ୍ୟାପାର । ତଥାପି ଆଖି ପୋଛି କାଂଦିବାର କମତି ନାଇଁ । ନଦୀ ଜଳରେ ଆଖି ପୋଛୁ ପୋଛୁ ଅବଦୁଲ କହେ, 'ମାଇନାରୁ ଦାମ ଓ ତାର ସୁଧ ତ କାଟି ଦେବ, ତଥାପି ମାରି ଖାଲିଟାରେ ଜଖମ କରିବ ।'

ତଥାପି ପ୍ରତିବାଦ ନାଇଁ, ବିଦ୍ରୋହ ନାଇଁ । ନିଜକୁ ସମର୍ଥନ କରି ଦିପଦ କଥା ବି କୁହାଯିବ ନାଇଁ । ମାଡ଼ ରୋକିବା ପାଇଁ ଶକ୍ତ କରଯିବ ନାଇଁ ଶରୀରର ହାଡ଼-ମାଂସ ।

ନାସିମ ଭବେ ଏମାନେ ସମସ୍ତେ ବୋଧେ ତା'ରି ପରି ନିରାଶ୍ରୟ, ବାପ-ମା-ଛେଉଣ୍ଡ ।

ତା ନୁହେଁ । ସମସ୍ତେ ଉଠିବାକୁ ଚ୍ଚହାନ୍ତି ସିଢ଼ିଠାରୁ ଆରଂଭ କରି ଜାହାଜର

---

* ଚ୍ଚଟଗାଁ = ଚଟ୍ଟଗ୍ରାମ

'ଫାନିଲ' ପର୍ଯ୍ୟନ୍ତ । ସମସ୍ତେ କାପ୍ତାନର ସାର୍ଟିଫିକେଟ ଚାହାନ୍ତି । ମାଡ଼ ଦେବାକୁ ନ ଦେଲେ ସେ ହାତରେ ଖଡ଼ି ଧରାଇବାକୁ ଯିବ କାହିଁକି ?

ସେଥିପାଇଁ ସେଦିନ ଯେତେବେଳେ ମକବୁଲ ଫଗରେ ପାଣି ଉଠାଇବା ନେଇ ମଜା କରିବାକୁ ଯାଇ ଗୋଟିଏ ବାଲଟି ନାସିମ ନଦୀରେ ପକାଇଦେଲା ସେତେବେଳେ ମାଡ଼ ଖାଇବାକୁ ତାର ଆଉ ଲଜ ଲାଗିଲା ନାହିଁ । ଅପମାନର ଜ୍ୱାଳା ପର୍ଯ୍ୟନ୍ତ ଲାଗିଲା ନାହିଁ ତା ମନରେ । ମକବୁଲ ଫଗରେ ସବୁ ଖଲାସୀଙ୍କ ଫଗରେ ସେ ବନ୍ଧୁ ପଣିଆ ଅନୁଭବ କଲା ।

'ତୋର କଣ ଯାଏ ? ମାଇନା ନାହିଁ, ଖାଲି ମାଡ଼ ଉପରେଇ ଚାଲିଗଲା ।' ମକବୁଲ କାଂଦୁ କାଂଦୁ କହିଲା, 'ଆଉ ମୋର ପୂରା ମାଇନାଟାହିଁ ବାଲଟି ପାଇଁ କାଟି ନେବେ । ପରେ ମାସକାବାର ହେଲେ କହିବ, ମୋ'ଠୁ 'ଆଗାମ' ନେ । ଟଂକାକେ ଦିଅଣା କରି ସୁଧ ଦେବୁ । ଜାହାଜରେ ବସି କରି ମହାଜନୀ କରେ । କେହି ଆମକୁ ଦେଖିବାକୁ ଶୁଣିବାକୁ ନାହିଁ । କହି ଉପରକୁ ଅନାଏ । ଯେମିତି କି ଉପରବାଲା ଶୁଣୁଛନ୍ତି ଆର୍ତ୍ତର ଫରିୟାଦ ।

'ଅନ୍ୟ ଜାହାଜକୁ ଚାଲିଗଲେ ?

'ତୁ ଅଛୁ କେଉଁ ତାଲରେ ? ଗୋଟେ ଜାହାଜରୁ ଚାଲିଗଲେ ଆଉ କେଉଁ ଜାହାଜରେ ଜାଗା ନାହିଁ । କାପ୍ତାନାମାନଂକ ମଧ୍ୟରେ ସର୍ତ୍ତ ଅଛି । ସେଇଥିପାଇଁ ତ ମାଡ଼ ଖାଉଛି ମୁହଁ ବୁଜି ରହିଛି ଯେମିତି ବରଖାସ୍ତ ନ କରିବ । ଥରେ ବରଖାସ୍ତ କଲେଇ ବରବାଦ ହୋଇଗଲି । ପାଣି ଛାଡ଼ି ତେବେ ହଳ ଧରିବାକୁ ହେବ ।'

'ଆଉ କେଉଁ ଜାହାଜକୁ ବା ତୁ ଯିବୁ ?' ପାଖରୁ ଇୟାଦାଲି ଫୋଡ଼ଣ ଦିଏ । 'ସବୁ ଜାହାଜରେ ତ ଏଇ ରେଓଆଜ' ।

'ଏମିତି ପଳାଇଯାଇ ହେବ ନାଇ ?'

ସମସ୍ତ ହସିଉଠିଲେ । ସିଡ଼ିରୁ 'ଫ୍ୟାନିଲ' ଯାଏଁ ଉଠିବାର ସାଧନାରେ ଯେଉଁମାନେ ଜାହାଜରେ ପଶିଛନ୍ତି, ସେମାନଂକ ନିକଟରେ ଏ କଥାଟା ବଡ଼ । ବେଖାପ୍ ଲାଗେ ।

'ଆଉ ପଳାଇଯିବା ସୋଜା ନୁହେଁ ।' ଗଂଭୀର ମୁହଁରେ କହେ ସେକେଣ୍ଡ ମେଟ୍ । 'ତୋର ନାମ ଠିକଣା ସାହେବର ନୋଟ୍‌ବୁକ୍‌ରେ ଟୁକା ଅଛି । ପଳେଇବୁ ତ ପୁଲିଶରେ ଏଜାହାର ଦେବ । କହିବ ମୋ ଡେସ୍କରୁ ମନିବ୍ୟାଗ୍ ନେଇଚି, ଘଡ଼ି ନେଇଚି । କୋଂପାନୀ ଲଢିବ କାପ୍ତାନ ପକ୍ଷରେ । ଥିଲୁ ଜାହାଜରେ, ଯିବୁ ଜେଲକୁ ।'

ତେବେ ଏମିତି ଦିନ ଯିବ ନାସିମର ? ଏଣ୍ଠ ଏକଇ ପ୍ରକାର ପାଣିର ଶବ୍ଦ ଶୁଣି ଶୁଣି ? ମାଇନା ନାଇଁ, ଜାଗା ନାଇଁ, ଏମିତି କରି ଖସିବ ସେ ଦିନ ଗତି ?

'ସାହେବକୁ ଖୁସି କରିବାକୁ ଚେଷ୍ଟା କର, ତା'ଛଡ଼ା ଅନ୍ୟ କିଛି ଉପାୟ ନାଇଁ । ଦେଖ୍, ଥରେ ସିଡ଼ି ଧରି ପାରୁ କି ନା ।'

ଆଉ କିମିତି ସେ ଖୁସି କରିବ ? ଯାହା କାମ ତାକୁ ଦିଆ ଯାଇଚି,–ସେ ସାହେବର ଦିହ-ହାତ ଗୋଡ଼ ଟିପେ, ଗୋସାଲ ଆଗରୁ ତେଲ ମାଖେ, ରଂଧାବଢ଼ା ବେଳେ ଶୁଖାନି ସାହାଯ୍ୟ କରେ ବୋଲି ତାର ହାଡ଼ ମାଉଁସ ଏ ଯାଏଁ ଅଲଗା ହୋଇନି । କିନ୍ତୁ ମନ ନାଇଁ, ମାଇନା ନାଇଁ । ବରଂ ଜରିମାନା ବାବଦ କିଛି ତାର କାଟି ପାରେ ନାଇଁ ବୋଲି ସାହେବର ବଡ଼ ଆପଶୋଷ । ତେଣୁ ମଝିରେ ମଝିରେ ତାକୁ ଉପାସ କରଇ ରଖେ । ସେ ସେ ବେଳାର ଲଙ୍କା ପିଆଜର ଖରଚ ବଂଚିଏ ।

ଚାଉଳ-ଲୁଣ-ଲଙ୍କା-ପିଆଜ କାପ୍ତାନ ଯୋଗାଣ ଦିଏ । ଆଉ ସବୁ ଯାର ଯାର ମର୍ଜି ମାଫିକ । ତେଲ ଆଉ ମସଲା, ମାଛ ଆଉ ତରକାରି । ମାସ ଶେଷରେ ଦରମା ଟଂକାରୁ ଯାର ଯାର ଚାଉଳ-ଲୁଣ-ଲଙ୍କା-ପିଆଜ ଖରଚ କାଟି ରଖେ କାପ୍ତାନ । ତା ବି ତାର ମର୍ଜି ମାଫିକ ।

'ଯଦି ମନ ଚାହୁଁ ସାହେବର, ଚୋରି କର ।' କିଏ ଯେମିତି କହିଲା ଫିସ୍ ଫିସ୍ କରି ।

ଏଇ ଇଷ୍ଟିମାର ଫଗେ ବେଳେବେଳେ ବାର୍ଜ ବଂଧା ଥାଏ । ସେଥିରେ ବସ୍ତା ବୋଝାଇ ଚାଉଳ ଯାଏ, ଲୁଣ ଯାଏ, ଲଙ୍କା ଯାଏ । ବାର୍ଜ ଫଗରେ ଲୋକ ଥାଆନ୍ତି । ତାଙ୍କ ସଙ୍ଗରେ କି ବନ୍ଦୋବସ୍ତ କାପ୍ତାନ-ମିସ୍ତିରିର, ଷ୍ଟୋର ରୁମ ଉପରୁ ବି ଫେର୍ ମୁନାଫା ମାରେ ।

ନା, ତାକୁ ଭଲ ଲାଗେନା । କୌଣସି ଆଶା ନାଇଁ ନାସିମର । ଦିନେ ଛଡ଼ା ଦିନେ ଇଷ୍ଟିମାର ଏକଇ ରାସ୍ତା ଦେଇ ଘୂରଫେର କରେ । ଯେଉଁଠିକି ଆସିବା ସମୟ ସଂଧ୍ୟାବେଳେ, ସେଠିକି ଆସୁ ଆସୁ ରାତିଅଧ, କେବେ କେବେ ବି ପରଦିନ ଭୋର । ଖାଲି ଏଇ ଟିକକହିଁ ଯାହା ବୈଚିତ୍ର୍ୟ । ନଇଲେ ଏକ ରକମର ପାଣିର ଶବ୍ଦ, ନଂଗର ଉଠାର ହଡ୍-ହଡ୍, ସିଡ଼ି ଓ ଦଉଡ଼ି ପକାଇବାର ଡାକ-ଚିତ୍କାର । ଭଲ ଲାଗେନା ତାକୁ । କେତେ ଦିନ ପରେ ପର ଘୂରି ଘୂରି ଷ୍ଟିମର କନକଦିୟାକୁ ଫେରିଆସେ । ନଦୀ ଏତେ ଛୋଟ, ତା ସ୍ରୋତ ଏତେ ଦୁର୍ବଳ, ଭାବି ପାରେନା ନାସିମ । ଆଗେ ଆଗେ ମନେ

ହେଉଥିଲା ନଦୀ କେଜାଣି ଚାଲି ଯାଇଚି କେଉଁ ସମୁଦ୍ରକୁ । ଏ ଦେଶରୁ କେଉଁ ଦୂର-ସୁଦୂର ବିଦେଶକୁ ।

ନିଗେଳାରେ ଅନ୍ଧକାରରେ କେବେ କେବେ ନଈ ଆଡକୁ ଚାହିଁ ଏକେଲଟି ଆସି ବସେ ନାସିମ । ଘନ କଳା ଜଳରେ ଜହ୍ନଗତି ଝିଲମିଲ କରୁଚି । ଆଜି କନକଦିୟା ଆସିଚି ଗତିଅଧରେ । ଘର କଥା ମନେପଡ଼େ ନାସିମର । ଭବେ କେଉଁଠି ତାର ଘର ? ତାର ଘର ଦ୍ୱାର ନାଇଁ, ସେଠି ଭୂତର ଆସ୍ଥାନ । ମନେ ପଡ଼େ ମା'କଥା । ମାର ମୁହଁ । ମନେ କରେ, ତାର ମା ନାଇଁ । ତା ମା କେବେଠୁ ମରିଯାଇଚି । ମାର ମଲା ମୁହଁ ପରି ମନେ ହୁଏ ଏଇ କଳା ଜଳର ଜ୍ୟୋସ୍ନା ।

ବଡ଼ ଚୋରି ନ କରି ପାରେ, ଛୋଟ ଛୁଟୁକିଆ ଚୋରି କରି ପାରିବ ନାଇଁ କିଆ ? ଦାଆଁ ହାତରେ ପଇଡ଼ ବିକିବାକୁ ଆସିଚି ଗାଁ ଗହଳର ଲୋକ । କାପ୍ତାନ ସାହେବଙ୍କ ପାଇଁ କିଣିଲା ଦିଟା ଦଶ ପଇସାରେ । ଜାହାଜ ଉପରକୁ ଉଠି ଆସି ସିଡ଼ି ଉଠାଇ ନେବା ପରେ, ନାସିମ କାପ୍ତାନ ସାହେବ ପାଖରୁ ଗୋଟାଏ ଏକଅଣି ନେଇ ଫିଙ୍ଗିଦେଲା ଡ଼ଙ୍ଗା ଉପରେ ।.ଆଉ ଛ'ପଇସା ? ନାସିମ ଜିଭ ଓଲଟାଇ ମୁଖଭଂଗୀ କଲା । ବିକାଳୀ ଯବାନଟା ନଈରୁ କାଦୁଅ ନେଇ ଫିଙ୍ଗିଲା ନାସିମ ଆଡେ । ଜାହାଜ ସେତେବେଳେକୁ ଘୁଞ୍ଚି ଆସିଚି, ଲଗିଲା ନାଇଁ କିଛି ଛିଟା ଫିଟା । କାପ୍ତାନ ଆଉ ନାସିମ ଦିଜଣ ଏକ ସଙ୍ଗରେ ହସିବାକୁ ଲାଗିଲେ ।

ଏମିତି ମାଛ ଆସିଚି ବିକିବାକୁ । କେଉଣ୍ଟି କିଂବା ଖଇଙ୍ଗା । ସେଥିରୁ ବି କିଛି ହେଲା ଚାତୁରୀ କରି । ଦୁଧ ଆସିଚି ହାଣ୍ଡିରେ । ବାଉଁଶ ଚୁଙ୍ଗାରେ ମାପିଦେବ । ଦାମ ଦେବ ଜାହାଜ ଉପରେ ଉଠି । କ୍ଷେତର ତଟକା କାକୁଡ଼ି କିଏଆଣିଚି ବୋଝରେ । ଚୂନା ଚିଙ୍ଗଡ଼ି ଦେଇ ତରକାରି ହେବ, ନଇଲେ ଏମିତି କଂଚା ଖାଇବି । ତୋର ଦାମ ବୁଡ଼ିଯିବ ନାଇ । ମୁଁ କାପ୍ତାନ ସାହେବର ଚାକର ।

ଏତେଦିନକେ ଗୋଟାଏ ନିମା ପାଇଚି ନାସିମ । ଖଣ୍ଡେ ପାଣିଗାମୁଛା । ଲୁଙ୍ଗି ଖଣ୍ଡେ ପାଇବ କେବେ ?

ଚାରିଟା ପଇସା ଚାହିଁଲା ନାସିମ ।

ଏଭଳି ସ୍ପର୍ଦ୍ଧାର କଥା କାପ୍ତାନ ତା ଜୀବନରେ ଶୁଣି ନାଇଁ । ଆଖି କପାଳରେ ଖୋସି କାପ୍ତାନ କହିଲା, 'କଣ କହିଲୁ ? ପଇସା ?'

କି ଭୀଷଣ ହାରାମି କଥା ନଜାଣି କହି ପକାଇଚି ଏମିତି ଭୟତରାସ

ଆଖିରେ ଚାହିଁଲା ନାସିମ ।

'କଣ କରିବୁ ପଇସା ନେଇ ?'

'ଗୁ ଖାଇବି । ଏକ ଖୁରି ।'

ଏମିତି ଏକ ଚବିଶ ପଳ ଓଜନର ଚାପଡ଼ା ପଡ଼ିଲା ତା ଗାଲ ଉପରେ । ଘୂରି ଛିଟିକି ପଡ଼ିଲା ନାସିମ । କାପ୍ତାନ ଗର୍ଜି ଉଠିଲା : "ଏମିତି ବେତରିବତ୍ । ମୋ ପାଖରୁ କଣ ନା ବିଡ଼ି ଚାହେଁ ! ବିଡି କିଣିବୁ ! କିଣିବୁ ? କେଉଁଦିନ ଶୁଣିବି ବୋତଲ କିଣିବ । ତେରିବେରି କରିବୁ ତ ନଇ ଗହିରରେ ନିଖୋଜ କରିଦେବି ।'

ଆଖିର ଲୁହରେ ମାର କଥା ମନେ ପଡ଼େ ନାସିମର । ମରିଗଲେ ମାର ମୁହଁ କିମିତି ଦିଶିବ ଏଇଆ ସେ ଅଂଧାରରେ ପାଣି ଆଡ଼କୁ ଚାହିଁ ଭବିବାକୁ ଚେଷ୍ଟା କରେ । ମାର ମଲା ମୁହଁ କଥା ଭବି ମନ ଭିତରେ ସେ ଜୋର ପାଏ । ଜୋର ପାଏ ଏଇ ମାଡ଼ ସହ୍ୟ କରିବାକୁ । ମାଗୋ ବୋଲି ଯଦି ସେ କାନ୍ଦି ନ ପାରେ, ମାଡ଼ ନିଶବ୍ଦରେ ହଜମ ନ କରି ଆଉ ଉପାୟ କଣ ଅଛି ?

ତଥାପି ଏଇ ଅତ୍ୟାଚାରିତ ଦଳ ଏକତ୍ର ହୁଅନ୍ତିନି । ଖୋଦା ଉପରବାଲା ଛଡ଼ା ଅନ୍ୟ କାହା ପାଖରେ ତାଙ୍କର ନାଲୀଶ ନାଇଁ । ମୁକ୍ତି ବି ନାଇଁ ଏଇ ଜାହାଜର ଖୋଳ ମଧ୍ୟରୁ । କେବେ ସେ ସିଡି ପାଇବ, କେବେ ପାଟାତନ, ଦଉଡ଼ି, ନଙ୍ଗର-ଲଇଟ ବା ମିସ୍ତିରିର ଇଲକା—ସେଇ ଆଶାରେ ସମସ୍ତେ ଦିନ ଗଣନ୍ତି । କିମିତିକା କାପ୍ତାନର ମନ ପାଇବେ ? ସୁଧ ଦେଇ, ଘୁଷ ଦେଇ, ଚୋରି କରି, ମାଡ଼ ଖାଇ । ଚମତ୍କାର ଗବର୍ଣମେଣ୍ଟ ଚଳାଇଚି କାପ୍ତାନ ସାହେବ ।

ସେଇ ଗତିରେ ଜଣେ ପ୍ୟାସେଂଜରର ହଳେ ଜୋତା ସଗଇଲା ନାସିମ । କାପ୍ତାନ ତା ସିଧା ନଦୀ ଭିତରକୁ ଫିଙ୍ଗିଦେଲା । କହିଲା, 'ବୁଦ୍ଧିକି ତୋର ବଳିହାରି । ମୁଁ ଜୋତା ମଚମଚ କରି ବୁଲେ ଆଉ ମୋତେ ପୁଲିଶ ପକଡ଼ାଉ କରୁ" । ପରଦିନ ନାସିମ ଜୋଗାଡ଼ କଲା ଏକ ଟିଣର ସୁଟ୍‌କେଶ । ସେଟା ବି ଗଲା ନଦୀର ଗହ୍ବରକୁ । ସେଟା ଭିତରେ ମୋକଦ୍ଦମାର ନଥି, ପରଚା ଦଲିଲ, କେତେ କଣ ନକଲ ।

କୌଣସି ପ୍ରକାର ମନ ପାଇପାରୁ ନାଇଁ ନାସିମ । ପାରିବୁ, ପାରିବୁ, ଆସ୍ତେ ଆସ୍ତେ ପାରିବୁ । କାପ୍ତାନର ଚାହାଣୀଟା ତାକୁ ଯେମିତି କହିଯାଏ କାନେ କାନେ । ତା ଅକ୍ଷମତା ପାଇଁ କାପ୍ତାନ ଖଗିଲେ ମଧ୍ୟ ହଠାତ୍ ମାରେନା, ଏଇଥିରୁ ନାସିମ ଉତ୍ସାହ ପାଏ ଅନେକ ।

କୋଂପାନୀର ଆଲୁଆରେ ତେଜ ନାଇଁ, ବର୍ଷା ହେଲେ ତେରପାଲ ନାଇଁ, ସ୍ତ୍ରୀ-ପୁରୁଷଙ୍କ ଅଲଗା ବଖରା ନାଇଁ, ତଥାପି ସମସ୍ତଙ୍କ ଆଖିରେ ନିଦ ଅଛି । ଏପରି ଜଣେ ଭଦ୍ରଯାତ୍ରୀ ନାଇଁ ଯିଏ କି ତାସ ଖେଳିବ, ଗୀତ ଗାଇବ କି ଖୁସ୍ ଗଳ୍ପ କରିବ । ଚଷାଭୁଖାଙ୍କ ଲାଇନ୍ । ବର୍ଚ୍ଛି ସୁଅ ପରି ଯେଉଁମାନେ ଖଟନ୍ତି, ତଳେ ମାଂସ-ପିଣ୍ଡ ହୋଇ ଯେଉଁମାନେ ଶୋଇଯାନ୍ତି ।

ନିଦ୍ରାର ଅଗୋଚରରେ ଟ୍ରଂକ୍‌ରୁ କାହାର ବାହାରି ଆସିଚି ଟଂକାଥଳୀ । ନାର୍ସିମ ହାତ ସଫେଇ କରି ସେଟାକୁ ଉଠାଇନିଏ । ଭବେ ଗଣି ଦେଖେ କେତେ ଅଛି । ଭବେ ପଳାଇ ଯିବି ପର ଇଷ୍ଟିସେନକୁ । କିନ୍ତୁ ଜାଣେନା କି ଅଦମ୍ୟ ଆକର୍ଷଣରେ କାପ୍ତାନ କତିକି ସେଟାକୁ ନେଇ ଆସେ । ପ୍ରାୟ ମନ୍ତ୍ରମୁଗ୍ଧ ପରି । ବାଘ ମୁହଁରେ ଗୋରୁ ପରି । ଯିଏ ଖାଲି ମାଡ ମାରେ, ଯିଏ ହସି କରି ପଦେ କଥା କୁହେନା, ନ୍ୟାଯ୍ୟ ଅଧିକାରର କଣାକଉଡ଼ି ବି ଯିଏ ଦିଏ ନାଇଁ ତାକୁଇ ଖୁସି କରିବାକୁ ଆଗ୍ରହ ହୁଏ । ଯିଏ ଅନବରତ ଚୁଗୁଲି ଶୁଣେ, ଜଣଙ୍କଠୁ ଅନ୍ୟକୁ ଅଲଗା କରି ରଖେ ତାରି ମନ ପାଇବାକୁ ଛଡ଼ାଛଡ଼ି ଧୁମ ପଡ଼ିଯାଏ । କିଏ କାହାକୁ ହଟେଇ ଦେବ ଗ୍ଭଲେ ତାର ଟକ୍‌କାଟକି ।

'ମୋଟେ ସାତ ଟଂକା ସାଢ଼େ ନ ଅଣା ।' କହେ ମୁଜବୁଲ; 'ଏଥିରେ କଣ ହେବ । ଦିକୋଡ଼ି ସାତ ନ ହେଲା ପର୍ଯ୍ୟନ୍ତ କଣ ଖେଳ ପୂରା ହେବ' କହେ ଆମର କାପ୍ତାନ ସାହେବ ।'

ତଥାପି ଲୁଗାପଟା ଅପେକ୍ଷା ନଗଦ୍ ଟଂକା ଭଲ । ସବୁଠୁ ଭଲ ଯଦି ହୁଏ କିଛି ଜେଓର, ସୁନା, ରୂପା । ଦାମ କେତେ ଆଜିକାଲି । କଗଜର ଟଂକା ତା ପାଖେ ରଦ୍ଦି, ବେକାର ।

ଖଣ୍ଡେ ନୂଆ ଲୁଙ୍ଗି ଦେଇଛି ଏତେଦିନକେ । ଏଥର ଗୋଟାଏ ହାଫ୍-ସାର୍ଟ ।

କିନ୍ତୁ ଗହଣା କାହିଁ ଚଷା ବୋହୂ-ଝିଆରୀଙ୍କର ? ବଡ଼ ଜୋର୍ ନାକରେ ନୁଡ଼ୁକ-ଫାସିଆ, ହାତରେ କାଚର ଚୁଡ଼ି । ସୁନା ଦାନା ନାଇଁ କେଉଁଠି ।

ନା, ଅଛି । ନୂତନ ବୋହୂ ଯାଉଚି ଶଶୁର ଘର । ଗଳାରେ ସୁନା ହାର, ହାତରେ ବଟଫଳ । ପାଦରେ ରୂପାର ପାହୁଡ଼, ଆଂଗୁଠିରେ ଖୁଦ୍ଦରୀ । ଭଇଁଚ କୋଳ୍ହି ରଂଗର ଶାଢ଼ୀ ପିଂଧି ଓଢ଼ଣା ଟାଣି ଶୋଇଚି ଏକ ପାଖରେ । ବରଯାତ୍ରୀମାନେ ଏଠି

ସେଠି ଛିଟିକି ପଡ଼ିଛନ୍ତି । କିଏ କେଉଁଠି ଚିହ୍ନିବାର ଉପାୟ ନାହିଁ । କାହାକରେ ଆଜି ବେଢ଼ାୟ ଭିଡ଼ । ତଥାପି ଯାରି ଭିତରେ ଫାଂକ ଖୋଜୁଚି ନାସିମ ।

ନୂତନ ବୋହୂର ଗଳା ପାଖରେ ନାସିମ ହାତ ରଖିଲା, ନରମ ତା ବେକଚକଟା । ଅଂଗୁଠି କଂପିଲା ନାହିଁ ନାସିମର । ଏକା ଝାଂକରେ ଛିଣ୍ଡାଇ ଆଣିଲା ହାରଟାକୁ ।

'ଚୋର ! ଚୋର !' ଭିଡ଼ଠେଲି ଅନ୍ଧ କେତେ ପାବ ଯାଇଚି କି ନାହିଁ ଧରି ପକାଇଲେ ନାସିମକୁ ଯାତ୍ରୀମାନେ । ତା'ପରେ ସମସ୍ତେ ମିଶି ତାକୁ ନିଷ୍ଠୁକ ମାଡ଼ ଚଢ଼ାଇଲେ । ପ୍ରଚଣ୍ଡ ମାଡ଼ । ଯିଏ ଆସି ପଚାରୁଚି କଣ ହୋଇଚି ସେ ବି ପରକ୍ଷଣରେ ମାଡ଼ ଚଢ଼ାଉଛି । ମାଇଟା ନେଇ ପାରିନାହିଁ ଚୋର, ବୋହୂର ବିଛଣା ତଳେ ପକାଇ ଦେଇ ଆସିଚି । ସେଥିରେ କଣ ଅଛି । ଝିଅପିଲା ଦିହରେ ହାତ ଦେଇଚି ତ ! ହାର ତ ଛିଣ୍ଡେଇ ନେଇଛି ଗଳାରୁ । ମାର, ମାର, ବେଦମ ମାର ।

'ବାବାଗୋ'—ନାସିମ ଚିତ୍କାର କରି ଉଠିଲା ।

ଆଚକାନ ଦିହରେ କିସ୍ତି ଟୋପି ମଥାରେ, ଚଟି ପାଦରେ କାପ୍ତାନ ଆସି ହାଜର । କହେ, 'କଣ ହୋଇଚି ? କାହିଁକି ମାରୁଚ ମୋ ପୁଅକୁ ?' ପୁଅ ! ସମସ୍ତେ ସ୍ତବ୍ଧ ହୋଇଗଲେ । କାପ୍ତାନ ସାହେବର ପୁଅ । କିଏ ଜଣେ କହିଲା 'ଯେ ଆପଣଙ୍କର ଚାକର ଥିଲା ତ ଜାଣିଥିଲୁ ।'

'ଚାକର ! ମିଛ କଥା, ଇଏ ମୋର ବାହା ସ୍ତୀର ପୁଅ । ମୋର ମା'ହଗ ସଂତାନ । ଯାକୁ ମାରେ କିଏ ?'

"ଯେ ଗହଣା ଚୋରି କରିଚି ନୂତନ ଦୁଲହିନ୍‌ର । ଗଳାରୁ ଛିଣ୍ଡାଇ ଦେଇଚି ହାର ।'

'ମିଛ କଥା । ଯା ହୋଇ ପାରେନା । ଚାଲ ମୁଁ ନିଜେ ପଚାରି ବୁଝିବି ବିବିଠୁ ।'

କାପ୍ତାନ ଆଗେଇ ଆସିଲା ନୂତନ ବୋହୂର ନଜଦିଗକୁ । ପଚାରିଲା, "ଆପଣଙ୍କ ଗଳାରୁ ହାର ଛିଣ୍ଡେଇ ନେଇଛି କିଏ ?"

ପରଦା ତଳୁ ବିବି ଧୀର ସ୍ୱରରେ କହିଲା, ନା, ନିଜ ବେହୋସରେ ବେକରୁ ଖସି ପଡ଼ିଥିଲା ବିଛଣାରେ ।'

ଲତାବାଡ଼ି ଇସ୍‌ଟେସନ ଦେଖାଯାଉଚି ନିକଟରେ । ବର ପାର୍ଟି ଓହ୍ଲାଇଯିବେ ଏଇଠି । ଜାହାଜ ଧୀର ହୋଇଗଲା । ନଂଗର ପଡ଼ିଲା ହଡ଼୍‌-ହଡ଼୍‌ କରି ।

ଦୌଡ଼ି ବନ୍ଧାହେଲା ଗଛ ସଙ୍ଗରେ ।

'ସିଡ଼ି ଦେ । ସିଡ଼ି ଦେ' । ଉପରୁ ପାଟି କରି ଉଠିଲା କାପ୍ତାନ; 'ନାସିମ କାହିଁ ? ନାସିମ୍‌କୁ ଡାକ । ସେ ଆଜି ସିଡ଼ି ଧରିବ ।'

ଖଲାସୀମାନଙ୍କ ଭିତରେ ହାଲେଳ ପଡ଼ିଗଲା । ନାସିସର ଦୀକ୍ଷା ହେଲା ଏତେଦିନକେ ଏତେ କମ ଦିନରେ । ଗ୍ରେରି କରିବାକୁ ଯାଇ ଧରା ପଡ଼ି କପାଳ ଖୋଲିଗଲା ତାର । ଆଉ ଯେଉଁମାନେ ଧରା ପଡ଼ି ନାହାନ୍ତି ସେମାନେ ଏଠି ଦହଗଞ୍ଜ ସହୁଚନ୍ତି । ସିଡ଼ିରୁ ପାଟାତନକୁ ପ୍ରମୋଶନ ପାଉ ନାହାନ୍ତି । ଆଉ ଯେ ଆଜି ସିଡ଼ି, କାଲି ପାଟାତନ, ପଅରିଦିନ ଶୁଖାନି, ପରେ ଏକାବେଳେକେ ଜାହାଜର କାପ୍ତାନ, ଜାହାଜ ନାଖୋଦା ।

'ଧର, ଧର, ଯେ ପିଲାଲୋକ, ଏକେଲା ପାରିବ କିମିତି ? ତମେ ସମସ୍ତେ ମିଶି ଯାକୁ ସାହାଯ୍ୟ କର ।' ଉପର ଡେକ୍‌ରୁ କଡ଼ା ଗଳାରେ ହୁକୁମ ହାଙ୍କେ କାପ୍ତାନ ।

ସର୍ଚ ଲାଇଟ୍‌ର ଆଲୁଅରେ ନାସିମର ଲୁହଭରା ଆଖି ଦଇଟି ଚକଚକ କରିଉଠେ ।

ନୂତନ ବୋହୂ ଓହ୍ଲାଇଯିବ ଲତାବାଡିରେ । ପାଦରେ ଝୁଂଟିଆ ବଜାଇ ଆସୁଚି ।

ଆଲୁଅ ପଡ଼ିଚି ଅନେକ ଦୂର । ଗଛପତ୍ର ମଥାରେ । ସିଡ଼ି ଦେଇ ଲଗି ଧରିଚି ନାସିମ । ଦୁଲହିନକୁ କହୁଚି, 'ଲଗି ଧରନ୍ତୁ, ନୋହିଲେ ପଡ଼ିଯିବେ ।'

'ନା' ! ଲଗି ନ ଧରି ଚାଲିବାକୁ ଲାଗିଲା ନୂତନ ବୋହୂ ।

ପଛରୁ କିଏ ଧକ୍‌କା ମାରିଲା ନାସିସକୁ । ଚମକି ଅନାଇ ଦେଖେ, ସେଇ ଲୋକଟା, ଭିଡ଼ ଭିତରେ ଯିଏ ସବୁଠୁ ତାକୁ ବେଶୀ ବାଡ଼େଇଛି । ଆଲୁଅରେ ଚିହ୍ନିଲା ତାକୁ ଏତେବେଳେକେ । ଗହଗଲି ।

ଆଲୁଅରୁ ମୁହଁ କାଢ଼ି ନେଉଛି ଗୋଲବାନୁ । ଘନ କରି ଓଢ଼ଣା ଟାଣି ଦେଇଛି । ଦିହରେ ଥିବା ଗ୍ଦଦରଟାକୁ ବୋରଖା ପରି ଦିହରେ ଘୋଡ଼ାଇ ଦେଇଛି । ଘାଟରେ ବହୁ ଅଜଣା ପୁରୁଷଙ୍କ ଯିବା ଆସିବା ।

ଧରଧରି କରି ସେତି ଉଠାଇବାକୁ ଲଗଲ ନାସିମ । ଘାଟର ଗୋଳଆ ଜଳର ଛାୟାରେ ଦେଖିବାକୁ ଲଗଲ ମାର ମଲା ମୁହଁ । ତା ଉପରେ ଛିଡ଼ା ହୋଇ କାପ୍ତାନ ଚଢ଼ା ସ୍ୱରରେ ତାକୁ ବାହାବା ଦେଉଚି । ଉଡ଼ୁଚି ତାର ଧଳା ଆଚକାନ, ଉଡ଼ୁଚି ସାଦା ଦାଢ଼ୀ । ଦିନଗତି କରେ ଯେଉଁ ସୂର୍ଯ୍ୟ, ଯେମିତି ତାରି ପରି ।

# ଅନ୍ନଦାଶଙ୍କର ରାୟ

# ରାଣୀ ପସନ୍ଦ

ଲଂଚ୍ ମିଳିଲା ଅନେକ ଦିନ ଅପେକ୍ଷା କରିବା ପରେ । କେତୋଟି ପରିଦର୍ଶନର କାମ ବାକୀ ଥିଲା । ବର୍ଷ ପୂରିବା ଆଗରୁ ଇନସ୍‌ପେସନ୍ ଶେଷ ହେବା ଦରକାର । ଦୁଇପଟେ ନଦୀ ତୀରର ଦୃଶ୍ୟ, ସାମନାରେ ରଙ୍ଗାମାଟି ଅଞ୍ଚଳର ପାହାଡ଼ ଶ୍ରେଣୀ । କର୍ଣ୍ଣଫୁଲୀ ବୁକୁରେ ଲଂଚ୍ ଭସାଇ ଦେଲେ କେଜାଣୀ କେମିତି ରୋମାଂଟିକ୍ ଲାଗେ । ସଙ୍ଗରେ କାଗଜକଲମ ନେଇଥିଲି । ବହୁକାଳ ପରେ କବିତା ଲେଖିବି । ସହଯାତ୍ରୀ କହିଲେ ସାରେଂଗ୍ (କାପ୍ତାନ), ଶୁଖାନି ଓ ସେମାନଙ୍କ ଦଳବଳ ଏବଂ ମୋର ଚପରାଶି ଖାନସାମା । ସେମାନଙ୍କ ଉପରେ କଡ଼ା ହୁକୁମ ଥିଲା କେହି ଯିମିତି ମୋ ପାଖକୁ ନ ଆସେ ।

ଡେକ୍ ଚେୟାରରେ ବସି ନଂଗର ଉଠା ଦେଖୁଚି, ଅସ୍ତବ୍ୟସ୍ତ ହୋଇ ଛୁଟି ଆସିଲେ ଦାରୋଗା ସାହେବ । ହାତରେ ଖଣ୍ଡେ ଚିଠି । କି ବ୍ୟାପାର ! ପୁଣି କେଉଁଠ କଣ ଅଟକିଲା ! ମୋତେ କଣ ଏମାନେ ଷ୍ଟେସନ ଛାଡ଼ିବାକୁ ଦେବେ ନାହିଁ ! ଚିଠି ଖଣ୍ଡକ ଖୋଲି ଦେଖାଗଲା ତା ନୁହେଁ । କଲିକତାରୁ ଜଣେ ଉଚ୍ଚପଦସ୍ଥ ପୁଲିଶ୍ କର୍ମଚାରୀ ଆସିଛନ୍ତି । ସେ ବି ଯିବେ ରାଉଜାନ୍ । ସେ ଯଦି ମୋ ସଙ୍ଗରେ ଯାଆନ୍ତି ତେବେ ମୋର କଣ ଖୁବ୍ ବେଶୀ ଅସୁବିଧା ହେବ ? ନୋହିଲେ ତାଙ୍କୁ ଦିନେ ଚଟ୍ଟଗ୍ରାମରେ ବସି ରହିବାକୁ ପଡ଼ିବ । ପୁଲିଶ୍ ଲଂଚ୍ କାଲି ଫେରିବାର କଥା ଅଛି ।

ଅସୁବିଧା ତ ହେବ । କିଂତୁ ସେ କଥା କଣ ଲେଖନୀ ମୁନରେ ପ୍ରକାଶ କରାଯାଏ ! ହୋଇଗଲା ମୋର କବିତା ଲେଖା ! ମନେ ମନେ ବିରକ୍ତ ହେଲି ଆଉ ଦାନ୍ତେ ହସ ହସି କହିଲି, 'ସେ ତ ମୋର ପରମ ସୌଭାଗ୍ୟ ।'' ଦାରୋଗା ସାହେବ ଏକ ଗୋଇଠିରେ ଅନ୍ୟ ଗୋଇଠି ବାଡ଼େଇ ଲମ୍ବା-ଚୌଡ଼ା ସଲାମ କଲେ । ମୁଁ ମୋର ଶୋଇ ଭାବିବାରେ ଲାଗିଲି, ଆପତ୍ତି କରିଥିଲେ ଏମିତି କଣ ଅଭଦ୍ରତା ହୋଇଥାନ୍ତା ! ଏମିତି କଣ ଜରୁରୀ କାମ ଯେ ଲଂଚ୍ ପାଇଁ ଅପେକ୍ଷା କଲେ ଅପୂରଣୀୟ କ୍ଷତି ହେବ !

ଶିକ୍ଷାଗୁରରେ ଖାଁ ବାହାଦୁରଙ୍କ ତୁଳନା ନାଇଁ । ସେ କେଉଁ ଭାବରେ ଯେ ମୋତେ କୃତଜ୍ଞତା ଜଣାଇବେ ବଂଗଳା ଭାଷାରେ ଶବ୍ଦ ଖୋଜି ପାଇଲେ ନାଇଁ । ଇଂରାଜୀ ଓ ଉର୍ଦ୍ଦୁର ଆଶ୍ରୟ ନେଲେ । ପଂଜାବୀ ମୁସଲମାନ । ବୟସରେ ଅନେକ ବଡ଼ । ଦାଢ଼ୀନିଶ ରଖନ୍ତି ନାଇଁ ବୋଲି କିଛିଟା କମବୟସୀ ପରି ଜଣାଯାନ୍ତି । ହସ-ଖୁସି, ଦିଲଦରିଆ ମିଂଜାସର ଲୋକ । ଇତି ମଧ୍ୟରେ ଖବର ନେଇ ଜାଣିଛନ୍ତି ଯେ ମୁଁ ଜଣେ ସାହିତ୍ୟିକ । କହିଲେ, "ଆପଣଙ୍କ ସଙ୍ଗେ ଆଳାପ କରିବାକୁ ମୋର ବହୁ ଦିନରୁ ଇଚ୍ଛା ଥିଲା । ସେ ଆଳାପ ଯେ ଏଇ ଭାବରେ ହେବ ତା କିଏ ଜାଣିଥିଲା ! ସତରେ ମୋର ଆଦୌ ଇଚ୍ଛା ନଥିଲା ଆପଣଙ୍କ ନିର୍ଜନତା ଭଙ୍ଗ କରିବା ପାଇଁ । ମୁଁ ତ ଦିନେ ଅପେକ୍ଷା କରିବାକୁ ଚାହିଁଥିଲି । କିନ୍ତୁ ଏସ.ପି ମୋତେ ଠେଲି ପଠାଇ ଦେଲେ ଆପଣଙ୍କ ସଙ୍ଗେ ଲଂଚ୍‌ରେ ଯିବାକୁ । ଶୁଣିଛନ୍ତି ବୋଧହୁଏ ଖବରଟା ?

ମୁଁ ଟିକିଏ ଆଶ୍ଚର୍ଯ ହୋଇ କହିଲି, "କାହିଁ, ନା ତ ! କେଉଁ ଖବର ?"

"ଖୁବ୍ ଖରାପ ଖବର ।" ଭଦ୍ରଲୋକ ମୋ କାନ ପାଖକୁ ମୁହଁ ଲଗାଇ କହିଲେ, ତା ନହେଲେ ମହାଶୟ, ଟ୍ରଙ୍କ୍ କଲ୍ ପାଇ ସୋଜା କଲିକତାରୁ ଛୁଟି ଆସନ୍ତି ! ଆରେ ଛି ଛି । ଶେମଫୁଲ । ଶେମଫୁଲ ।

ମୁଁ ରୀତିମତ ଉତ୍ସୁକ ହୋଇ ଉଠିଥିଲି । କିନ୍ତୁ ଜାଣିଥିଲି ଖାନ ବାହାଦୁର ନିଜ ଆଡ଼ୁ ସବୁ କହିବେ । ବାହାନା କଲି ଯେମିତି ପରର ବ୍ୟାପାରରେ ମୋର କିଛି ମାତ୍ର ରୁଚି ନାଇଁ ।

"ଆପଣମାନେ ସାହିତ୍ୟିକ, ଆପଣମାନେ କଥା କଥାକେ କହନ୍ତି, ସତ୍ୟ ଶିବ ସୁନ୍ଦର । କିନ୍ତୁ ମୋର ଏଇ ପଇଁଚାଳିଶ ବର୍ଷ ବୟସର ଅଭିଜ୍ଞତା କହେ, ଯାହା ସତ୍ୟ ତାହା ସୁନ୍ଦର ନୁହଁ । ମୁଁ ଯଦି କେବେ କିତାବ୍ ଲେଖେ କଣ ଲେଖିବି ଶୁଣିବେ ? ଲେଖିବି "ସୁନ୍ଦର ଝିଅମାନେ ପ୍ରାୟଇ ମନ୍ଦ ହୁଅନ୍ତି । ମନ୍ଦ ଝିଅମାନେ ପ୍ରାୟଇ ସୁନ୍ଦର ହୁଅନ୍ତି ।" ଏହା କହି ଖାଁ ବାହାଦୁର ହୋ ହୋ କରି ହସି ଉଠିଲେ ।

ହସିଲି ମୁଁ ମଧ୍ୟ । କିନ୍ତୁ ସଙ୍ଗେ ସଙ୍ଗେ ଏ କଥା ବି କହିଲି, "ଆମ ବଂଗଳା ଦେଶରେ ନୁହେଁ କିନ୍ତୁ ।"

ଭଦ୍ରଲୋକ ବ୍ୟଙ୍ଗ କରି କହିଲେ, "ନା, ବଙ୍ଗଳା ଦେଶରେ ନୁହେଁ ! ବଙ୍ଗଳା

ଦେଶରେ କାମ କରି କରି ବାଳ ପାଚିଗଲା, ଦାଦା* ! ଆଉ ଏଇ ଯେ ରାଉଜାନ ଯାଉଛି—"

"ରାଉଜାନ ?"

'ରାଉଜାନ ଯାଉଛି, ଏହା କଣ ବଙ୍ଗ ଦେଶର ବାହାରେ ? "

ଆଳାପ ଦେଖୁ ଦେଖୁ ଜମି ଉଠିଲା । ମୁଁ ମୋର ଖାନସାମାକୁ ଡାକି ପଠାଇବାରୁ ସେ କହି ଉଠିଲେ, "ଆରେ ନା, ନା ଦାଦା । ଆପଣ ମୋର ମେହମାନ ।"

କିମିତି ମୁଁ ତାଙ୍କର ମେହମାନ ହେଲି ? ଲଂଚ୍ ତ କହିବାକୁ ଗଲେ ମୋର । କିନ୍ତୁ କିଏ ଶୁଣେ ମୋ' କଥା ? ଉପର ବେଳାର ଚା'ର ଅର୍ଡ଼ର ସେ ଦେଲେ । ଲଂଚ୍ ସେତେବେଳେ ସଦର ଘାଟ ଛାଡ଼ି ଦେଇଛି ।

ପାଖକୁ ପାଖ ଦୁଇ ଖଣ୍ଡ ଡ଼େକ୍‌ଚେୟାର ପକାଇ ପାହାଡ଼ ଆଡକୁ ମୁହଁ କରି ଲଗାଲଗି ହୋଇ ବସିଲୁ । ଖାଁ ବାହାଦୁର କହି ଚାଲିଲେ, "ଯେ ସେ ଲୋକ ନୁହେଁ, ଦାଦା ! ଗୋଟାଏ ସାର୍କେଲର ଇନସ୍‌ପେକ୍ଟର । ଏକଦା ମୁଁ ତାର ଏସ.ପି ଥିଲି । ତା କାମ ଦେଖି ତାରିଫ୍ କରିଛି । ମୁଣ୍ଡ ପାଗଳା ନୁହେଁ, କବି ନୁହେଁ——ମାଫ୍ କରିବେ ବେୟାଦବି । ସଚ୍ଚରିତ୍ର ବୋଲି ସୁନାମ ଥିଲା ଯାର । ଏଭଳି ମଣିଷ କିନା ଚାକିରିର ମାୟା କଟାଇ ପିଲାଛୁଆଙ୍କ ମୁହଁକୁ ନ ଅନାଇ——ବିବି ନାଇଁ, ନଇଲେ ଆପ୍‌ଶୋଷର ବାତ୍ ହୁଅନ୍ତା——ଏପରି ମଣିଷ କିନା ହଠାତ୍ କୁଆଡ଼େ ଅର୍ନ୍ତଧାନ ହେଲା ।"

"ଅର୍ନ୍ତଧାନ ହେଲା ?" ମୁଁ ଚମକି ଉଠିଲି ।

"ଆଉ କହିବେ ନାଇଁ ସେ ଲଜ୍ଜାର କଥା ।" ଖାଁ ବାହାଦୁର ରେଶମୀ ରୁମାଲ ନେଇ ମୁହଁ ପୋଛିଲେ, ଆଖି ପୋଛିଲେ । "ଯାଇଥିଲା ଖୁଣୀ ମାମଲାର ତଦନ୍ତ କରିବାକୁ । ବର୍ମୀ ଝିଅ ମହାଶୟ । ଶୟତାନ କୀ ଲଡ଼କୀ । ତମେ ତ ବାବା ବଙ୍ଗାଳୀ ମୁସଲମାନ, ତମ ବରାତରେ ସହିବ କାହିଁକି ? ବାହା ହୋଇ ଆଣିଥିଲା ରେଙ୍ଗୁନ୍‌ରୁ । ଯେଉଁ ଲୋକଟା ଖୁଣ ହୋଇଚି ତାରି କଥା କହୁଚି । ଏମିତି ରୂପସୀ କୁଆଡ଼େ ବର୍ମାରେ ବି ନାଇଁ । ସଉତୁଣୀ ଅଛି ଦେଖି ଏମିତି ଖସ୍‌ମ୍‌ର ଗଳାରେ ଛୁରି ଦେଇଛି ।

ମୁଁ ଉତ୍କର୍ଣ ହୋଇ ଶୁଣୁଥିଲି । 'କାଇଁ, ଏ ମାମଲାର ଖବରତ ମୁଁ ପାଇ ନାଇଁ ।'

---

ଦାଦା = ବଡ଼ଭାଇ

"ହଁ ଯା କହୁଥିଲି । ଯାଇଥିଲା ତଦନ୍ତ କରିବାକୁ । ଦାରୋଗାଇ କରୁଥିଲା ତଦନ୍ତ । ତେବେ ଝିଅଟା ବଂଗଲା ବୁଝେନା ବୋଲି ଇନ୍‌ସପେକ୍ଟରକୁ ବି ଯିବାକୁ ହୋଇଥିଲା । ଏଇ ତଦନ୍ତ ହିଁ ଯାର କାଳ ହେଲା । ଏକଦିନ, ଦିଦିନ ଗଲା, ତଦନ୍ତ ଆଉ ସରେ ନାଇଁ । ଶେଷରେ ଦେଖାଗଲା ଆସାମୀ ନାଇଁ, ଅଫିସର ବି ନାଇଁ । ହୋ-ହୋ । ହା-ହା ।"

ହସ କଥା ନୁହେଁ । ନାରୀହରଣ ମାମଲାରେ ମୁଁ କେବେ କାହାକୁ ଛାଡ଼ି ନାଇଁ । ମୁଁ ବେଶ୍ ଟିକିଏ ଉଷ୍ମ ହୋଇ କହିଲି, "ଏତେ ଦିନ ଆପଣମାନେ କରୁଛନ୍ତି କଣ ? କାହିଁକି ଯାକୁ ଗିରଫଦାର କରା ହୋଇନି ? ଏହା ଖାଲି ଡ଼ିପାର୍ଟମେଣ୍ଟର ବ୍ୟାପାର ନୁହେଁ । କୋର୍ଟର ବ୍ୟାପାର ମଧ୍ୟ ।"

ଖାଁ ବାହାଦୁର ଟିକିଏ କଠିନ ହୋଇ କହିଲେ, "କୋର୍ଟର ବ୍ୟାପାର କି ନୁହେଁ, ସେଇଟାହିଁ ତ ପ୍ରଶ୍ନ । ଝିଅଟି ବିଧବା, ଫୁସ୍‌ଲେଇ ନେଇଚି ବୋଲି ଅଭିଯୋଗ ତିଷ୍ଠିବ ନାଇ । ଝିଅଟାର ବୟସ ହୋଇଚି, ତେଣୁ ହରଣର ଅଭିଯୋଗ ଖାଟିବ ନାଇଁ । କେଉଁ ଧାରାରେ ଆପଣ ଯାକୁ ଅପରାଧୀ କରିବେ ଶୁଣେ ।"

ମୁଁ ନିରୁତ୍ତର । ବଂକା ହସ ହସି କହିଲେ, ତା'ପରେ ଏମାନେ ଯଦି ବାହା ହୋଇଥାନ୍ତି ? ନା, ଦାଦା, ଏତେ ସହଜ ନୁହେଁ । ଚାକିରିରୁ ବରଖାସ୍ତ କରିବା ସମସ୍ତେ ପାରିବେ, କଲିକତା ପୁଲିଶ ଦପ୍ତରରୁ ସେ ବ୍ୟବସ୍ଥା ହେବ । କିନ୍ତୁ ମଡ଼ା ଉପରେ ଖଣ୍ଡା ଘେଟ ବସାଇବାକୁ ଆପଣଙ୍କ ହାତ ସଲସଲ କଲେ ମଧ୍ୟ ତା ଆଗରୁ ଆଇନଟାକୁ ଟିକିଏ ପଢ଼ିବାକୁ ହେବ ।

ସତ କଥା ବଡ଼ ମାଛଟାଏ ବଂଶୀଖାଡ଼ିରୁ ଖସିଗଲେ ଯେମିତି ଲାଗେ ସେଇ-ପରି କଷ୍ଟ ହେଲା ମୋର । ଖାଁ ବାହାଦୁର କିନ୍ତୁ ଯା ପାଇଁ ଦୁଃଖିତ ନୁହଁନ୍ତି । କହିଲେ, "ଶୁଣୁଚି, ଏମାନେ ପାର୍ବତ୍ୟ ଚଟ୍ଟଗ୍ରାମରେ ଲୁଚି ରହିଛନ୍ତି । ସେଠୁ ବର୍ମା ଚାଲିଯିବେ ଚାଲା ପଥରେ । ତାପରେ କେତେଦିନ ରୂପସୀର ଅନୁଗ୍ରହ ରହିବ କିଏ ଜାଣେ ? ଲୋକଟାକୁ ମାଙ୍କଡ଼ ନଚାଇ ଶେଷରେ ଦିନେ ଜବେ କରିବ କି ଲାଠି ମାରିବ ଖୋଦା ଜାଣନ୍ତି । ସୁନ୍ଦର ମୁହଁ ଦେଖିଲେଇ ମୁଁ ସଲାମ କରି ଦରକୁ ଚାଲିଯାଏ ।"

ଆଇନ ବହି ମୋ ପାଖରେ ନଥିଲା । ସେଥିପାଇଁ ଜୋର କରି କହିପାରୁ ନଥିଲି ଯେ ଆସାମୀକୁ ଯଦି କେହି ଫେରାର ହେବାରେ ସାହାଯ୍ୟ କରେ ତେବେ ଆଇନରେ ତାର ସଜା ଅଛି । ମନେ ମନେ ଅସ୍ୱସ୍ତିବୋଧ କରୁଥିଲି, ତା ଲକ୍ଷ୍ୟ କରି ଭଦ୍ରଲୋକ

କହିଲେ, "ଯାହା ଦିନକାଳ ପଡ଼ିଚି, ଆପଣ ହୁଏତ ଭାବୁଛନ୍ତି ମୁଁ ପୁଲିଶ୍ ବୋଲି ପୁଲିଶ ପାଇଁ ମୋର ଦରଦ, ମୁଁ ମୁସଲମାନ ବୋଲି ମୁସଲମାନ ପାଇଁ ମୋର ଦରଦ । ସତ କହୁଚି, ତା ନୁହେଁ । ମୁଁ ପୁରୁଷ ବୋଲି ହିଁ ମୋର ଦରଦ ପୁରୁଷ ପାଇଁ, ସ୍ତ୍ରୀ ଲୋକଟାଇ ନରହରଣ କରିଚି ।"

ଏକଥା ଶୁଣି ମୋ ଭିତରେ ଯେଉଁ ଫେମିନିଷ୍ଟ ଥିଲା ସେ ପ୍ରତିବାଦ ନକରି ରହିପାରିଲା ନାହିଁ । ସେ କହିଲା, "ଯାହା ଭିତରେ ବିନ୍ଦୁମାତ୍ର ସିଭ୍ୟାଲରୀ ଥିବ ସେ କଦାପି ନାରୀକୁ ଦୋଷ ଦେଇ ପାରେନା । ଦୋଷ ସବୁବେଳେ ପୁରୁଷର । ତେବେ କେତେକ କ୍ଷେତ୍ରରେ କାହାର ନୁହେ । ନିୟତିର ।

"ହଁ, ହଁ, । ଏ ବାତ୍ ଠିକ୍ । ନିୟତିର ।" ଖାଁ ବହାଦୁର ପ୍ରୀତ ହୋଇ କହିଲେ, "ଠିକ୍ ଏଇପରି ନିୟତିର ଖେଳ ଦେଖିଚି ମୋର ଜଣେ ବଂଧୁଙ୍କ ଜୀବନରେ । ବନ୍ଧୁଟି ହିନ୍ଦୁ । ଆପଣ ହୁଏତ ମନେ କରିବେ ଏ କି କଥା । ହିନ୍ଦୁ କେବେ ମୁସଲମାନର ବଂଧୁ ହେଲା ? କିନ୍ତୁ ଆଜିର ଏଇ ବିଶ୍ରୀ ଆବହାଓୟା କୋଡ଼ିଏ ବର୍ଷ ତଳେ ନଥିଲା । ମହାଯୁଦ୍ଧ ଶେଷ ହେବା ପରେ ପରେ ଆମେ ଦି'ଜଣ ଯେବେ ମିଲିଟାରୀରୁ ବାହାରି ପୁଲିଶ୍ ଚାକିରି ପାଉଁ, ସେତେବେଳେ କିଏ ହିନ୍ଦୁ, କିଏ ମୁସଲମାନ ! ଆହା ସେ ସବୁ ଦିନ କଣ ଆଉ ଫେରିବ ନାହିଁ ?

ତାଙ୍କ କଂଠରେ ଆଂତରିକତାର ସ୍ୱର । ସ୍ମୃତିର ସରଣି ଧରି ସେ କୋଡ଼ିଏ ବର୍ଷ ତଳକୁ ଓହ୍ଲାଇଗଲେ, ସେଠାରେ ସଂଚିତ ଥିଲା ପୁରାତନ ମଦିରା । ଅନ୍ୟମନସ୍କ ଭାବେ କହିଲେ, 'ଘଟଣାଟା କେତେକାଳର ପୁରୁଣା । ମୋର ବି ତ ମନେ ନଥିଲା । ହଠାତ୍ କେମିତି କରି ମନେ ପଡ଼ିଗଲା । ଏଇ ଯେ ବେଶ୍ ସ୍ପଷ୍ଟ ମନେ ପଡୁଚି । ଗୁହୁଁ ଗୁହୁଁ ଯାବଂ ଉଜ୍ଜଳ ହୋଇ ଉଠୁଚି ।"

ତାଂକ ଆଡ଼କୁ ଆଖି ଫେରାଇଲି । ସେ କଣ ସେଇ ମଣିଷ ନା ଆଉ କିଏ ? ଜଣେ ନବଯଓ୍ୱାନ ଅର୍ଦ୍ଧଶୟନ ହୋଇ ସ୍ୱପ୍ନ ଦେଖୁଚି । ହୁ-ହୁ କରି ଛୁଟି ଆସୁଚି ବତାସ । ବତାସ ଠେଲି ଛୁଟି ଚାଲିଛି ଲଂଚ । ପାଣି ଦି'ଭାଗ ହୋଇ-ଚିର -ଚିର ହୋଇ ଯାଉଛି କଟା ଲୁଗା ପରି । ଢେଉ ପଡ଼ି ରହୁଚି ପଛରେ । ଢେଉର ଦୋଳାରେ ନାଚୁଚି ଉଠୁଚି ପଛକୁ ଛୁଟି ଯାଉଥିବା ସାଂପାନ (ଛୋଟ ନୌକା) ।

ଖାନ ବାହାଦୁର କହିବାକୁ ଲାଗିଲେ ।

## 2

ମେହେରବାନ ସିଂ ରାଜପୁତ ବଂଶୀୟ । ମୋର ପୂର୍ବପୁରୁଷମାନେ ବି ରାଜପୁତ ଥିଲେ । ଯିଏ ଯାହା କହୁ, ରକ୍ତର ଟାଣ୍ ବୋଲି କିଛି ଗୋଟାଏ ଅଛି । ରାଜପୁତମାନଙ୍କ ସଙ୍ଗରେ ମୁଁ ଯେତେଟା ଆତ୍ମୀୟତାବୋଧ କରେ ଏ ଦେଶର ମୁସଲମାନଙ୍କ ସଙ୍ଗରେ ସେତେଟା ନୁହେଁ । ତା ବୋଲି ହିନ୍ଦୁଧର୍ମରେ ମୋର ବିଶ୍ୱାସ ନାହିଁ । ଧର୍ମ ବେଳକୁ ମୁଁ ଖାଁଟି ମୁସଲମାନ । ସେତେବେଳେ ଏଇ କାପ୍ତାନ, ଖୁଖାନି, ଖାନସାମା ମୋର ନିଜର ଲୋକ । ଆଉ ମେହେରବାନ ସିଂ ମୋର ଜଣେ ଦୋସ୍ତ ।

କିନ୍ତୁ ତା ପରିକା ଦୋସ୍ତ ମୋର ସେ ସମୟରେ କେହି ନଥିଲେ ।

ରୋଜ୍ ଆମର ଦେଖା ହେଉଥିଲା । ଆଉ ଦେଖା ହେଲେ ଘଂଟା ପରେ ଘଂଟା କଟି ଯାଉଥିଲା ଖୁସ୍ ଗଳ୍ପରେ ଆଉ ଦିବାସ୍ୱପ୍ନରେ । ଖେଳିବାର ସୌକ ଥିଲା ଦିଜଣଙ୍କର, ଆଉ ଶିକାରର ନିଶା ବି ଦିଜଣଙ୍କର ଥିଲା । ସେବକାର ଦିନେ ସିନେମା ନଥିଲା ଆଜିକାଲି ପରି । ଆମେ ଯେଉଁଠି ଚାକିରି କରୁଥିଲୁ ସେଠିକି ମଝିରେ ମଝିରେ ସିନେମା ଆସୁଥିଲା । କିଛି ଦିନ ପାଇଁ ସେ କେତୁଟା ଦିନ ଆମେ ଦିଜଣ ଯାକ ଏକା-ସଙ୍ଗରେ ସିନେମା ଯାଉଁ । ତାମାସା ଦେଖୁଁ । ଅନ୍ୟାନ୍ୟ ଅଫିସରଙ୍କ ପରି ଗାନ ଶୁଣିବାକୁ ବାଈଜୀର ଘରକୁ ଆମେ ଯାଉ ନଥିଲୁଁ । ଦୁଇଜଣଯାକ ଥିଲୁଁ ପ୍ୟୁରିଟାନ୍ କିସମର ଲୋକ । ଯାର ବାହାଘର କଥାବାର୍ତ୍ତା ଚାଲିଥିଲା, ମୋ ବିବି ସେତେବେଳେ ବାପଘରେ । ସେ ଗୁହେଁ ଶିକ୍ଷିତା ଝିଅ । ସେ ସମୟରେ ଝିଅମାନଙ୍କର ଲେଖାପଢାର ରେଓୟାଜ୍ ନ ଥିଲା ।

ତା'ପରେ ହେଲା କଣ ପଂଜାବର ସେଇ କାଂଟନମେଂଟ ସହରଟିରେ ଜଣେ ମିଲିଟାରୀ କଣ୍ଟ୍ରାକ୍ଟର ଥିଲା, ତାର ଅନେକ ଲକ୍ଷ ଟଂକା । ଆମେ ଯେତେବେଳେ ସେଠିକି ଯାଉଁ ସେ ଦେହତ୍ୟାଗ କରିଛି । ତା ସଂପତ୍ତିର ଅଧେ ପଡ଼ିଚି ତା ବଡ଼ ସ୍ତ୍ରୀ ହିସ୍‌ସାରେ, ଆଉ ଅଧେ ସାନ ସ୍ତ୍ରୀ ହିସ୍‌ସାରେ । ବଡ ବୋହୂ ଥାଏ ଠାକୁର ଦେବତା ନେଇ । ଆଉ ସାନ ବୋହୂ ଆମୋଦ-ପ୍ରମୋଦ ନେଇ । ଦିଜଣଙ୍କର କାହାର ହେଲେ ଛୁଆ ପିଲା ହୋଇ ନାହିଁ । ଯିଏ ଯାର ନିଜର ମହଲରେ ଥାଆନ୍ତି । ନିଜର ଦାସଦାସୀ, ନିଜର ଗାଡ଼ିଘୋଡ଼ା । ବିଲକୁଲ ଅଲଗା ବନ୍ଦୋବସ୍ତ । ଲୋକେ କହନ୍ତି ବଡ଼ ରାଣୀ, ସାନ ରାଣୀ, କାରଣ ସ୍ୱାମୀର ରାଜା ଖେତାବ୍ ଥିଲା ।

ଆମେ ଯେତେବେଳେ ସେଠିକି ଯାଉଁ ସମସ୍ତଙ୍କ ମୁହଁରେ ଶୁଣୁଁ ସୂରଯଭାନ୍ ପରି ସୁନ୍ଦରୀ କେହି କେଉଁଠି ଦେଖି ନାହିଁ । କିନ୍ତୁ ସୁନ୍ଦରୀ ହେଲେ କଣ ହେବ ତାର ଚାଲିଚଳନ ଭଲ ନୁହେଁ । ସେ ପର୍ଦ୍ଦା ମାନିବ ନାହିଁ । କ୍ଲବ୍‌କୁ ଯିବ । ସାହେବମାନଙ୍କ ସଙ୍ଗେ ନାଚିବ । ଷ୍ଟେସନର ସବୁ ଅଫିସରଙ୍କୁ ଡାକି ପାର୍ଟି ଦେବ । କେହି ତାକୁ ଖଣ୍ଡିଏ ଶାଢ଼ୀ ଦିଥର ପିନ୍ଧିବାର ଦେଖି ନାହିଁ । ସେ କୁଆଡ଼େ ଦୁଧ ସର ମାଖେ ଆଉ ଦୁଧରେ ଗୋସଲ୍ କରେ । ଆଉ ସେ ଦୁଧ କୁଆଡ଼େ ବଜାରରେ ବିକ୍ରି ହୁଏ ।

ଜୋର ଗୁଜବ ଯେ ସେ ଯାହାକୁ ଭଲ ନଜରରେ ଦେଖିବ ତାର ଆଉ କୌଣସି କାମନା ଅତୃପ୍ତ ରହିବ ନାହିଁ । ସେ ଯେ ହେଉ ନା କାହିଁକି । ତାର ବିଚାର ନାହିଁ, ସେ ଧନ ଚାହେଁନା, ଉପହାର ଚାହେଁନା । ଖାଲି ତାର ପସନ୍ଦ ହେଲେ ହେଲା । ପସନ୍ଦ କିନ୍ତୁ ସହଜରେ ହୁଏନା ।

ଜୟେନ କରିବାର ଦୁଇ ତିନି ସପ୍ତାହ ପରେ ମୋ ନାଆଁରେ ସୂରଯଭାନର ନିମନ୍ତ୍ରଣପତ୍ର ଆସେ । ଗାର୍ଡେନ ପାର୍ଟିର ନିମନ୍ତ୍ରଣ । ମେହେରବାନଙ୍କୁ ପଚାରି ବୁଝିଲି ତା ନାମରେ ବି ଆସିଚି । କିନ୍ତୁ ସେ ଯିବ ନାହିଁ । କାହିଁକି ଯିବ ନାହିଁ ? କାରଣ, ଏଭଳି ସ୍ତ୍ରୀଲୋକର ସଂଶ୍ରବ ରଖିବାକୁ ଚାହେଁନା ।

ମୁଁ ରସିକତା କରି କହିଲି, "ଏକ ଜାତିର ଆଂବ ଅଛି, ତା ନାମ ରାଣୀପସନ୍ଦ୍ । ତମର ଇଚ୍ଛା ହୁଏନା ରାଣୀପସନ୍ଦ୍ ହେବାକୁ ?

ମୁଁ ତ ଆମ୍ବ ନୁହେଁ । ମୋର ଆତ୍ମସମ୍ମାନ ଅଛି । ଚିରକାଳ ପସନ୍ଦ କରି ଆସିଚି ପୁରୁଷ । ପସନ୍ଦର ଅଧିକାର ପୁରୁଷର । ଏ କ୍ଷେତ୍ରରେ ତା ନୁହେ । ସୂରଯଭାନ ମୋତେ ତା ଆଖିରେ ବିଚାର କରିବ । ଆଉ ପୁଣି କଣନା ମୋତେ ପସନ୍ଦ କରିବ ।" କହୁ କହୁ ତା ରକ୍ତ ଗରମ ହୋଇ ଉଠେ ।

"କାହିଁକି, ସ୍ୱୟଂବର ତ ରାଜପୁତ୍‌ମାନଙ୍କ ପ୍ରଥା ?"

ହଁ, କିନ୍ତୁ ସ୍ୱୟଂବରରେ ଯିଏ ନାପସନ୍ଦ ହୁଅନ୍ତି, ସେମାନେ ଲଢ଼ାଇ କରି ଛଡ଼ାଇ ନିଅନ୍ତି ।.ତା'ଛଡ଼ା କାହା ସଙ୍ଗେ ତୁଳନା ! କେଉଁଠି କୁମାରୀର ସ୍ୱୟଂବର ଆଉ କେଉଁଠି ବିଳାସିନୀର ଲୀଳା-ମୃଗୟା !"

ମେହେରବାନଙ୍କୁ ଆଉ ସେ ବିଷୟ ନେଇ ଉତ୍ୟକ୍ତ କଲି ନାହିଁ । ମୁଁ ଏକାଇ ଗଲି । ସୁନ୍ଦରୀ ପରି ସୁନ୍ଦରୀ ସୂରଯଭାନ । କିମିତି ତା ରୂପର ବର୍ଣ୍ଣନା କରିବି ? ମୁଁ ଆପଣଙ୍କ ପରି କବି ନୁହେଁ । ଅନ୍ଧାର ରାତିରେ ଆତସବାଜି ଛାଡ଼ିଲେ ଯେମିତି ଆସ୍‌ମାନ ଉଜାଲା ହୁଏ, ନାନା ରଙ୍ଗର ତାରା ଫୁଟେ, କ୍ଷଣକାଳ ପାଇଁ ଭୁଲିଯାଉଁ

ଯେ ଯା ଦେଖୁଛୁଁ ତା ବାରୁଦ ଗନ୍ଧକ ଇତ୍ୟାଦିର ଖେଳ, ସେମିତି ବହୁ ଜନଙ୍କ ମେଳରେ ସୂରଯଭାନର ଉଦୟ । ପ୍ରତ୍ୟେକ ବେଶ୍ କିଛି ଆତ୍ମସଚେତନ ହୁଏ । ଆୟିନା ଥିଲେ ଆୟିନାରେ ମୁହଁ ଦେଖି ନିଏ । କିଏ ଜାଣେ ମୁହଁ ଖଣ୍ଡକ ଘଣୀପସନ୍ଦ୍ କିନା ।

ତାପରେ ଯେତେଥର ନିମନ୍ତ୍ରଣ ପାଇଚି ସେତେ ଥର ଯାଇଚି । ଘଣୀ ପସନ୍ଦ୍ ହେବାକୁ ନୁହେଁ । ଆତସବାଜି ଦେଖିବାକୁ । କିନ୍ତୁ ମୁସ୍କିଲ ହେଲା ମେହର-ବାନକୁ ନେଇ । ସେ ନା ପାରେ ଯାଇ, ନା ପାରେ ରହି, ନା ପାରେ ବଦଳି ହୋଇ ପଳାଇବାକୁ । ତାର ଗର୍ବ ତାକୁ ଯିବାକୁ ଦିଏ ନା ତାର କୌତୂହଳ ତାକୁ ରହିବାକୁ ଦିଏନା । ତାର କର୍ତବ୍ୟବୋଧ ତାକୁ ପଳାଇବାକୁ ଦିଏନା । ମୁଁ ବୁଝିପାରେ ସେ ଛଟପଟ କରୁଚି । ତାକୁ କହେ, "ତୁମେ ଛୁଟି ନେଇ ଘରକୁ ଚାଲିଯାଅ । ସାଦି କର ।"

ସେ ଚୁପ୍‌କରି ଶୁଣେ । ଉତ୍ତର ଦିଏନା ।

ଦିନେ ସୂରଯଭାନ ମୋତେ ପଚାରିଲା, "ଆଚ୍ଛା, ମେହେରବାନ ସିଂ ଆପଣଙ୍କର ବଂଧୁ ନା । ସେ କାହିଁକି ଆସନ୍ତି ନାଇଁ ? ଆପଣ ତାଙ୍କୁ ନେଇ ଆସି ପାରନ୍ତି ନାଇଁ ?"

ମୁଁ କୌଣସି ପ୍ରକାରେ କଥାଟାକୁ ଏଡ଼େଇ ଦିଏ । ସତ କଥା କହେଁ କିପରି ? ସର୍ବଦା ସତ୍ୟ କଥା କହ, ପାଠ୍ୟପୁସ୍ତକରେ ଶୋଭାପାଏ । କିନ୍ତୁ ଫେରିଯାଇ ମେହେରବାନକୁ ସବୁ କଥା କହିଲି । ସେ କିପରି ବିଗହଗ ବୋଧକଲା ! ଖୁସି ହେବ ନା ରାଗ କରିବ ନା କଣ କରିବ ବୁଝି ପାରିଲା ନାଇଁ । ମୋତେ ଛାଡ଼ି ବୁଲିବାକୁ ଚାଲିଗଲା ।

ପର ଥର ସୂରଯବାନ ପାର୍ଟିରେ ଦେଖେଁ ମେହେରବାନ ହାଜର । ମୁଁ ପରିଚୟ କରାଇ ଦେଲି । ଆଇନା କେଉଁଠି ପାଇବି ? ସୂରଯଭାନର ଆଖିହିଁ ତ ଆଇନା । ସେଇ ସୁନ୍ଦର କଳା ଆଖିରେ ମେହେରବାନ ଦେଖି ପାରିଲା ତାର ଅରକ୍ତ ମୁଖ । ଏକ-ଦୁଇ ସେକେଣ୍ଡ ମଧ୍ୟରେ କେତେ ବଡ ଗୋଟାଏ ଘଟନା ଘଟିଗଲା । କେହି ଟେର ପାଇଲା ନାଇଁ । ମୋ ଛଡ଼ା ।

ମେହେରବାନକୁ ମୁଁ ଚିଡ଼ାଇବାକୁ ଚାହିଁଥିଲି । କିନ୍ତୁ ସାହସ ହେଲା ନାଇଁ । ତାର ଚେହେରା ଦେଖି ପଛେଇ ଗଲି । ସେ କଳ ପରି କାମ କରିଯାଏ । ଡ଼ିଉଟି ବଜାଇ ଯାଏ ସମ୍ମାନ ସହ । ମୋ ସଙ୍ଗେ ମିଳାମିଶାର ବି ବିରାମ ନାଇଁ, ତଥାପି ଭିତରେ ବଦଳି ଯାଉଥାଏ । ନିଜ ଆଡ଼ୁ ମୋତେ କିଛି କହିଲେ ତ ଶୁଣିବି । ମୁଁ ଉପରେ ପଡ଼ି କିଛି କହେନା ।

ତାର ସର୍ବଶରୀର ଉନ୍ମୁଖ ହୋଇ ରହିଛି ଜଣଙ୍କ ପାଇଁ । ସମସ୍ତ ମନ ପଡ଼ିରହିଚି ତାରି ପାଖରେ ଅଥଚ ସ୍ୱୀକାର କରିବ ନାଇଁ । ମୁହଁରେ କହିବ ଅନ୍ୟ କଥା । କହେ, "ମୁଁ ସେଉଟାକୁ ଘୃଣା କରେ । ତାର ଅଙ୍ଗ ଦୂଷିତ, ତାର ସଙ୍ଗ ଦୂଷିତ । ସେଉଟା ଗୋଟାଏ ଗଣିକା ଛଡ଼ା ଆଉ କଣ ? ଟଂକା ନିଏନା ଏଇ ଯା ତଫାତ୍ । ମୋର ଯଦି ଖିଆଲ ହୁଏ ମୁଁ ସିଧା କେଉଁ ଏକ ଗଣିକା ପାଖକୁ ଯିବି । ସେଠି ମୋର ପସନ୍ଦ ଖାଟିବ । ମୁଁ ଦାମ ଦେଇ ଭୋଗ କରିବି । କେଉଁ ଦୁଃଖରେ ସୁରଯଭନର ଦ୍ୱାରସ୍ଥ ହେବି ? ତାହେଲେ ଯେ ସେ-ଇ ପସନ୍ଦ କରିବ । ସେଇ ଦାମ ଦେଇ ଭୋଗ କରିବ । ମୁଁ କଣ ଗଣାପସନ୍ଦ୍ ?"

ଏମିତି କେତେ ଲେକଚର ନା ମୋତେ ଶୁଣିବାକୁ ହୁଏ ଦିନ ପରେ ଦିନ । ତା ଭିତରେ ଗୋଟାଏ ଦ୍ୱନ୍ଦ୍ୱ ଚ଼ଲିଚି । ସେ କୌଣସି ମତେ ଶାନ୍ତି ପାଉ ନାଇଁ । ମୋ ପାଖରେ କବୁଲ କରିବ ନାଇଁ ଯେ ସେ ଆକୃଷ୍ଟ ହୋଇଚି । ମୁଁ ବୁଝେ ସବୁ କିନ୍ତୁ ଜାଣିବାକୁ ଦିଏନା ଯେ ମୁଁ ବୁଝେ । ମୁଁ କହେ, "କେହି ତମକୁ ଯିବାକୁ ବାଧ୍ୟ କରୁନି । ତୁମେ ନଗଲେ ଯେ କେହି କିଛି ମନେ କରିବ ତା ନୁହେଁ । ସୁରଯବାନ ଯେମିତି ସମସ୍ତଙ୍କୁ ନିମନ୍ତ୍ରଣ କରେ ସେମିତି ତମକୁ ବି କରେ । କାହାକୁ ତାର ପସନ୍ଦ କାହାକୁ ନୁହେଁ ତା କଣ ସିଏ ପ୍ରକାଶ୍ୟରେ ବିଜ୍ଞାପନ ଦିଏ ? ଏ ସବୁ ଇସାରରେ ଠିକ୍ ହୋଇଯାଏ । ଅନେକ ରତିରେ କେଉଁ ଏକ ସଙ୍କେତ ସ୍ଥଳରେ ତାର ଗାଡ଼ି ଆସି ଛିଡ଼ାହୁଏ । ଜଣେ କାହାକୁ ନେଇ ଅଦୃଶ୍ୟ ହୋଇଯାଏ । କେହି ଲକ୍ଷ୍ୟ କରେ କି ନା ସନ୍ଦେହ । ତା'ପରେ ଛାଡ଼ି ଦେଇଯାଏ ଆଉ ଏକ ଜାଗାରେ ।

"ପାଜି ମାଇକିନା ! ବଦମାସ୍ ମାଇକିନା !" ମେହେରବାନ ତାତି ଉଠି ଗାଳି ମଂନ୍ଦ ଦିଏ । "ଡାକୁ ମାଇକିନା ! ସୟତାନ ମାଇକିନା ! ଆଉ ଯା ଯା କହେ ତା ଅଶ୍ରାବ୍ୟ, ଅଶ୍ଳୀଳ ।

ମୁଁ ପ୍ରତିବାଦ କରେ, 'ତମର ତ କିଛି କ୍ଷେକସାନ କରିନି । ତୁମେ କାହିଁକି ଇତର ଭଷାରେ ଆକ୍ରମଣ କରୁଚ ? ଏଟା କି ପ୍ରକାର ସଭ୍ୟତା ?'

କେତେ ଦିନ ପରେ ମେହେରବାନ ଆସି କହିଲା, "ସେ ଦିନ କହୁଥିଲ ସବୁ ଠାରଠୁରରେ ଠିକ୍ ହୋଇଯାଏ, କଣ ସେ ଠାର ? ବଜାରେ ଖଣ୍ଡେ ଚଟି ବହି ମିଳୁଚି । ସେଥିରେ ଏକ ପ୍ରକାରର ଠାର ଅଚି ।"

ମୁଁ କହିଲି, "ତମର ସେଥିରେ କଣ ହେବ ? ତୁମେ ତ ଯାଉନା, ନା ଯିବ ?"

"ମୁଁ ଯିବି ସେ ଖାନ୍‌କୀଟା ଘରକୁ ? ଅସମ୍ଭବ । ମୋ ନାଁ ମେହେରବାନ ସିଂ । ଆମେ ହେଲୁ ଚୌହାନ ରାଜପୁତ । ଅବସ୍ଥା ବିପାକରେ ପୁଲିଶ୍ ଚାକିରି କରିବାକୁ ହେଉଚି । ତା ବୋଲି କଣ ମୋତେ ଅଧଃପତନ ବରଣ କରିନେବାକୁ ହେବ ? ଶେଷକୁ ତୁ ବି ମୋତେ ଭୁଲ ବୁଝିଲୁ ? ତୁ ତ ରଠୋର ବଂଶଧର !"

କଣ ଆଉ କରିବି ? ଚୁପ କରି ଶୁଣିଯାଏ । ଲୋକଟି ଦିନକୁ ଦିନ ବାଉଳା ହୋଇ ଯାଉଚି । ଯାହା କରିବାକୁ ତାର ପ୍ରାଣ ଚାହେଁ ତା କଲେ ତାର ମାନ ଯାଏ । ଆଉ କି ଦୁର୍ବାର ଆକର୍ଷଣ ଏଇ ସୁନ୍ଦରୀ ନାରୀର ! ଏଇ ମନ୍ଦ ନାରୀର ! ଯେ ଯାହାକୁ କାମନା କରିବ ତାକୁ ପାଇବଇ । ଚୁମ୍ବକ ପରି ଟାଣି ନେଇଯିବ ଲୁହାକୁ ।

ମୋର ବଗତ ଭଲ ମୋତେ ଚାହିଁନି । କିନ୍ତୁ ମେହେରବାନକୁ ଯେପରି ଟାଣୁଚି । ବଶୀକରଣ ବୋଲି ଗୋଟାଏ ବିଦ୍ୟା ଅଛି, ତା ତ ଆଗେ ବିଶ୍ବାସ କରୁ ନଥିଲି । କ୍ରମେ ପ୍ରତ୍ୟୟ ହେଲା । ମେହେରବାନ ମୋ ପାଖ ବସାରେ ରହେ । ଯାର ଗତିବିଧି ଉପରେ ଲକ୍ଷ୍ୟ ରଖିଲି । ରାତି ଦଶଟାରେ ବାହାରି ଯାଏ, ଶେଷ ରାତିରେ ଫେରେ । ଶୁଖିଲା ଶୁଖିଲା ଚେହେରା । ପାଗଳ ପରିକା ଚାହାଣୀ । କଥାବାର୍ତ୍ତାରେ ଡୋର ନାହିଁ । କଣ ଯେ ସବୁ କହେ ଲଗାମଛଡ଼ା କଥା । ବୁଝିପାରେ କେବଳ ଅଶ୍ଳୀଳ ଶବ୍ଦଗୁଡ଼ାକ । ବୋଝ ବୋଝ ଅଶ୍ଳୀଳ କଥା । ହିସାବ କରି ଦେଖେଁ ଦିନକୁ ଦିନ ବଢୁଚି ସେମାନଙ୍କ ସଂଖ୍ୟା ।

ଇଚ୍ଛା ହୁଏ ଯାର ଘରକୁ ଖବର ପଠାଇ ଗୁରୁଜନମାନଙ୍କୁ ଜଣାଏଁ । ଲାଇରେ ବେଶିଦୂର ଗଡ଼ାଇନି । ଯାହା ଘଟିବାର ତାହା ଘଟିନାହିଁ । ଏ ବଦ୍‌ଖିଆଲ ମିଟିଯିବ ଏକ ସୁନ୍ଦରୀ ଝିଅ ଦେଖି ବାହା କରିଦେଲେ । ତାପରେ ସିୟାଲକୋଟରୁ ବଦଳି ହୋଇ ଲାହୋର ବା ଅମୃତସର ଗଲେଇ ସୁରଯଭନ ଠିକ୍ ଆତସବାଜି ପରି ଲିଭିଯିବ । କିନ୍ତୁ ମେହେରବାନର ଗୁରୁଜନଙ୍କୁ ଖବର ଦେବାକୁ ମୋର ସାହସ ହୁଏନା । ଲାଏ ଯଦି ରାଗିଯାଏ । ମଣିଷଟା ଇମିତି ତ ବେଶ୍ ଥଣ୍ଡା ମିଂଜାସର । କିନ୍ତୁ ରାଗିଲେ କାଣ୍ଡଜ୍ଞାନ ଲୋପପାଏ ।

ଏହାପରେ ଯେଉଁଦିନ ସୁରଯଭନର ପାର୍ଟିକୁ ଯାଏ ମେହେରବାନ ବି ଯାଏ । ସେଦିନ ଠାରଠୁରରେ ସବୁ ଠିକ ହୋଇଯାଏ ।

କେତେ ଦିନ ପରେ ମୁଁ ପ୍ୟାରେଡ୍ ପାଇଁ ପୋଷାକ ପିନ୍ଧୁଛି ମେହେରବାନ ସିଂ ଆସି ହାଜର ! ତାର ଆଖି ଆଉ ମୁହଁରେ ଜୟର ଉଲ୍ଲାସ ! ତଥାପି ବିଷାଦର ଭଙ୍ଗୀ କରି କହିବାକୁ ଲଗିଲ, "ମୁଁ ମରିଗଲି ।"

ମୁଁ ଅନୁମାନ କରିନେଲି ଯାର ଅର୍ଥ କଣ ? ତା ହେବେବି ଘାବଡ଼ାଇ ଯାଇ କହିଲି, "କାହିଁକି, କଣ ହୋଇଛି ?"

"ମୁଁ ଗଣୀପସନ୍ଦ ହୋଇ ଯାଇଛି ।" ସେ କରୁଣ ସ୍ୱରରେ କହିଲ ।

"ହୁଁ", ମୁଁ ଗମ୍ଭୀର ସ୍ୱରରେ କହିଲି, "କାମଟା ଭଲ ହୋଇନି । ତାର ପ୍ରମାଣ ତୁମେ ପ୍ୟାରେଡ୍ ଫାଙ୍କି ଦେଉଛ । ଏମିତି ହେଲେ ଚାକିରି ରଖି ପାରିବ ନାହିଁ ।" "ମୁଁ ଅସହାୟ । ମୋର ନିୟତି ମୋତେ କେଉଁଠିକି ଟାଣି ନେଇ ଯାଉଚି । ତୁମେ ତ ମୋର ବନ୍ଧୁ, ତୁମେ ମୋତେ କିଛି ପରାମର୍ଶ ଦିଅ ।" "କଣ ପରାମର୍ଶ ଦେବି ?" ତା ପ୍ରତି ସମବେଦନାରେ ମୋ ଦିଲ୍ ଦରଦରେ ଫାଟି ଯାଉଥିଲ ।

"ମୁଁ ଦାମ ଦେବାକୁ ଚାହେଁ ।" ସେ ଥରି ଥରି କହିବାକୁ ଲଗିଲ । "ନ ଦେଲେ ମୁଁ ବାଂଦା ବନିଯିବି । ମୋର ଇଜ୍ଜତ ରହିବ ନାହିଁ ।"

ମୁ ଭାବି କହିଲି, "ଯାର କଣ ଅଭାବ ଯେ ଯେ ତମଠୁ ଟଙ୍କା ନେବ ? ଆଉ ଉପହାର ତୁମେ ପଂଚଶ ଟଙ୍କାର ଦେଲେ ସେ ପାଞ୍ଚ ହଜାର ଟଙ୍କାର ଦେବ ।"

"ମୁଁ ଲକ୍ଷ ଟଙ୍କାର ଦେବି ।"ସେ ତେଜରେ କହିଲ । "କିନ୍ତୁ କେଉଁଠୁ ପାଇବି ଲକ୍ଷେ ଟଙ୍କା ? କାହା ତୋଶରଖାନାରେ ଚଢ଼ାଉ କରିବି ? ଟ୍ରେଜେରୀ ଲୁଟ କଲେ କେମିତି ହେବ ?"

"ମୁଁ ତା କଥାବାର୍ତ୍ତା ଶୁଣି ଆତଙ୍କିତ ହୋଇ ଉଠିଲି । ସେଇ ଦିନହିଁ ତା ଘରକୁ ଚିଠି ଲେଖିଦେଲି, ଅବଶ୍ୟ ସହି ସମ୍ଭାଳି । ତା ଉପରେ କଡ଼ା ନଜର ରଖିବାକୁ ହେଲ, କାଳେ ଗହାଜାନି କରେ । ପ୍ୟାରେଡ୍ ଫାଙ୍କି ଦେବା ପାଇଁ ସେ ଡାକ୍ତର ପାଖକୁ ଯାଇଥିଲ । ଡ଼ାକ୍ତରକୁ ମୁଁ କହିଁ ଆସିଲି ହାସପାତାଲରେ ଭର୍ତ୍ତି କରିବାକୁ । ଅବଶ୍ୟ ଏ ସବୁ କଥା ଭାବି କହିନି ।

ତା' ବଡ ଭଇ ଛୁଟି ଆସିଲେ ତାକୁ ଘରକୁ ନେଇ ଯିବାକୁ । ଛୁଟି ନ ପାଇଲେ ସେ ଯିବ କିମିତି ? ଛୁଟି ପାଇଁ ଦରଖାସ୍ତ କରିବାକୁ ହେଲା । ଯେତେଦିନ ଯାଏ ମଞ୍ଜୁରି ନ ଆସେ ସେତେଦିନ ସବୁର କରିବାକୁ ହେବ । ଇତି ମଧ୍ୟରେ ଏକ ବିଚିତ୍ର ଘଟଣା ଘଟିଲା । ଦିନେ ସକାଳେ ଉଠି ଶୁଣିଲି ମେହେରବାନ ସିଂ ନିରୁଦ୍ଦେଶ । ଖବର ନେଇ ଜାଣିଲି ସୁରଯଭନ ବି ନିରୁଦ୍ଦେଶ । ହୈ-ଚୈ ପଡ଼ିଗଲା । ସୁରଯଭନର ଭଉମାନେ କୁହାକୁହି ହେଲେ, ହାୟ ! ହାୟ ! ଗୋଟାଏ ସାମୟିକ ମୋହରେ ସାରା ଜୀବନର କେରିଅର ମାଟି କରିଦେଲା ।

କେବଳ ଦି ଗ୍ବରି ଜଣ ରସିକତା କରି କହିଲେ, ରାଜକନ୍ୟା ଓ ଅଧେ ରାଜ୍ୟ ପାଇଲେ ଆମେ ବି ନିରୁଦ୍ଦେଶ ହେବାକୁ ପ୍ରସ୍ତୁତ ଅଛୁ । ଆଉ ସୁଖଯଭନ ବି କମ ବୁଦ୍ଧିମତୀ ନୁହେଁ । ଛୋକରା ଯେମିତି ଖାନଦାନି ସେମିତି ସୁପୁରୁଷ ।

ମୋ ମନଟା ବେଜାୟ ଖରାପ ହୋଇଗଲା । ବଡ଼ ଭଇ କାନ୍ଦି କାନ୍ଦି ଫେରିଗଲାବେଳେ ମୁଁ ବି ତାଙ୍କ ସଙ୍ଗରେ କିଛି ଦୂର ଗଲି । ସେ କହିଲେ, "ଅଦୃଷ୍ଟ !" ମୁଁ କହିଲି, 'କିସମତ୍' । ଆମେ ହିନ୍ଦୁ ମୁସଲମାନ ଏକମତ । ଯାର ନସୀବରେ ଯା ଅଛି ତା ତ ଘଟିବଇ ଘଟିବ ।

ମାସ ପରେ ମାସ ଯାଏ । ମେହେରବାନର ଖବର ପାଏନା । ଇଆଡ଼େ ସୁରଯଭନର ଘର ଅନ୍ଧକାର । ତାର କର୍ମଗ୍ବରୀମାନେ ଜାଣନ୍ତି ନାହିଁ ସେ କେଉଁଠି । ମୁଁ ମୋର ଡିଉଟିରେ ମନ ଦିଏ ।

ଏକ ବର୍ଷ ପରେ ମେହେରବାନର ପତ୍ର ମିଳିଲା । ସେ ସେତେବେଳେ ଆଜମିର ସରିଫରେ । ମୋତେ ଲେଖିଛି । ଆଜମିର ଯାଉଛି ତୀର୍ଥ କରିବାକୁ । ବୁଝି ପାରିଲି ସେ ମୋ ପରାମର୍ଶ ଗ୍ବହେଁ । ଛୁଟି ନେଇ ଆଜମିର ଗଲି ଜେୟାରତ୍ କରିବାକୁ । ମେହେରବାନ ମୋତେ ତା ଘରକୁ ନେଇଗଲା ତା କ୍ବାର୍ଟରସକୁ । ଦେଖିଲି ବେଶ୍ ଅଛନ୍ତି ସେ ଦୁଇଜଣ । ସୁରଯଭନ ବୋହୂ ସାଜି ବେଶ୍ ଲଜକୁଳୀ ହୋଇଛି । ମୋ ସାମନାରେ ବି ଅଧା ପର୍ଦ୍ଦା ।

ମେହେରବାନ ପାଖରୁ ଯାହା ଶୁଣିଲି ତା କହୁଚି ।

ସିୟାଲକୋଟରୁ ପଳାଇ ସେମାନେ ନାନା ଜାଗାକୁ ଯାଆନ୍ତି । ଯେଉଁଠିକି ଯାନ୍ତି ସେଠି କଥା ଉଠେ ସେମାନଙ୍କ ପରିଚୟ କଣ ? ସ୍ବାମୀ ସ୍ତ୍ରୀ ? ଏହାର ଉତ୍ତରରେ ସୁରଯଭନ କହେ, ହଁ । କିନ୍ତୁ ମେହେରବାନ ମୁହଁବନ୍ଦ

କରି ରହେ । କୌଣସି ମତେ ନା ମୁହଁରୁ ବାହାରେ ନାଇଁ ସେ ସେମାନେ ସ୍ୱାମୀ ସ୍ତ୍ରୀ । ଖାଲି ଅସତ୍ୟ ନୁହେ, ଅପ୍ରିୟ କଥା । ଅଥଚ ଏଭଳି ଏକ ପରିଚୟ ନ ଦେଲେ ଘର ମିଳେ ନା । ଘୁଙ୍କର ବାକର ମିଳନ୍ତି ନାଇଁ । ସାହାଯ୍ୟ ମିଳେନା, ସମାଜ ମିଳେନା । ତାହେଲେ ରହିବାକୁ ହେବ ଯାଇ ବଜାରେ । ସେଭଳି ପ୍ରସ୍ତାବରେ ସୂରଯଭନ ଜଳି ଉଠିବ । ସେ ବି କମ ଗର୍ବିତା ନୁହେଁ । ସେ କଣ ବଜାରର ବେଶ୍ୟା !

ତାପରେ ଯେଉଁଠିକି ଯାନ୍ତି ସେଠି ଅବଶେଷରେ ଜଣାଜଣି ହୋଇଯାଏ ଯେ ଏମାନେ ବିବାହିତ ନୁହନ୍ତି । ଦଳେ ଯୁବକ ଜୁଟି ଭାଗ ଦାବୀ କରନ୍ତି । ସୌନ୍ଦର୍ଯ୍ୟ ଏଭଳି ସାମଗ୍ରୀ, ଭାଗ ନ ଦେଇ ଭୋଗ କରିବାକୁ ଗଲେ କେହି ସହ୍ୟ କରିବ ନାଇଁ । ଟେକା ମାରି ତଡ଼ିବେ । ପୁଲିଶ୍ ପାଖରେ ନାଲିଶ କରିବାକୁ ଯାଅ, ପୁଲିଶ ଗୁହିଁବ ବିବାହର ପ୍ରମାଣ । ନୋହିଲେ ମୋଟା ଘୁଷ । ମେହେରବାନ ହୃଦୟଙ୍ଗମ କଲା ସେ ଏକା ଭୋଗ କରିବାକୁ ହେଲେ ଖାଲି ଦଖଲ ନୁହେଁ, ସ୍ୱତ୍ୱ ଥିବା ଦରକାର । ସୂରଯଭନ ଯେ ତାର ବିବାହିତ ପତ୍ନୀ ଏହାର ଦଲିଲ ଦାଖଲ କରିବାକୁ ହେବ ।

ସେ ରାଜପୁତ ବଂଶୀୟ । ବାହା ହେବ କଣ ନା ବଣିଆର ବିଧବାକୁ । ତାହେଲେ ବି ଯଦି ସତୀ ନାରୀ ହୋଇଥାନ୍ତା । ବୁକୁ ଫାଟି କାନ୍ଦି ଉଠେ । ଏମିତି ତ ତାର ମୁଣ୍ଡ ତଳକୁ । ଯା ପରେ ମାଟି ସଙ୍ଗେ ମିଶିଯିବ । ମେହେରବାନ ଭାବି ଦେଖିଲା ପଳାଇବାର ବାଟ ନାଇଁ । ଗ୍ଧକିରି ତ ଜୁଟିବ ନାଇଁ, ଗ୍ରାମକୁ ଫେରି ଯାଇ ଗୃହବାସ କରିବାକୁ ବସିଲେ ବି ଗୁରୁଜନଙ୍କ ତିରସ୍କାର ଦିବେଳା ହଜମ କରିବାକୁ ହେବ । କିଏ ବା ତାକୁ ବାହା ହେବ ସେତେବେଳେ । ବା ନ ହେଲେ ସ୍ତ୍ରୀ ସହବାସର କଣ ଉପାୟ ? ତେବେ କଣ ସିଏ ଏଇ ବୟସରେ ସନ୍ନ୍ୟାସୀ ହେବ ?

ଯଦି ନ ପଳାଏ ତେବେ ଦୁଇଟି ମାତ୍ର ପନ୍ଥା । ହୁଏତ ବାହା ହେବାକୁ ହେବ, ନୋହିଲେ ଭାଗ ଦେବାକୁ ହେବ । ଦିଟା ପ୍ରତିହିଁ ମେହେରବାନର ସମାନ ବିତୃଷ୍ଣା । ମେହେରବାନର ବିଶ୍ୱାସ ଏ ଦିଟାରେ ସୂରଯଭନର ସମାନ ତୃଷ୍ଣା ।

ଭାଗ ସେ ପ୍ରାଣ ଥାଉ ଥାଉ ଦେବ ନାଇଁ । ତାଠୁ ବରଂ ମରଣ ଭଲ ।

ବାକୀ ରହିଲା ବାହା । ବାହା ହେବାର କଥା ମନେ ହେଲେଇ ତା ଆଖିରୁ ଲୁଆର ଆସେ । ତା ହୃଦୟ ହା-ହା କରେ । ତାର ଜାତିକୁଳର ଗର୍ବ, ତାର ପୌରୁଷର ଦର୍ପ, ତାର ନୀତିବୋଧ ବିଷମ ଧକ୍କା ଖାଇ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଏ ।

ବାଧ୍ୟ ନ ହେଲେ ସେ କୌଣସି ମତେ ଏ ଭଳି କାମ କରି ନଥାନ୍ତା । ବାହା ହେବ ! ଏକ ଗଣ୍ଡିକୁ ବାହା ହେବ ? ଏକ ବଣିଆଁଣୀକୁ ବାହା ହେବ ? ଅସତୀକୁ ବାହା ? ବାଧ୍ୟ ହେଲା ଭଗୀଦାରମାନଙ୍କ ଦାବୀ ଏଡ଼ାଇବାକୁ । ଭାଗ ନ କରି ନିର୍ବିଘ୍ନରେ ଭୋଗ କରିବାକୁ । ଅବିଭକ୍ତ ସ୍ୱତ୍ୱରେ ସ୍ୱତ୍ୱବାନ ହେବାକୁ ।

ବାହା ହେବା ପରେ ଫତୋୟା ଦେଲା. ପର୍ଦାନସୀନ ହେବାକୁ ।

ସୂରଯଭାନ ଏଥିପାଇଁ ପ୍ରସ୍ତୁତ ନଥିଲା । କିନ୍ତୁ ବାହା ହେବାରୁ ସେ ମନେ ମନେ କୃତାର୍ଥ ବୋଧ କରୁଥିଲା । ରାଜପୁତ ତାକୁ ବାହା ହେବ ଏହା ଯେ ତାର ଶୈଶବର ସ୍ୱପ୍ନ । ଏପରି ଅଲୌକିକ ଘଟନା ଯଦି ବା ଘଟିଲା ସେଥିପାଇଁ ତାକୁ କିଛି ତ୍ୟାଗ ସ୍ୱୀକାର କରିବାକୁ ହେବ, କ୍ଷତି କଣ ?

ସ୍ତ୍ରୀକୁ ପର୍ଦାରେ ପୂରାଇ ମେହେରବାନ ଏଥର ନିଶ୍ଚିନ୍ତ ହେଲା । ଏହାପରେ ତାକୁ ଜୀବିକାର ଚେଷ୍ଟା କରିବାକୁ ହେବ । ଏଥିପାଇଁ ପଞ୍ଜାବ ବାହାରକୁ ଯିବାକୁ ସ୍ଥିର କଲା । ସେଠ ଲୁଗ୍ଛପାର ଦରକାର ନାଇଁ । ସୋଜା ନିଜର ପରିଚୟ ଦେଇ ହେବ । ଘୂରି ଘୂରି ହାଜର ହେଲା ଆଜମୀରରେ । ତାର ଜଙ୍ଗୀ ରେକର୍ଡ ଦେଖାଇ ରେଳବାଇରେ କାମ ପାଇଲା । ମାଇନା ବେଶ ନୁହଁ । କିନ୍ତୁ ନିଜର ଅନ୍ନ !

ଏଠି ଦେଖାଦେଲା ନୂଆ ଏକ ସମସ୍ୟା । ରେଲବାଇ କାମରେ ମାସକେ କୋଡ଼ିଏ ଦିନ ସଫର କରିବାକୁ ହେବ । ସ୍ତ୍ରୀକୁ ସଙ୍ଗରେ ନେଇଯିବା ଶକ୍ତ । ଏକା ରଖିଗଲେ ବି ଭବନା । ଏମିତି ଏକ ସାତ ରଜାର ମାଣିକ ଯାହା ଘରେ, ସେ ଯଦି ବାହାରେ ବାହାରେ ରତି ବିତାଏ, ତେବେ ଘରେ କେହି ନା କେହି ସିନ୍ଧି କାଟିବ ମୌକା ପାଇ । ଆଉ ଥାନାର ଖାତାରେ ଲେଖାହେବ ଗହଣାପତ୍ର, ଲୁଗାପଟା, ତୈଜସ୍ ପତ୍ର ଚୋରି ହୋଇଛି ! ଅସଲ

କଣ ଘେରିଗଲା ତାହା ତ ଲେଖିବାର କଥା ନୁହେଁ । ଯାର ଘେରିଗଲା ସେ ସେତେବେଳେ ସଫରରେ ।

ମେହେରବାନ ତାହେଲେ କରିବ କଣ ? ଘର ସମ୍ଭାଳିବ ନା ବାହାର ସମ୍ଭାଳିବ ? ସ୍ତ୍ରୀକୁ ରଖିବ ନା ଚାକିରି କରିବ ? ସୁରଯଭନର ସେମିତି କିଛି ସମସ୍ୟା ନାଇଁ । ତାକୁ ଦେଖିଲେ ମନେ ହୁଏ ସେ ଗୋଟାଏ ସ୍ଥିତି ପାଇବ । ସେ ରାଜପୁତ୍ର ସ୍ୱପ୍ନ ଦେଖୁଥିଲା, ରାଜପୁତ୍ରକୁ ପାଇଛି କିନ୍ତୁ ମେହେରବାନ କଣ ଏଇଆ ଚାହିଁଥିଲା ? ଏଇ ସ୍ୱପ୍ନ ଦେଖିଥିଲା ?

ମୋତେ ଡାକ ପଡ଼ିଲା ଏମିତି ସମୟରେ ଆଜମୀରକୁ । ପରାମର୍ଶ ପାଇଁ ।

ଏମାନେ ବିବାହ କରିଛନ୍ତି ଶୁଣି ମୁଁ ସତରେ ଖୁବ୍ ଖୁସି ହୋଇଥିଲି । ମୁଁ ମୁସଲମାନ, ମୋର ସେମିତି କୌଣସି ସଂସାର ନଥିଲା । ମେହେରବାନ ତ୍ୟାଗ କରିବ ବୋଲି ମୁଁ ତାକୁ ସେଭଳି ପରାମର୍ଶ ମୂଳରୁ ଦେଇ ନାଇଁ । ବର୍ତ୍ତମାନ ସେ ମୋ ବିନା ପରାମର୍ଶରେ ଯାହା କରିଛି ଠିକ୍ କରିଛି । କିନ୍ତୁ ଏଇ ଈର୍ଷାକାତରତାର ଅର୍ଥ ମୁଁ ବୁଝେନା, ଏଇ ସନ୍ଦେହକାତରତାର । ଯାହା ସଙ୍ଗରେ ସାରା ଜୀବନ ଘର କରିବ ତାକୁ ପଦେ ପଦେ ଅବିଶ୍ୱାସ କଲେ ଚଳିବ ?

ଏହାର ଉତ୍ତରରେ ମେହେରବାନ କହେ, "ଯେ ଯେ ଭୟାନକ ସୁନ୍ଦର । ସୁନ୍ଦର ନ ହେଲେ ସଂଦେହ କରନ୍ତି ନାଇଁ । କୁତ୍ସିତ ହେଲେ ବିଶ୍ୱାସ କରିବା ସହଜ ହୁଅନ୍ତା ।"

ବୁଝାଗଲା ସୌଂଦର୍ଯ୍ୟକୁ ହିଁ ତାର ଭୟ । ଏ ଭୟ କିମିତି ଭାଂଗିବ ? ସାତଟା ଆଠଟା ସନ୍ତାନର ମା ହେଲେ ? ଦୁଶ୍ଚିକିତ୍ସ୍ୟ ସ୍ତ୍ରୀ ରୋଗରେ ଭୋଗିଲେ ? ଯୌବନ ଅପଗତ ହେଲେ ? କିନ୍ତୁ ଏ ସବୁର ସେତେବେଳକୁ ଅନେକ ଡେରି । ସୂରଯଭନ ଆମର ସମବୟସୀ । ଅକାଳରେ ସ୍ଥବିର ହେବାକୁ ତାର କିଛିମାତ୍ର ତ୍ୱରା ନଥିଲା ।

ମୁଁ କହିଲି, "ଭାଇ ଯାହା କର, ସ୍ତ୍ରୀର କୁରୂପ କାମନା କରନା । ତମମାନଙ୍କର କୌଣସି ଦେବତା ଯଦି ତମ ପ୍ରାର୍ଥନା ପୂରଣ କରନ୍ତି ତ ସେତେବେଳେ ଭୋଗିବ ତୁମେଇ ।"

ଦେଖିଲି ଯାର ମତିଗତି ସୁବିଧାର ନୁହେ । ଏସିତ୍ ଦେଇ ପୋଡ଼ି ବିଶ୍ରୀ କରଯାଏ କି ନା ଭାବୁଥିଲି । ଏମିତି ଭାବେ କାଣ୍ଡଟା ଘଟାଇବ ଯେମତି ଏକ ଆକସ୍ମିକ ଘଟଣ ।

ମୁଁ କଡ଼ା ସ୍ୱରରେ ତାକୁ ଧମକ ଦେଲି । ଭିତରେ ଭିତରେ କିନ୍ତୁ ଶିହରି ଉଠିଲି । କହିଲି, "ତାହେଲେ ତୁମେ ତାଲାକ୍ ଦେଇ ଦିଅ । ନୋହିଲେ ଛଡ଼ାଛଡ଼ି ହୁଅ ।"

ସେ ଏକଥା ଉଠାଇବ ନାହିଁ । କହିବ, "ପୁଲିଶ ଚାକିରିରେ ଥିଲେ ମାଇନା ଓ ପେନସନ ମିଶାଇ ମୁଁ କେତେ ଲକ୍ଷ ଟଂକା ରୋଜଗାର କରି ପାରିଥାନ୍ତି । ଖରଚପତ୍ର ବାଦ୍ ଦେଲେ ମୋର ନୀଟ୍ ସଂଚୟ ହୁଅନ୍ତା ଏକ ଲକ୍ଷ ଟଂକା । ସେଇ ଲକ୍ଷେ ଟଂକା କହିବାକୁ ଗଲେ, ଯୌତୁକ ଦେଇଛି । ମୋଫତ୍ ନେଇନି । ମୁଁ କାହିଁକି ତାଲାକ୍ ଦେବି ? ଆଉ ଛଡ଼ାଛଡ଼ି କିଆଁ ? ନିୟତି ଆମକୁ ଏକସୂତ୍ରରେ ଗୁଂଥିଛି ।"

ହଠାତ୍ ମୋର ଗୋଟାଏ ବୁଦ୍ଧି ଖେଳିଗଲା । କହିଲି, "ଆଛା ଯେ ଯଦି ତମକୁ ଲକ୍ଷେ ଟଂକା ଫେରତ୍ ଦିଅନ୍ତା ତୁମେ ଯାକୁ ଛାଡ଼ିଦେବ ?"

ମେହେରବାନ ଏକାବେଳେକେ ଥ ବନିଗଲା । ବଲବଲ କରି ଅନାଇ ଚହିଲା ମୋ ଆଡ଼କୁ । କ'ଣ ଭାବିଲା ସେଇ ଜାଣେ । କହିଲା, "ଥଟ୍ଟା କରୁଚ ?"

"ନା । ଥଟ୍ଟା ନୁହେଁ ।" ମୁଁ ଦୃଢ଼ତାର ସଙ୍ଗେ କହିଲି, "ଏହା ହିଁ ଏକମାତ୍ର ସମାଧାନ ।"

"ତୁମେ ଯଦି ତାକୁ ଏକଥା କହିବ ନାହିଁ, ମେହେରବାନ ଆର୍ତକଂଠରେ କହିଲା, "ସେ ସତକୁ ସତ ଲକ୍ଷେ ଟଂକା ଫିଙ୍ଗିଦେବ । ତା ହେଲେଇ ମୁଁ ତା ପାଖରେ କିଣା ହୋଇ ରହିବି । ଘଣୀପସନ୍ଦ ।"

ଯାର ମନ କଥାଟା ଏଇ ଯେ, ସୂରଯଭନ ଯାର ମାଲିକ ହେବ ନାହିଁ । ଯେ ହେବ ସୂରଯଭନର ମାଲିକ । ତା'ପରେ ସୂରଯଭନ ସୁନ୍ଦର ନାୟିକା ହେବ ନାହିଁ । ହେବ କୁରୂପା ବାନ୍ଦୀ । ତାହେଲେଇ ଯେ ନିଶ୍ଚିନ୍ତ ହେବ, ନିରୁପଦ୍ରବ ହେବ । କିନ୍ତୁ ସୂରଯଭନକୁ ସେ କଥା ମୁହଁ ଖୋଲି ଜଣାଇ ଦେଇ ହୁଏନା ।

ଖାଜା ସାହେବର ଦରଗାରେ ନଜରନା ଦେଇ ମୁଁ ଆଜମୀରରୁ ଚାଲି ଆସେ । ତାର କିଛିଦିନ ପରେ ଅବାକ୍ ହୋଇ ଦେଖେ ଯେ, ସୂରଯଭନର ମହଲ ଆଲୋକ ସଜାରେ ଝଲସି ଉଠୁଚି । କଣ ହୋଇଚି ? କଣ ହୋଇଚି ? ଗଣା ଫେରି ଆସିଛନ୍ତି । ଆଉ କିଏ ଆସିଚି କି ? ନା, ଆଉ କିଏ ତ ଆସିନି ।

ଖାନ ବାହାଦୁର କହି ଚାଲିଲେ ' "ତାପରେ ମେହେରବାନ ସଙ୍ଗରେ ଆଉ ଦେଖା ହୋଇନାଇଁ । ଚିଠ ଲେଖାଲେଖି ମଧ୍ୟ ହୋଇ ନାଇଁ । ବଦଳି ହେଲ ଠିକ ନୁହେଁ, ଗୋପନୀୟ ବିଭଗରେ ନିଯୁକ୍ତ ହୁଏ ତା'ପରଠାରୁ ଏଇ ପ୍ରଦେଶରେ ଅଛି । ମୁଁ ଯେତେଦୂର ଜାଣେ ଏଇ ଶେଷ ।"

"ଏଇ ଶେଷ !" ମୋର କୌତୁକ ନିବୃତ୍ତ ହେବାକୁ ଚାହେଁନା । "କହନ୍ତୁ, କହନ୍ତୁ, ତାପରେ କଣହେଲ ? ସୂରଯଭନର କଣ ହେଲ ? ମେହେରବାନର କଣହେଲ ?"

ଲଂଚ ପାଣି କାଟି କାଟି ଚାଲୁଥିଲ । ପାଣିର ଛିଟା ଆସି ପଡ଼ୁଥିଲ ଆମ ଦେହରେ । କେତେବେଳୁ ଏକତ୍ର ଚାପାନ ସରି ଯାଇଛି । ଡ଼ିନରର ଅର୍ଡର ଦେଇଚି ମୁଁ । ଖାନ ବାହାଦୁର ମୋର ମେହରବାନ ।

"ଆଉ, ଦାଦା ! କହିଁ ସୁଖ ନାଇଁ । ମଣିଷ ଚିହ୍ନି ଚିହ୍ନି ବୁଢ଼ା ହୋଇଗଲଣି । କିନ୍ତୁ ସେତେବେଳେ ତ ଚିହ୍ନି ନ ଥିଲି । ଏଣୁ ସ୍ତମ୍ଭିତ ହୋଇଥିଲି ।"

"କାହିଁକି ? କାହିଁକି ?" ମୋର କୌତୁହଳ ବାଧ ମାନୁ ନଥିଲ ।

"ଲୋକଟା ସତରେ ଯାଇଥିଲ ସ୍ତ୍ରୀ ମୁହଁରେ ଏସିଡ, ଢାଳିବାକୁ । ଏକ ବୁନ୍ଦା ପଡ଼ିଥିଲ ତାର ବେକରେ କିମ୍ବା ଗାଲରେ । ସେଥିପାଇଁ ସୁରଯଭନ ଆଉ ପାର୍ଟି ଦିଏ ନା, ବାହାରକୁ ବାହାରେନା । କିନ୍ତୁ ବେଶି କ୍ଷତି ହୋଇ ନାଇଁ । ସୂରଯଭନ ସଙ୍ଗରେ ଲକ୍ଷେ ଖଣ୍ଡେ ଟଙ୍କାର ଜହରତ୍ ଥିଲ । ସମସ୍ତ ମେହେରବାନ ହାତରେ ଧରାଇ ଦେଇ ସେ ଏକ ଦୌଡ଼ରେ ଆସି ରେଲ-ଷ୍ଟେସନରେ ହାଜର ହେଲ । ତା'ପରେ ସନ୍ଧାନ୍ ସିଆଲକୋର୍ଟରେ ।

ମୁଁ ଘୃଣାରେ କାନରେ ହାତ ଦେଇଥିଲି । ଆଉ ଶୁଣିବାକୁ ରୁଚି ନଥିଲ ।

"ମେହେରବାନ ତ ଜହରତ ସମ୍ଭାଳିବାରେ ବ୍ୟସ୍ତ । ପଛରେ ଦୌଡ଼ନ୍ତା କିମିତି ? କେଉଁଟା ବେଶୀ ମୂଲ୍ୟବାନ ?.ଜହରତ ନା ଆଓରତ ? କାର୍ଯ୍ୟକାଳରେ ଦେଖାଗଲା ଜହରତ । ଖାଁ ବାହାଦୁର ଖେଦୋକ୍ତି କଲେ । ମନେହେଲା ତାର ସହାନୁଭୂତି ଆଓରତ ପ୍ରତି । ହାତଟା ଟିକିଏ ଫାଙ୍କ କଲି ।

କିନ୍ତୁ ସେଟା ମୋର ଭୁଲ ।

ଅନ୍ଧକାର ଘନ ହୋଇ ଆସୁଥିଲା । ପହଂଚିବାକୁ ଡେରି ଅଛି । ଖାନା ବି ଡେରି ଅଛି । ଗଳ୍ପଟା ଶେଷ ହୋଇଗଲେ କଣ ନେଇ ଆମେ ରହିବୁଁ ?

ଖାଁ ବାହାଦୁର କହିଲେ, "ଇଏ ଠିକଇ ହୋଇଚି ମହାଶୟ । ଅଳ୍ପକେ କଥାଟା ଯାଇଚି । ଘଟଣାତ ଏଇ ଗୋଟାଏ ଦେଖିନାଇଁ । ମେହେରବାନ ଦିନେ ଯାକୁ ଖୁଣ୍ କରିପାରିଥାନ୍ତା । ସୁନ୍ଦରୀମାନେ ଚଞ୍ଚଳା ହୋଇଥାନ୍ତି । ଦିନେ ହୁଏତ ଟିକିଏ ଚନ୍‌ଚନ୍ କରନ୍ତା ଆଉ ଏମିତି ପ୍ରାଣଟା ହରନ୍ତା । ବଂଚି ଗଲା ଏଇ ଢେର । ଏସିଡ୍‌ର ଦାଗ ଲଗି ଯଦିବା ସୌନ୍ଦର୍ଯ୍ୟର ଟିକିଏ କ୍ଷତି ହୋଇଥାଏ ସେଟା ମନେ କରନ୍ତୁ ଯାର ପାପର ସଜା ।

ମୁଁ କିଛି କହିଲି ନାଇଁ । ପାପ ତତ୍ତ୍ୱରେ ମୋର ଆସ୍ଥା ନଥିଲା । ପାପର ସଜା ପୁଣି ପାପୀ ଦେବ ସେଟା ମୋ ପକ୍ଷରେ ଅସହ୍ୟ । ମେହେରବାନ ତ କମ ପାପୀ ନୁହଁ ।

**"ବିଗ୍ଭର କରି ଦେଖିବେ", ଖାଁ ବାହାଦୁର କହିଲେ, "ନାରୀର କଣ ଏମିତି କ୍ଷତି ହେଲା ? କ୍ଷତି ଯା ହେଲା ତା ପୁରୁଷର । ଏ ଜହରତ କଣ ତାର କ୍ଷତିପୂରଣ ହୋଇପାରେ ! ସେ କ୍ଷତି ଅପୂରଣୀୟ । ଗ୍ଭକିରିରେ ଥିଲେ ସେ ଏବେ ଡ଼ି.ଆଇ:ଜି ନ ହେଉ ଏ.ଆଇ.ଜି. ହୁଅନ୍ତାଣି । ହାୟ ହାୟରେ ତକ୍‌ଦିର ' ନସୀବ୍‌ରେ ଯା ଅଛି ତା ତ ହେବ । ଆଉ ଏ ରେଲୱେୟେ କାମଟା ବି ରଖି-ପାରିଲା କେଉଁଠି ! ଲକ୍ଷେ ଟଙ୍କାର ଜହରତ୍ ପାଇ ମଥା ଘୂରିଗଲା । ସାଦୀ କରି ବସିଲା ଏଇ ଜହରତ ଯୌତୁକ ଦେଇ, ରାଜପୁତନାର ମହାସଂଭ୍ରାନ୍ତ ପରିବାରରେ । ସେମାନେ ଯାକୁ ଇଂରଜିର ନୌକରି କରିବାକୁ ଦେଲେ ନାଇଁ । ଦେଶୀୟ ରାଜ୍ୟର ଫୌଜରେ ଭର୍ତି କରିଦେଲେ । ସେଥିରେ ପଦ ଛଡ଼ା ଆଉ କଣ ଅଛି ମହାଶୟ !"**

ମୁଁ ଗୁମ୍ ହୋଇ ବସିଥିଲି । କଣ କହିବି ଭାବି ପାଉ ନଥିଲି ।

“ବର୍ତ୍ତମାନ ଆମ ଇନସ୍‌ପେକ୍‌ଟରର କଣ ହେଉଛି ଦେଖାଯାଉ । ଭଏ ଆଉ ଏକ ରଣୀପସନ୍ଦ । ଝିଅଟି କୁଆଡ଼େ ଅପରୂପ ସୁନ୍ଦରୀ । ସୁନ୍ଦରୀ ହେଲେ ମନ୍ଦ ହେବ ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ଯିଏ ଯେତେ ମନ୍ଦ ସିଏ ସେତେ ସୁନ୍ଦରୀ ।” ଦୀର୍ଘଶ୍ୱାସ ପକାଇଲେ ଖାଁ ବାହାଦୁର ।

# ନିରୁଦ୍ଦେଶ

## ପ୍ରେମେନ୍ଦ୍ର ମିତ୍ର

ଦିନଟା ବଡ଼ ବିରକ୍ତିକର । ଶୀତ ଦିନରେ ମେଘୁଆ ପାଗ ପରି ଅସ୍ୱସ୍ତିକର ଆଉ ବୋଧହୁଏ କିଛି ନାହିଁ । ବର୍ଷା ଯେ ହେଉଚି ତା ନୁହେଁ । କିନ୍ତୁ ମେଘାଚ୍ଛନ୍ନ ଆକାଶ ଓ ମ୍ଳାନ ପୃଥିବୀ କେମିତି ମୃତ ଲୋକ ପରି ନିର୍ଜୀବ ହୋଇଅଛି । ସୋମେଶ ହଠାତ୍ ଆଜି ନ ଆସିଥିଲେ ଦିପହରଟା ଯେ କିମିତି କଟାଇଥାନ୍ତି କହିପାରୁନାହିଁ । କିନ୍ତୁ ସୋମେଶ ଆଜି ଯେମିତି କିମିତିକା ଦେଖାଯାଉଚି ।

ଖବର କାଗଜଟାକୁ ଥରେ ଦିଥର ଓଲଟାଇ ସୋମେଶ ଆଗରେ ଫିଙ୍ଗି ଦେଇ କହିଲି, "ଗୋଟାଏ ଆଶ୍ଚର୍ଯ୍ୟ ବ୍ୟାପାର ଦେଖିଚି ?"

"କଣ" ?

"ଆଜି କାଗଜରେ ଏକା ସାଙ୍ଗରେ ସାତ-ଆଠଟା ନିରୁଦ୍ଦେଶର ବିଜ୍ଞାପନ ।"

ସୋମେଶ କୌଣସି କୌତୂହଳ ପ୍ରକାଶ କଲା ନାହିଁ । ଯେମିତି ବସିଥିଲା ସେମିତି ଉଦାସୀନ ଭାବରେ ବସିରହି ଖାଲି ସିଗାରେଟ୍ ଧୂଆଁ ଛାଡ଼ିବାକୁ ଲାଗିଲା । ନିବଦ୍ଧ ଘର ଭିତରେ ଧୂଆଁ କୁଣ୍ଡଳୀ କେବଳ ଧୀରେ ଧୀରେ ମୋଡ଼ି ହୋଇ ଊର୍ଦ୍ଧ୍ୱଗାମୀ ହେଉଥିଲା । ଆଉ ସବୁ କିଛି ନିଶ୍ଚଳ ସ୍ତବ୍ଧ । ବାହାରର ନିର୍ଜୀବତା ଯେମିତି ଆମ ଉପରେ ଚାପି ବସିଚି ।

କିଛି ଗୋଟାଏ କରି ଏଇ ଅସ୍ୱସ୍ତିକର ସ୍ତବ୍ଧତା ଭାଙ୍ଗିବା ଉଦ୍ଦେଶ୍ୟରେ ଆରମ୍ଭ କଲି, "ନିରୁଦ୍ଦେଶର ଏଇ ବିଜ୍ଞାପନଗୁଡ଼ାକ ଦେଖିଲେ କିନ୍ତୁ ମୋତେ ହସ ମାଡ଼େ । ଅଧିକାଂଶ କ୍ଷେତ୍ରରେ ବ୍ୟାପାରଟା କଣ ଜାଣ ତ । ପୁଅ ହୁଏତ ରାତି ଅଧରେ ଥିଏଟର ଦେଖି ଘରକୁ ଫେରୁଚି । ଏମିତି ସେ ପ୍ରାୟଇ

ଫେରେ ଆଜିକାଲି । ଖାଇ ବସିବାବେଳେ ବାବା କେତେଦିନ ଖୋଜିଛନ୍ତି—"କୁଆଡେ ଗଲେ ବାବୁ ? ତମର ଗୁଣଧର ପୁତ୍ରଟି ।"

ଗୃହିଣୀକୁ ଧମକ ଦେଇ କହିଲେ, "ମିଛୁଟାରେ ବକବକ୍ କରନା । ଏମିତି ପୁଅ ଯିବାଇ ଦରକାର ।"

ମା'ର କାନ୍ଦଣା ପୁଣ ଉଚ୍ଛ୍ୱସିତ ହୋଇଉଠେ ।

ବାବା ଏଥର ଦାନ୍ତ ଘେବାଇ କହିଲେ ବି ନିଜ ମନର ଆଶାଟା ବୋଧହୁଏ ଜଣାନ୍ତି– "ତା ଗଲେ ତ ବଞ୍ଚନ୍ତି । ଏ ବେଲା ଦେଖ ସୁଡ଼ୁ ସୁଡ଼ୁ କରି ପୁଣି ଫେରି ଆସିବ । ଏମିତି ବିନା ପଇସାରେ ହୋଟେଲ ଖଣ୍ଡକ ପାଇବ କେଉଁଠି ?

ମା ଏଥର ଅଶ୍ରୁସିକ୍ତ ସ୍ୱରରେ କହିଲେ, "ଏ ଦାରୁଣ ଶୀତରେ କାଲି ସାଗ ଗତି କେଉଁଠି ରହିଲା କିଏ ଜାଣେ ? କଣ କରି ବସିବ ମୋର ଭାରି ଭୟ ।"

ହଁ, ଭୟ !" ବାବା କଥାଟାକୁ ବ୍ୟଙ୍ଗ କରି ଉଡ଼ାଇ ଦିଅନ୍ତି । "ତମ ପୁଅ କିଛି କରି ନାଇଁ ଗୋ କରି ନାଇଁ । ବେଶ୍ ଅଛି କେଉଁ ବନ୍ଧୁର ଘରେ । ଅସୁବିଧା ହେଲେଇ ଆସି ଦେଖାଦେବ ।"

ମା'ଙ୍କ କାନ୍ଦଣା ତଥାପି ବନ୍ଦ ହୁଏନା । "କିପରି ଅଭିମାନୀ ଜାଣ ତ ।"

ବିରକ୍ତ ହୋଇ ବାବା ବାହାରି ଯାନ୍ତି । ସନ୍ଧ୍ୟାବେଳେ ଅଫିସରୁ ଆସି ଦେଖନ୍ତି ଅବସ୍ଥା ଗୁରୁତର । ପୁଅ ଫେରିନି । ମା ଶଯ୍ୟାରୁ ଆଉ ଉଠିବେ ନାଇଁ ବୋଲି ପଣ କରିଛନ୍ତି ।

"ନା ଆଉ ରଖେଇ ଦେବେ ନାଇଁ । ଏ ଅଶାନ୍ତିଠାରୁ ବରଂ ବନବାସ ଭଲ ।" କହି ବାବା ବାହାରି ପଡନ୍ତି ଏବଂ ଏକବାରେ ଉଠନ୍ତି ଯାଇଁ ଖବର-କାଗଜ ଅଫିସରେ ।

ଖବର କାଗଜ ଅଫିସର ବ୍ୟାପାରଟା ବଡ଼ କଠିନ । କେଉଁଠି କଣ କରିବାକୁ ହୁଏ କିଛି ବୁଝା ଯାଏନା । କିଛିକ୍ଷଣ ଏଣେତେଣେ ବିମୂଢ଼ ଭାବେ ଘୁରି ଏକ ଆଡ଼ର ଏକ ଅଫିସ ଘରେ ଢୁକି ନିରୀହ ଦେଖାଯାଉଥିବା ଭଦ୍ର-

ଲୋକକୁ ବାଛି ନେଇ ପଗ୍ଭରନ୍ତି—"ଆପଣଙ୍କ କାଗଜରେ—ଏଇ ଗୋଟାଏ ଖବର ବାହାର କରିବାକୁ ଗ୍ଭହୁଁଚି ।"

ନିରୀହ ଚେହେରାର ଭଦ୍ରଲୋକଟି ହଠାତ୍ ମୁହଁ ଟେକି ଅଟ୍ଟା କଲା ପରି କହନ୍ତି, "ଖବର ! କାହିଁକି, ଆମ ଖବର ଗୁଡ଼ାକ କଣ ପସନ୍ଦ ହେଉନାହିଁ ! ଆମେ କଣ ଏତେଦିନ ଧରି ଖାଲି ରାମମୀଳା ବାହାର କରିଛୁଁ ?"

ଲୁଗ୍ଭଇ ରଖିଥିବା ପାର୍ଟିରୁ ମା ଉପରବେଳା ପୁଅର କୁହାବୋଲାରେ ଟଙ୍କା କାଢ଼ି ବଢ଼ାଇ ଦେଇଛନ୍ତି । ତେଣୁ ସେ ଜାଣିଶୁଣି ମିଥ୍ୟା କହି ପାରନ୍ତି ନାଇଁ । ଚୁପ୍‌କରି ରହନ୍ତି ।

ବାବା କହିଯାନ୍ତି "ଏତେ ରାତି ହେଲେ ବି ବାବୁଙ୍କର ଫେରିବାର ସମୟ ହେଲା ନାଇଁ । ସିଆଡ଼େ ତ ଫେଲ ହୋଇ ମୁଣ୍ଡ କିଣିଛନ୍ତି । ଏବେ କଣ କରି କୃତାର୍ଥ କରିବେ ବୁଝି ପାରିଚି । ପଇସାଗୁଡ଼ାକ ମୋର ଯେମିତି ମୋଫତ୍ ପଡ଼ିଚି । ସେଥିପାଇଁ ନବାବ ପୁଅ ଯା ଖୁସି ତା କରି ବୁଲିବ । ତଡ଼ିଦେବି, ଏଥର ଘରୁ ତଡ଼ିଦେବି ।"

ଏଇ ମୌଖିକ ଆସ୍ଫାଳନରେ ହୁଏତ କଥାଟା ଶେଷ ହୋଇ ପାରନ୍ତା । କିନ୍ତୁ ଠିକ୍ ସେଇ ସମୟରେ ଗୁଣଧର ପୁତ୍ରର ପ୍ରବେଶ !

ବାବା ତୋଡ଼ଟା ଶେଷ କରି ପାରନ୍ତି ନାଇଁ । ନିଜ ପାଖରେ ମାନ ରଖିବା ପାଇଁ କିଛି କହିବାକୁ ହୁଏ ।

ଶେଷ ପର୍ଯ୍ୟନ୍ତ ବାବା କହନ୍ତି, "ଏମିତି ପିଲା ମୋର ଦରକାର ନାଇଁ ବାହାରି ଯା ।"

ଅଭିମାନୀ ପୁଅ ଆଉ କିଛି ନ କହି ପିତୃଦେବଙ୍କ ସେ ଆଦେଶ ପାଳନ କରିବାକୁ ତତ୍‌କ୍ଷଣାତ୍ ଉଦ୍ୟତ୍ ହୁଏ ।

ମା କେଉଁ ଦିଗ ସମ୍ଭାଳିବେ କିଛି ବୁଝି ନପାରି କାତର ଭାବରେ କହନ୍ତି, "ଆଚ୍ଛା ଖାଇବା ପିଇବା ସମୟରେ କାହିଁକି ଏମିତି କହନ୍ତ ! ପରେ କହିଲେ ତ ହେବ !"

ବାବା ଏଥର ମା ଉପରେ ମାର ମାର ହୋଇ ଉଠନ୍ତି, "ତମରି ଆସ୍କାରାରେ ତ ଇଏ ନଷ୍ଟ ହୋଇଚି । ମୁଣ୍ଡଟି ତ ତୁମେ ଯାଉ ଖାଇଚ ଆଦର ଦେଇ ।"

ମା କାନିରେ ଲୁହ ପୋଛନ୍ତି । ପୁଅ ବିଶାଳ ପୃଥିବୀରେ ନିରୁଦ୍ଦେଶ ଯାତ୍ରାରେ ବାହାରି ପଡ଼େ ।

ପର ଦିନ ଭୟାନକ କାଣ୍ଡ । ମା କାଲି ରାତିରୁ ଦାନ୍ତରେ କୁଟାଟି ଗେଞ୍ଚାଇ ନାହାନ୍ତି । ଆଜି ଦିନଟା ସାରା ବି ବିଛଣାରୁ ଉଠିବାକୁ ମନ ହେଉ ନାହିଁ । ବାବାଙ୍କର ବି ହୁଏତ ରାତିରେ ନିଦ ହୋଇନି । କିନ୍ତୁ ସେ କଥା ପ୍ରକାଶ କରିବେ କେଉଁ ମୁହଁରେ ।

ବାବା ଟିକିଏ ହତଭମ୍ବ ହୋଇ ଚାରିଆଡ଼କୁ ଚାହିଁ ଦେଖନ୍ତି । ପାଖର ଯେଉଁ ଭଦ୍ରଲୋକଟି ଟିକିଏ ରୁଢ଼ ପ୍ରକୃତିର ମନେ ହେଉଥିଲେ, ସେ ସହାନୁଭୂତି ସ୍ୱରରେ କହନ୍ତି, "ଆହା କଣ କହୁଚ ! ଭଦ୍ରଲୋକ କଣ କହୁଛନ୍ତି ଶୁଣନା ଟିକିଏ । ବସନ୍ତୁ, ଆପଣ ।"

ବାବା ଗୋଟାଏ ଚେୟାରରେ ଟିକିଏ ଅପ୍ରସ୍ତୁତ ଭାବରେ ବସିବା ପରେ ସେ କହନ୍ତି,

"କଣ ଖବର କହୁଥିଲେ ?"

"ଆଜ୍ଞା, ଠିକ୍ ଖବର ନୁହେଁ । ଏଇ ଟିକିଏ ବିଜ୍ଞାପନ ।"

"ବିଜ୍ଞାପନ ? କେଉଁ ବିଷୟରେ ବିଜ୍ଞାପନ ଏବଂ କେତେ ସ୍ପେସ୍ ଚାହି ? କପି ଆଣିଛନ୍ତି ?"

ବାବା ଆହୁରି ବିମୂଢ଼ ଭାବରେ କହନ୍ତି, "ଆଜ୍ଞା ଠିକ୍ ବିଜ୍ଞାପନ ନୁହେଁ । ଏଇ ମୋ ପୁଅ ଘରୁ ଚାଲିଯାଇଚି ।"

ତାଙ୍କୁ ଆଉ କଥା ଶେଷ କରିବାକୁ ହେଲା ନାହିଁ । ଟେବୁଲ୍‌ର ଆର ପଟୁ ଭଦ୍ରଲୋକ କହିଲେ—"ଓ ବୁଝିଛି । ନିରୁଦ୍ଦେଶ । କଣ ଦେବେ ? ଚେହେରାର ବର୍ଣ୍ଣନା ନା ଫେରି ଆସିବାର ଅନୁରୋଧ ?"

ବାବା ଯେମିତି ଏତେବେଳକେ କୂଳକିନାରା ପାଇ କହିଲେ, 'ଆଜ୍ଞା, ହଁ ଫେରି ଆସିବାର ଅନୁରୋଧ । ଓ ର ମା ବଡ଼ କନ୍ଦାକଟା କରୁଚି ।"

"ବୁଝିଛି, ବୁଝିଛି । ରାଗାରାଗି କରି ଯାଇଚି ବୋଧହୁଏ ?" ଭଦ୍ରଲୋକ ଏକ କାଗଜର ପ୍ୟାଡ୍ ବାବାଙ୍କ ଆଡ଼କୁ ଆଗେଇ ଦେଇ କହିଲେ, "ନିଅନ୍ତୁ ଲେଖି ଦିଅନ୍ତୁ ।"

ଲେଖା ! ବାବାଙ୍କ ମୁହଁର ବିପଦଗ୍ରସ୍ତଭାବ ବି ତତ୍‌କ୍ଷଣାତ୍ ସୁସ୍ପଷ୍ଟ ।

ଭଦ୍ରଲୋକ ଦୟାପରବେଶ ହୋଇ କହନ୍ତି, "ଆଚ୍ଛା, ଆମେ ସବୁ ଲେଖି ଦେବୁଁ । ଆପଣ ଖାଲି ନାମଟାମ ଗୁଡ଼ା ଦେଇଯାନ୍ତୁ ।

ପରିଚୟ ଦେଇ ଯିବା ସମୟରେ ବାବା କହନ୍ତି, "ଟିକିଏ ଭଲ କରି ଲେଖିଦେବେ । ମା କାଲିଠାରୁ ଜଳଗ୍ରହଣ କରିନି ।"

"ସେ କଥା କହିବାକୁ ହେବ ନାଇଁ । ଏମିତି ଭାବେ ଲେଖି ଦେବି ଯେ, ଆପଣଙ୍କ ପୁଅ କାନ୍ଦି ଭସାଇ ଦେବ । ଆପଣ ନିଶ୍ଚିନ୍ତ ରହନ୍ତୁ ।"

ଆଶ୍ୱସ୍ତ ହୋଇ ବାବା ଘରକୁ ଫେରନ୍ତି । କିନ୍ତୁ ଅଶ୍ରୁସଜଳ ବିଜ୍ଞାପନ ବାହାର ହେବା ଆଗରୁ ଦେଖନ୍ତି ପୁଅ ଆସି ହାଜର ।

ଆନୁତପ୍ତ ହୋଇ ସେ ଆସିଛି ମନେ କରିବ ନାଇଁ । ସେ ଘରେ ରହିବାକୁ ଆସିନି । ଖାଲି ଚାଲିଯିବା ଆଗରୁ ତାର କେତେଖଣ୍ଡ ବହି ନେବାକୁ ଆସିଛି ।

ଏଥର ମାର କ୍ରୁଦ୍ଧସ୍ୱର ଶୁଣାଯାଏ, "ଯା ଯିବୁ ତ ଯିବୁ । ଏମିତି କୁଳାଙ୍ଗାର ତୁ ହୋଇଛୁ । କେଉଁ ପିଲା ଯେମିତି ଆଉ ଗାଳିମନ୍ଦ ଖାଏନା ! ତୁ ଏକାବେଳେ ପୀର ହୋଇଛୁ । କାଲି ସାରରାତି ଦି ଆଖିର ପଲକ ପଡ଼ିନି ତା' ଜାଣିଛୁ ? ଭାବି ଭାବି ଚେହେରାଟା ଆଜି କ'ଣ ହୋଇଛି ଯା ଦେଖିଆ । ଇଏ ଆସିଛନ୍ତି ତେଜ୍ ଦେଖାଇ ଚାଲିଯିବାକୁ !

ବାବା ଏଥର ଭିତରେ ଢୁକନ୍ତି । ମୃଦୁସ୍ୱରରେ କହନ୍ତି, "ଆଃ, ଆଉ ବକାବକି କାହିଁକି ?

ମା ଧମକ ଦେଇ କହନ୍ତି, "ତୁମେ ଚୁପ୍‌କର । ଏତେ ଆଦର ଭଲ ନୁହଁ । ଟିକିଏ ଗାଳି ଖାଇଚି ବୋଲି ଘର ଛାଡ଼ି ଚାଲିଯିବ । ଏତେ ବଡ଼ ଆସ୍ପର୍ଧା !"

ଅଧିକାଂଶ ନିରୁଦ୍ଦେଶର ବିଜ୍ଞାପନର ଇତିହାସ ଏଇ !

ସୋମେଶର ସିଗାରେଟ୍‌ଟା ସେତେବେଳକୁ ଶେଷହୋଇ ଆସିଚି । ଏତେବେଳ ଧରି ସେ ମୋ କଥା ଶୁଣୁଥିଲା ବୋଲି ଆଦୌ ମନେ ହୁଏନାହିଁ ।

ଥରେ ମାତ୍ର ଟିକିଏ ହଲଚଲ ହୋଇ ବସିବାର ତାକୁ ଦେଖା ଯାଇନାଇଁ ।

ଟିକିଏ ବିରକ୍ତ ହୋଇ କହିଲି, "କଣ ହୋଇଚି ତମର, କହତ । ମିଛଟାରେ ହିଁ ମୁଁ ଖାଲି ବକି ଚାଲିଚି ।"

ସେ କଥାର କୌଣସି ଜବାବ ନ ଦେଇ ସୋମେଶ ହଠାତ୍ ପାଦ ଟେକି ସୋଜା ହୋଇ ବସି ସିଗାରେଟ୍‌ର ଅବଶେଷଟିକ ଫିଙ୍ଗିଦେଲା । ତାପରେ କହିଲା,—

"ତୁମେ ଜାଣନା । ଏଇ ବିଜ୍ଞାପନ ପଛରେ ଅନେକ ସତ ଟ୍ରାଜେଡ଼ି ଥାଏ ।"

"ତା ଥାଏ, ମୁଁ ଅସ୍ୱୀକାର କରୁ ନାଇଁ । କେବେ କେବେ ସତରେ ଯିଏ ଯାଏ ସିଏ ଆଉ ଫେରି ଆସେନାଇଁ ।"

ସୋମେଶ ଟିକିଏ ହସି କହିଲା, "ନା ମୁଁ ତା' କହୁନାଇଁ । ଫେରି ଆସିବାର ଭୟାନକ ଗୋଟାଏ ଟ୍ରାଜେଡ଼ି ମୁଁ ଜାଣେ ।"

ମୁଁ ଉତ୍ସୁକ ଭବରେ ତା ଆଡ଼କୁ ଅନାଇ କହିଲି, "ତାର ମାନେ ?"

"ଶୁଣ କହୁଚି ।"

ବାହାରେ ସେତେବେଳକୁ ବୃଷ୍ଟି ଆରମ୍ଭ ହୋଇ ଯାଇଛି । କାଚ ସାର୍ସିଗୁଡ଼ାକରେ ବାହାରର ରାସ୍ତାଘାଟ ଝାପ୍‌ସା ଅବାସ୍ତବ ଦେଖା ଯାଉଚି । ମନେ ହେଉଚି ଆମେ ଯେମିତି ସମସ୍ତ ପୃଥିବୀରୁ ବିଚ୍ଛିନ୍ନ ହୋଇ ଯାଇଛୁ ।

"ପୁରୁଣା ଖବର କାଗଜର ଫାଇଲ ଯଦି ଓଲଟାଇ ଦେଖ ତାହେଲେ ଦେଖିବ ବହୁ ବର୍ଷ ତଳେ ଏଠିକାର ଏକ ପ୍ରଧାନ ସମ୍ବାଦପତ୍ର ପୃଷ୍ଠାରେ ଦିନ ପରେ ଦିନ ଗୋଟାଏ ବିଜ୍ଞାପନ ବାହାରିଚି । ସେଟା ବିଜ୍ଞାପନ ନୁହେଁ, ଗୋଟାଏ ଇତିହାସ । ଦିନ ପରେ ଦିନ ଧାରବାହିକ ଭବେ ପଢିଗଲେ ଗୋଟାଏ ସମ୍ପୂର୍ଣ୍ଣ କାହାଣୀ ଯେମିତି ଜଣାଯାଏ । ମନେହୁଏ ଛାପା ଲେଖାରେ କାନ ପାତିଲେ ଯେପରି ଏକ କାତର ଆର୍ତନାଦ ଶୁଣାଯିବ । ସେ ବିଜ୍ଞାପନ ଅବଶ୍ୟ ନିରୁଦ୍ଦେଶର । ପ୍ରଥମେ ଦେଖାଯାଏ ମା'ର କାତର ଅନୁରୋଧ ପୁଅ ପ୍ରତି ଫେରି ଆସିବା ପାଇଁ । ଅସ୍ପଷ୍ଟ କରୁଣ ଭଷା, କିନ୍ତୁ ତା' ଭିତର ଦେଇ କି ବ୍ୟାକୁଳତା ଯେ ପ୍ରକାଶ ପାଇଛି ତାହା ନ ପଢ଼ିଲେ ବୁଝା ଯିବନାହିଁ । ଧୀରେ ଧୀରେ ମା'ର କାତର ଅନୁରୋଧ ହତାଶ ଦୀର୍ଘଶ୍ୱାସ ପରି ଖବର କାଗଜ ପୃଷ୍ଠାରେ

ଯେମିତି ମିଳାଇ ଯାଉଚି ଦେଖାଗଲା । ତା'ପରେ ଶୁଣାଗଲା ପିତାର ଗମ୍ଭୀର ସ୍ୱର, ଟିକିଏ ଯେମିତି କମ୍ପିତ ତଥାପି ଧୀର ଓ ଶାନ୍ତ । "ଶୋଭନ ଫେରିଆ । ତୋର ମା' ଶଯ୍ୟାଗତ । ତୋର କଣ ଟିକିଏ କର୍ତ୍ତବ୍ୟବୋଧ ନାହି ?"

ବିଜ୍ଞାପନ ତା'ପରେ କିନ୍ତୁ ବନ୍ଦ ହେଲାନାହିଁ । ପିତାଙ୍କ ସ୍ୱର ଭାରୀ ହୋଇ ଆସୁଚି ଯେମିତି । ମନେହେଲା ଗଳାଟା ରୁଦ୍ଧ । "ଶୋଭନ, ବର୍ତ୍ତମାନ ନ ଆସିଲେ ତୋ ମା'କୁ ଆଉ ଦେଖିପାରିବୁ ନାହିଁ ।"

କିନ୍ତୁ ଶୋଭନର ହୃଦୟ ଏଥିରେ ବୋଧେ ଗଳିଲା ନାହିଁ । ଦେଖାଗଲା ବିଜ୍ଞାପନ ସମାନ ଭାବରେ ଚାଲିଛି । ଖାଲି ପିତାର ଯାହା ନିଜକୁ ସମ୍ଭାଳିବାର କ୍ଷମତା ନାହିଁ । ଏକ୍ଷଣି ତାଙ୍କ ସ୍ୱରରେ କାତରତା—ଖାଲି କାତରତା ନୁହେଁ, ଏକାନ୍ତ ଦୁର୍ବଳତା । "ଶୋଭନ, ଜାଣନା ଆମର ଦିନ କିମିତିକା ବିତୁଛି । ଆସ, ଆଉ ଆମକୁ ଦୁଃଖ ଦିଅନା ।"

ବିଜ୍ଞାପନ କ୍ରମଶଃ ହତାଶ ହାହାକାର ହୋଇ ଉଠିଲା । ତାପରେ ଏକାବେଳେକେ ଗଲା ବଦଳି । ଆଉ ଶୋଭନ ଉଦ୍ଦେଶ୍ୟରେ କିଛି ଲେଖା ନାହିଁ । ସାଧାରଣ ଗୋଟିଏ ବିଜ୍ଞପ୍ତି ମାତ୍ର । ଏଇ ଧରଣର ଏଇ ଚେହେରାର, ଏଇ ବୟସର ଗୋଟିଏ ପୁଅପିଲା । ଆଜିକି ବର୍ଷେ ହେଲା ତାର ସନ୍ଧାନ ମିଳୁନାହିଁ । ସନ୍ଧାନ ଦେଇ ପାରିଲେ ପୁରସ୍କାର ମିଳିବ ।

ପୁରସ୍କାରର ପରିମାଣ କ୍ରମଶଃ ବଢ଼ିବାକୁ ଲାଗିଲା ଖବର କାଗଜ ପୃଷ୍ଠାରେ । "ଉଜ୍ଜଳ, ହୃଷ୍ଟପୁଷ୍ଟ ଗୋଟିଏ ଷୋଳ-ସତର ବର୍ଷର ପିଲା, ପରିଚୟ ଚିହ୍ନ ବେକ ଉପରେ କାନ ପାଖରେ ଗୋଟିଏ ଭଉଡ଼ି ଅଛି । ଜୀବିତ ବା ମୃତ ଏତିକି ଯଦି କେହି ସନ୍ଧାନ ଦେଇପାରେ ତେବେ ପୁରସ୍କାର ମିଳିବ ।"

ସୋମେଶ ଚୁପ କଲା କିଛିକ୍ଷଣପାଇଁ । ପାଣି ଛିଟାରେ ଝରକା ସାର୍ସିର କାଚ ଏକାବେଳେକେ ଝାପ୍‌ସା ହୋଇ ଉଠିଛି । ଘରଭିତରେ ଥଣ୍ଡା, ମନେହୁଏ ଗୋଟାଏ କମ୍ବଳ ଫମ୍ବଳ ଢାଙ୍କି ଦେଲେ ଭଲ ହୁଅନ୍ତା ।

କହିଲି,—"ଏତ ଗଲା ବିଜ୍ଞାପନର ଉପାଖ୍ୟାନ । ଅସଲ ବ୍ୟାପାରଟା ସମ୍ବନ୍ଧରେ କିଛି ଜାଣୁ କି ନାହିଁ ?"

"ଜାଣେ । ଶୋଭନକୁ ମୁଁ ଜାଣିଥିଲି । ସେ ଯେ କିଛି ଗୋଟାଏ ଭୟଙ୍କର ଅଭିମାନ ବଶରେ ଘରଛାଡ଼ି ଚାଲିଆସିଥିଲା ତା ମନେ କରନା । ଘର ଛାଡ଼ି ଚାଲିଯିବାଟା ତା ପକ୍ଷରେ ଏକାନ୍ତ ସହଜ । ବାହାନାଟା ଯାହା ହେଉନା

କାହିଁକି କିଛି ଗୋଟାଏ ହେଲେ ହେଲା । ପୃଥିବୀକୁ ଜଣେ ଦି'ଜଣ ଲୋକ ଆସନ୍ତି ଜନ୍ମରୁ ଏକ ନିର୍ଲିପ୍ତ ମନ ନେଇ । ବରଂ କୁହାଯାଇପାରେ ସେମାନଙ୍କର ମନ ତୈଳାକ୍ତ । ପିଚ୍ଛିଳ ବୋଲି ସେମାନେ କେଉଁଠି ଧରାପଡ଼ନ୍ତି ନାହିଁ । କିଛି ହେଲେ ସେମାନଙ୍କ ମନରେ ଦାଗ ରଖିପାରେ ନାହିଁ । ଶୁଣିକରି ଆଶ୍ଚର୍ଯ୍ୟ ହେବ ଯେ, ଖବରକାଗଜରେ ବିଜ୍ଞାପନ ଗୁଡ଼ିକର ସମ୍ବାଦ ଜାଣି ମଧ୍ୟ ସେଗୁଡ଼ିକ ଅନୁସରଣ କରିନାହିଁ । କେଉଁ ଦିନ ଆଗରେ ପଡ଼ିଥିଲା ହୁଏତ ତାପରେ ଅନାୟାସରେ ସେଗୁଡ଼ିକୁ ଭୁଲି ଯାଉଥିଲା । ଘର ଛାଡ଼ି ଯେଉଁସବୁ ଦୁଃଖ ଅସୁବିଧାରେ ଅନ୍ୟ କେହି ହେଲେ ହଇରାଣ ହୋଇ ପଡ଼ନ୍ତି ତାରି ଭିତରେ ହିଁ ସେ ପାଇଥିଲା ମୁକ୍ତିର ସ୍ୱାଦ । ଅନ୍ୟକେହି ଯାହା ଭାବୁ ପଛକେ ସେ କିନ୍ତୁ ଏକ ଛୋଟ ସଂସାରର ଆଦରର ପିଲା ହିସାବରେ କିଛି ଭାବିପାରି ନାହିଁ । କିନ୍ତୁ ବିଜ୍ଞାପନ ଯେଉଁଦିନ ହଠାତ୍ ବନ୍ଦ ହୋଇଗଲା, ସେଦିନ କେଜାଣି କାହିଁକି ତାର ଉଦାସୀନ ମନ ବି ବିଚଳିତ ହୋଇଗଲା । ବିଜ୍ଞାପନ ବନ୍ଦ ହୋଇଥିଲା ଟିକିଏ ଅସାଧାରଣ ଭାବରେ । କ୍ଳାନ୍ତ ଭାବରେ ଗ୍ଲ୍ୟୁଗ୍ଲ୍ୟୁ ହଠାତ୍ ତାହା ଥକିଯାଇ ନାହିଁ । ହଠାତ୍ ଯେମିତି ଏକ ଭୟଙ୍କର ଦୁର୍ଘଟଣାରେ ଖବରକାଗଜର ପୃଷ୍ଠା ସ୍ତବ୍ଧ ହୋଇଗଲା । ଶୋଭନର 'ଚେହେରା ବର୍ଣ୍ଣନା ବଦଳରେ ହଠାତ୍ ଦିନେ ଦେଖାଗଲା—

'ଶୋଭନ, ତୋ ମା ସଙ୍ଗରେ ତୋର ଆଉ ବେଧେ ଦେଖା ହେଲା ନାହିଁ । ସେ ଖାଲି ତୋରି ନାମ ହିଁ ନେଉଛନ୍ତି ବର୍ତ୍ତମାନ ।' ଯାପରେ ଆଉ କୌଣସି ବିଜ୍ଞାପନ ଦେଖାଗଲା ନାହିଁ ।

ପ୍ରାୟ ଦୁଇବର୍ଷ ସେତେବେଳକୁ ବିତି ଯାଇଛି । ଶୋଭନ ଦିନେ ହଠାତ୍ ଯାଇ ହାଜିର ହେଲା ତା ଗାଁରେ । ଗୋଟାଏ ବ୍ୟାପାରରୁ ଶୋଭନର ପ୍ରକୃତିର କିଛି ପରିଚୟ ମିଳିବ । ସେ କଥାଟା ଆଗରୁ କହିନି ।

ଶୋଭନ ସାଧାରଣ ମଧ୍ୟବିତ୍ତ ଘରର ପିଲାନୁହେଁ । ସଂପନ୍ନ କହିଲେ ମଧ୍ୟ ଠିକ୍ ବର୍ଣ୍ଣନା କରା ଯାଏନା । ସେମାନଙ୍କର ପ୍ରାଚୀନ ଜମିଦାରୀ ବହୁ ଦୁର୍ଦ୍ଦିନ ଭିତରେ ଆସି ମଧ୍ୟ ବିଶେଷ କ୍ଷୟ ପାଇ ନାହିଁ । ଶୋଭନ ହିଁ ତାର ଏକମାତ୍ର ଉତ୍ତରାଧିକାରୀ ।

ସୋମେଶ ଟିକିଏ ହସି, କୌଣସି ଉତ୍ତର ନ ଦେଇ କହି ଚାଲିଲା—

ଦୁଇ ବର୍ଷର ସ୍ୱାଧୀନ ଜୀବନର ଦୁଃଖକଷ୍ଟ ଦେହରେ ନ ମାଖିଲେ ମଧ୍ୟ ତାର ଛାପ ଶୋଭନ ଉପରେ ସେତେବେଳକୁ ବେଶ ପଡ଼ିଚି । ଦୁଇ ବର୍ଷରେ ସେ ଅନେକ ପରିବର୍ତ୍ତିତ ହୋଇଚି । କିନ୍ତୁ ତାବୋଲି ସେମାନଙ୍କ କର୍ମଚାରୀମାନେ ତାକୁ ଚିହ୍ନି ପାରିବେ ନାଇଁ, ଏତେ ଦୂର ଆଶଙ୍କା କରି ନାହିଁ ।

ଶୋଭନ ଗାଁରେ ପହଞ୍ଚି ସିଧା ଘର ଭିତରେ ଢୁକିଥିଲା । ପ୍ରଥମେ ତାକୁ ବାଧାଦେଲେ ତାଙ୍କର ପୁରୁଣା ନାୟେବ ବାବୁ ।

"କାହାକୁ ଚାହାନ୍ତି ?"

ଶୋଭନ ହସି କହିଲା—"କାହାକୁ ନାଇଁ । ଘରକୁ ଯିବାକୁ ଚାହେଁ ।"

ନାୟେବ ମହାଶୟ ତା ଆଡକୁ କିଛିକ୍ଷଣ ତୀକ୍ଷ୍ଣ ଦୃଷ୍ଟିରେ ଅନାଇ ତାପରେ ଟିକେ ସ୍ମିତହାସ୍ୟରେ କହିଲେ 'ଓଃ କିନ୍ତୁ ଏତେ ଜଲଦି କାହିଁକି ? ଆସନ୍ତୁ ବାହାର ଘରେ ଟିକିଏ ବିଶ୍ରାମ କରନ୍ତୁ ।'

ଶୋଭନ ଅବାକ୍ ହୋଇ କହିଲାଃ— ସେ କଣ ? କଣ ହୋଇଚି ନାୟେବ ମହାଶୟ ?

"ନା, ନା, ହୋଇନି କିଛି ।"

"ମା ଭଲ ଅଛନ୍ତି ?' ଶୋଭନର ପ୍ରଶ୍ନରେ ଏଥର ବ୍ୟାକୁଳତା ଥିଲା ।

ନାୟେବ ମହାଶୟ ସେହିପରି ଅଦଭୁତ ହସ ହସି କହିଲେ,—'ଭଲ-ଅଛନ୍ତି ହଁ । ଆସନ୍ତୁ ମୋ ସଙ୍ଗରେ ।' ଶୋଭନ ତଥାପି କହିଲା" କିନ୍ତୁ ଭିତରକୁ ଗଲେ ତ ହୁଏ ।' ନାୟେବ ମହାଶୟ ଟିକିଏ ଯେପରି କଠିନ ସ୍ୱରରେ କହିଲେ—' ନା ହୁଏନା, ଆପଣ ମୋ ସାଙ୍ଗରେ ଆସନ୍ତୁ ।'

ଶୋଭନ ରୀତିମତ ବିମୂଢ଼ ଅବସ୍ଥାରେ ପୁଣି ନାୟେବ ବାବୁଙ୍କୁ ଅନୁସରଣକରି ବାହାର-ଘରେ ଯାଇ ପହଞ୍ଚିଲା । ଦି ବର୍ଷ ଭିତରେ ସେଠି କିଛି କିଛି ପରିବର୍ତ୍ତନ ହୋଇଛି । ପୁରୁଣା ଗୁମାସ୍ତା ଆଉ ନାହାନ୍ତି । ନୂଆ ଦି'ଜଣ ଲୋକ ସେଠି ବସି ଖାତାପତ୍ର ଲେଖୁଛନ୍ତି । ତାର ପରିଚିତ ବୃଦ୍ଧ ଖାଜାଂଚି ମହାଶୟଙ୍କୁ ଦେଖି ସେ ଟିକିଏ ଆଶ୍ୱସ୍ତ ହେଲା ।

ନାୟେବ ବାବୁ ତାଙ୍କୁ ଗୋଟିଏ ଚେୟାରରେ ବସିବାକୁ ଉଦ୍ଦେଶ୍ୟ କରି କହିଲେ—'ଇଏ ଭିତରକୁ ଯିବାକୁ ଚାହାନ୍ତି ।'

ଶୋଭନ ପାଖରେ ନାୟେବ ବାବୁଙ୍କ କଣ୍ଠସ୍ୱର ଟିକିଏ କିମିତି

ଅସ୍ୱାଭବିକ ମନେ ହେଲ । ଖାଜାଂଚି ବାବୁ ନାକ ଉପର ଚଶମାଟାକୁ ଟିକିଏ ଆଙ୍ଗୁଠିରେ ଟେକି କହିଲେ —"ଓଃ ଏଇ ଆଜି ଆସିଛି ବୋଧେ !"

'ହଁ, ଏଇମାତ୍ର ।'

ଶୋଭନ ଏଥର ଅଧୀରଭବରେ କହି ଉଠିଲ—"ଆପଣମାନେ କଣ କହିବାକୁ ଚାହାନ୍ତି ସ୍ପଷ୍ଟ କରି କହନ୍ତୁ । ମାଙ୍କର କଣ କିଛି ହୋଇଛି ? ବାବା କିମିତି ଅଛନ୍ତି ?"

ଘରିଧାରର ସବୁ କେଟୁଟା ଦୃଷ୍ଟି ତା ଉପରେ ନିବଦ୍ଧ । କିଛିକ୍ଷଣ ପାଇଁ ସମସ୍ତେ ନୀରବ । ତାପରେ ନାୟେବ ବାବୁ କହିଲେ— ସେମାନେ ଭଲରେ ଅଛନ୍ତି କିନ୍ତୁ ବର୍ତମାନ ତ ଆପଣଙ୍କ ସଙ୍ଗରେ ଦେଖା ହେବ ନାଇଁ ।

ଏଥର ଶୋଭନ କ୍ରୁଦ୍ଧ ହୋଇ ଉଠିଲ— "କାହିଁକି ଦେଖା ହେବ ନାଇଁ ? ଆପଣମାନଙ୍କର କଣ ମୁଣ୍ଡ ଖରାପ ହୋଇଛି ? ମୁଁ ଗଲିଲି ।"

ଶୋଭନ ଉଠିଲ । କିନ୍ତୁ ନାୟେବ ବାବୁ ଦରଜା ଆଡ଼କୁ ଟିକିଏ ଆଗେଇ ଆସି କହିଲେ,— ଦେଖନ୍ତୁ, ମିଛେ ମିଛେ ଝାମେଲ କରି ଲଭ ନାଇଁ । ସେଥିରେ ଫଳହେବ ନାଇଁ କିଛି ।"

ହଠାତ୍ ଶୋଭନ ପାଖରେ ସମୁଦାୟ ଘଟଣାଟା ଭୟଙ୍କର ଭବେ ସ୍ପଷ୍ଟ ହୋଇ ଉଠିଲ, ବିସ୍ମିତ ଭୀତ କଣ୍ଠରେ କହିଲ—ଆପଣମାନେ କ'ଣ ମୋତେ ଚିହ୍ନି-ପାରୁ ନାହାନ୍ତି ?

"ମୁଁ ଶୋଭନ,—ବୁଝିପାରୁ ନାହାନ୍ତି, ମୁଁ ଶୋଭନ"। ଟିକିଏ ରହନ୍ତୁ, ମୁଁ ଆସୁଛି । ପାଖ ଘରକୁ ଯାଇ ଟେବୁଲର ଗୋଟିଏ ଡ୍ରୟାର ଖୋଲି ସେ ଗୋଟିଏ ଜିନିଷ ଆଣି ଶୋଭନ ହାତରେ ଦେଲେ, ତା'ରି ଗୋଟିଏ ପୁରୁଣା ଫଟୋ, ସାଧାରଣ- ଭବରେ ଉଠା, ବର୍ତମାନ ଅସ୍ପଷ୍ଟ ହୋଇ ଆସୁଛି ଟିକିଏ ।

ନାୟେବ ବାବୁ କହିଲେ,—"ଚିହ୍ନନ୍ତି ଯାକୁ?

ଶୋଭନ ବିସ୍ମିତ କଣ୍ଠରେ କହିଲ, 'ଏତ ମୋରି ଫଟୋ । ଦେଖନ୍ତୁ ଭଲ କରି ଆପଣମାନେ ମିଳାଇ । ନାଃ,ଯେ ଅସହ୍ୟ ।'

ବାଳଗୁଡ଼ାକୁ ମୁଠା ମୁଠା କରି ସେ ବସି ପଡ଼ିଲ ।

ନାୟେବ ବାବୁ ତା ପାଖରେ ବସି କହିଲେ—'ଦେଖନ୍ତୁ, କିଛି ମନେ କରିବେନାଇଁ । ଆପଣଙ୍କ ସଙ୍ଗରେ ଟିକିଏ ମେଳ ଅଛି ସତ, କିନ୍ତୁ ଯାପୂର୍ବକୁ

ଆଉ ଦ'ଜଣଙ୍କ ସଙ୍ଗେ ମଧ୍ୟ ଥିଲ । ଉତୁଲି ପର୍ଯ୍ୟନ୍ତ । ଆମକୁ ଏ ସବୁ ନେଇ ଗୋଳମାଳ କରିବାକୁ ମନା ଅଛି । ଆମେ କିଛି ହ୍ୟାଙ୍ଗାମା କରିବୁ ନାହିଁ । ଆପଣ ବର୍ତ୍ତମାନ ଗ୍ଲଲି ଯାଇ ପାରନ୍ତି ।'

ଶୋଭନ ଉଦ୍‌ଭ୍ରାନ୍ତ ଭବେ ସମସ୍ତଙ୍କ ମୁହଁକୁ ଗ୍ରହିଁ ଦେଖଲ । ସମସ୍ତଙ୍କ ଦୃଷ୍ଟିରେ ଅବିଶ୍ୱାସ ।

କାତରଭବେ କହିଲ—"ଥରେ ଖାଲି ମୁଁ ମା-ବାବାଙ୍କ ସଙ୍ଗରେ ଦେଖା କରିବି । ଆପଣମାନେ ବିଶ୍ୱାସ କରୁ ନାହାଛି । କିନ୍ତୁ ଥରେ ମୋତେ ଦେଖା କରିବାକୁ ଦିଅନ୍ତୁ ।''

ନାୟେବ ବାବୁ ହତାଶ ଭବେ ହାତରେ ଭଙ୍ଗି କରି କହିଲେ,—''ଶୁଣନ୍ତୁ ସାତଦିନ ଆଗରୁ ଶୋଭନ ମରିଯାଇଛି । ତା ମୃତ୍ୟୁ ଖବର ଆମେ ପାଇଛୁ ।"

ଶୋଭନ ଏଇ ଅବସ୍ଥାରେ ନ ହସି ରହି ପାରିଲ ନାହିଁ । କହିଲ—"କେମିତି ସେ ମଲ ?"

ତା' କଣ୍ଠସ୍ୱରର ବିଦ୍ରୂପ ଉପେକ୍ଷା କରି ନାୟେବ ବାବୁ କହିଲେ—''ମଟରି ଗାଡ଼ିଚ୍ଚପା ପଡ଼ି ଅପଘାତରେ । ନାମ ଧାମ ପରିଚୟ ପାଇବା ସମ୍ଭବ ହୋଇ ନାହିଁ । କିନ୍ତୁ ଯେଉଁମାନେ ଦୁର୍ଘଟଣା ସମୟରେ ଉପସ୍ଥିତ ଥିଲେ ସେମାନଙ୍କ ଭିତରୁ କେତେଜଣ ଖବରକାଗଜରେ ଆମ ବିଜ୍ଞାପନ ଦେଖି ଆମକୁ ସବୁ କଥା ଜଣାଇଛନ୍ତି । ହସପିଟାଲରେ ଆମେ ଖବର ନେଇଛୁ । ସେଠାର ଡାକ୍ତରଙ୍କ ବର୍ଣ୍ଣନା ମଧ୍ୟ ଆମ ସଙ୍ଗେ ମିଳିଯାଇଛି ।''

ଶୋଭନ ଏତେବେଳେ କଣ କରନ୍ତା ଜଣା ଯାଏନା, କିନ୍ତୁ ସେଇ ସମୟରେ ଦେଖାଗଲ ତାର ବାବା ଘରୁ ବାହାରୁଛନ୍ତି । ମଣିଷ ସଙ୍ଗରେ ଝଡ଼ରେ ଭଙ୍ଗିପଡ଼ିଥିବା ଗଛର ସାଦୃଶ୍ୟ ହୋଇପାରେ । ସାହିତ୍ୟର ଏ ଉପମା ପଢିବି ତାର କେବେ ତାହା ମନେ ହୋଇନାହିଁ । ତାଙ୍କର ଗ୍ଲଲିବାର ଗତିରେ ମଧ୍ୟ ଯେପରି ଭୟଙ୍କର ଦୁର୍ଘଟଣାର ପରିଚୟ ରହିଛି ।

ସମସ୍ତେ କିଛି ବୁଝିବା ଆଗରୁ ଶୋଭନ ଦୌଡ଼ି ଘର ଭିତରକୁ ଛୁଟିଗଲ । ନାୟେବ ଓ କର୍ମଗ୍ରରୀ ବ୍ୟାପରଟା ଠଉରାଇ ଯେତେବେଳେ ତାର ପିଛାନେଲେ ସେତେବେଳେ ସେ ବାବାଙ୍କ ପାଖରେ ପହଞ୍ଚିଯାଇଛି ।

"ବାବା''।

ବୃଦ୍ଧ ଅଟକି ଯାଇ ଠିଆହେଲେ । ସେ ମୁଖର ବେଦନାମୟ ବିମୂଢ଼ତା

ଶୋଭନ ବୁକୁରେ ଛୁରି ପରି ବିନ୍ଧିଗଲା ।

"ବାବା ମୋତେ ଚିହ୍ନିପାରୁନ !"

ବୃଦ୍ଧ ସ୍ଖଳିତ ପଦରେ ଏକ ପାଦ ଆଗେଇ ପୁଣି ଥମିଗଲେ । ପ୍ରବଳ ଭବାବେଗ ତାଙ୍କର ବର୍ଧକ୍ୟରେ ଶିଥିଳ ମୁହଁକୁ ବିକୃତ କରି ଦେଇଚି ।

ବୃଦ୍ଧ କଂପିତ ହାତ ଉଠାଇ କଂପିତ ସ୍ୱରରେ କହିଲେ—"କିଏ ?"

ନାୟେବ ମହାଶୟ ଶୋଭନ କାନ୍ଧରେ ଦୃଢ଼ଭବେ ହାତରଖି କହିଲେ "ନା କେହି ନୁହେ । ସେଇ ସେଥରପରି–ୟ କୁ ନେଇ ତିନିଥର ହେଲା ।"

ଜଣେ କର୍ମଚାରୀ କହିଲେ—"ଆମେ ଆସିବାକୁ ଦେଇ ନଥିଲୁଁ । ହଠାତ୍ ଆମ ହାତରୁ ଖସି—"

ବୃଦ୍ଧ ତାକୁ ଅଟକାଇ କହିଲେ—"କିଛି କହନା, ଚାଲି ଯିବାକୁ ଦିଅ ।"

ବୃଦ୍ଧ ଶେଷ ଥର ଶୋଭନ ଆଡ଼କୁ କାତରଭବେ ଚାହିଁ ପୁଣି ଘର ଆଡ଼କୁ ଫେରିଲେ ।

ଶୋଭନ ସ୍ତବ୍ଧ ହୋଇ ଛିଡ଼ା ହୋଇ ରହିଲା । ନାୟେବ ବାବୁ ତାକୁ କଣ କହୁଥିଲେ । ଅନେକ ସମୟ ଯାଏ କିଛି ଶୁଣି ପାରିନଥିଲା । କେତେବେଳେ ସେ ଯେ ଆସ ପୁଣ ବାହାର ଘରେ ବସିଚି ତାହା ବି ତାର ହୋସ୍ ନାହିଁ ।

ଆଚ୍ଛନତା ଦ୍ୱାର କଟିଲା କ୍ଷଣକ ପରେ । ଭିତର ଘରୁ ଜଣେ କର୍ମଚାରୀ ଆସି ନାୟେବ ମହାଶୟଙ୍କୁ କଣ କହୁଚି । ନାୟେବ ମହାଶୟ ତାକୁ କଣ କହୁଛନ୍ତି କିଛି ଶୁଣାଯାଉନାହିଁ । ନା, ଏଥର ବୁଝା ପଡୁଚି । ନାୟେବ ମହାଶୟଙ୍କ ହାତରେ ଅନେକ ଗୁଡ଼ାଏ ଟଙ୍କାର ନୋଟ୍ । କଣ୍ଠସ୍ୱରରେ ତାଙ୍କର ମିନତି ।

ଶୋଭନକୁ ଗୋଟିଏ କାମ କରିବାକୁ ହେବ । ଘରର କର୍ତ୍ତା ମୁମୂର୍ଷୁ ପୁଅର ମୃତ୍ୟୁ ସଂବାଦ ସେ ଶୁଣି ନାହାନ୍ତି । ତାଙ୍କୁ କିଛି ଜଣାଇ ଦିଆ ହୋଇ ନାହିଁ । ବର୍ତମାନ ମଧ୍ୟ ସେ ତାକୁ ଦେଖିବା ଆଶରେ ଅଛନ୍ତି । ସେଥିପାଇଁ ବୋଧହୁଏ ସେ ମୃତ୍ୟୁରେ ଶାନ୍ତି ପାଇ ପାରୁ ନାହାନ୍ତି ।

ଶୋଭନକୁ ତାଙ୍କର ହଜିଲାପୁଅ ହୋଇ ଦେଖା ଦେବାକୁ ହେବ । ମୁମୂର୍ଷୁର ନିଷ୍ପ୍ରଭ ଦୃଷ୍ଟିରେ କିଛି ଧରା ପଡ଼ିବ ନାହିଁ । ହଜିଲା ପୁଅ ସଙ୍ଗରେ ତାର ସତରେ ବହୁତ ସାଦୃଶ୍ୟ ଅଛି । ମୃତ୍ୟୁ–ପଥଯାତ୍ରୀକୁ ଏଇ ଶେଷ

ସାନ୍ତ୍ୱନାଟିକକ ଦେବାପାଇଁ ଜମାଦାର ନିଜେ ତାକୁ କାତର ଅନୁରୋଧ ଜଣାଇଛନ୍ତି । ସେଥିରେ ତାର କିଛି କ୍ଷତି ନାହିଁ ।

ନାୟେବ ବାବୁ ନୋଟ୍ ବିଡ଼ାଟା ଶୋଭନ ହାତରେ ଗୁଞ୍ଜି ଦେଲେ ।

ସୋମେଶ ଚୁପ କଲା । କିଛି ସମୟ ବାହାରର ବୃଷ୍ଟି ଛଡ଼ା ଅନ୍ୟ କୌଣସି ଶବ୍ଦ ନାହିଁ । ମୁଁ ଅବଶେଷରେ କହିଲି – " ସୋମେଶ, ତୋ କାନ ପାଖରେ ଗୋଟାଏ ଭଉଁରୀ ଅଛି । "

ସୋମେଶ ହସି କହିଲା , – "ସେଥିପାଇଁ ତ ଗଳ୍ପଟା ବନାଇବା ସହଜ ହେଲା । "

କିନ୍ତୁ କେଜାଣି କାହିଁକି ଶୀତ ବର୍ଷାଦର ଏଇ ଶୀତଳ ପ୍ରାୟାନ୍ଧକାର ଅପରାହ୍ଣରେ ତାର ହସକୁ ବିଶ୍ୱାସ କରିବାର ପ୍ରବୃତ୍ତି ମୋର ହେଲା ନାହିଁ ।

# ଧସ*

## ସତୀନାଥ ଭାଦୁଡ଼ି

ସେଇ ବୁକୁଲ୍ଲ ସେଟାକୁ ଜୋର କରି ଠାଣି ନେଇ ଯିବାକୁ ହୋଇଥିଲା ପରସାଦୀକୁ, ନଇରେ ଫିଙ୍ଗି ଦେବାପାଇଁ । ଏପରି ଭବେ ଯିଏ ଯାଏ ତାଙ୍କୁ ପୋତିବା ଠିକ୍ ନୁହେଁ । ତେଣୁ ନଦୀ ଗର୍ଭରେ ଫିଙ୍ଗା ।

ଘର ଭିତରେ ଥିବା ବେଳେ ପରସାଦୀ କାନ୍ଦି ନାଇଁ । ଆଖି କଣରେ ପାଣି ଆସିଲେ, ମୁହଁ ଫେରାଇ ଲୁଚେଇ ପୋଛି ଦେଉଥିଲା, କାଳେ ମନଚନିୟା ଦେଖି ପକାଇବ ସେଇ ଭୟରେ । ମନଚନିୟା ମୁହଁକୁ ସେ ଇଆ ଭିତରେ ଥରେ ହେଲେ ଅନାଇ ନାଇଁ । ଦେଖାଦେଖି ହେଲେ ଲଜ୍ଜା ପାଇବ । ଏଇ ସବୁ ସମୟରେ କଣ କାହାକୁ ଅନାଇ ହୁଏ ! ଏକେ ତ ଶୋକରେ, ଲଜ୍ଜାରେ ମରି-ରହିଚି ମନଚନିୟା; ଏତେବେଳେ କଣ ତା'ର ଦୁଃଖର ଭର ବଢ଼ାଇବା ଉଚିତ୍ ! ପରସାଦୀ କାନ୍ଦିଥିଲା ଘରର ବାହାରକୁ ଯାଇ ।

ଏତେଦିନ ଧରି ସମସ୍ତେ ଜାଣିଥିଲେ ଯେ ତା ସ୍ତ୍ରୀର ପିଲାଝିଲା ହେବ ନାଇଁ । କେତେ ମାଦୁଲି, ମନାସ, ଔଷଧ ପତ୍ର ଏଥିପାଇଁ । ମଲାପରେ ମୁହଁରେ ପାଣିଟୋପେ ପାଇବାର ଆକାଂକ୍ଷା କାହାର ନାହିଁ ? ତା'ପରେ ଯେବେଠୁ ଜାଣିଲା ଯେ ଭଗବାନ ମୁହଁ ଟେକି ଗ୍ଚହିଁଛନ୍ତି, ତେବେଠୁ ଅଧୀର ହେଇ ଦିନ ଗଣୁଚି । କଣ କରିବ ଭବି ପାରେନା ମନଚନିୟାକୁ ନେଇ ! କେତେ ଜିଜ୍ଞାସା କଣ ଖାଇବାକୁ ଭଲ ଲଗେ ? ପୁଅ ହେବ ନା ଝିଅ ହେବ ? କାହାପରି ଦେଖି-ବାକୁ ହେବ ? ହଲଚଲ ହେଉଚି ନା କଣ । ଆଉ କେତେ ଜଳ୍ପନା-କଳ୍ପନା । ଗ୍ରମାରଣୀ ସାଙ୍ଗରେ କେତେ କଥା ଫିସ୍ ଫିସ୍ କରି । ସାହି ଲୋକେ ତାର ଆଧିକ୍ୟ ଦେଖି ହସା ହସି କରୁଛନ୍ତି ।

*ଧସ = ଯେଉଁ ସ୍ଥାନରୁ ମାଟି ଧସିଯାଏ

......ତାପରେ ବୁଧକୁ ବୁଧ ଚୌଦ, ବୃହସ୍ପତି, ଶୁକ୍ର, ଶନି...ଏ ସତର ଦିନ ତ ହାତରେ ସ୍ୱର୍ଗ ପାଇଥିଲ । ସତର ଦିନ ପରେ ଯାହାର ଜିନିସ ସେ ଟାଣି ନେଲେ ପାଖକୁ । ମଣିଷ କେତେ ଟିକେ କଣ ବା କରିପାରେ । ...ଯିବ ନାହିଁ କାହିଁକି–ଯାଏ । କେତେ ରକମରେ ଯାଏ କେତେ ଲୋକଙ୍କ ପିଲା । ...ଗୁଡହାଣ୍ଡି ଭିତରେ ବୁଡ଼ି ପିଲା ଯିବାର ଶୁଣିଚି, ଗରମ ଦୁଧ କଡ଼ା ଭିତରେ ପଡ଼ି ପିଲା ଯିବାର ଦେଖିଚି । କିନ୍ତୁ ଏ ରକମଭବେ ଯିବା ! ...ଆହାରେ ଏଇତ ଏକ ରତ୍ତି ରକ୍ତର ଦାଗ । ...ଏକାବେଳକେ ନୀଳ ହୋଇ ଯାଇଥିଲା । ନିଶ୍ୱାସ ନେବାକୁ ପ୍ରାଣପଣ ଚେଷ୍ଟାରେ ଆଖି ଦୁଇଟା ବଡ଼ ହୋଇ ଯେମିତି ଛିଟିକି ବାହାରି ଆସିବାକୁ ଚାହୁଁଥିଲ । ...ଆହାରେ !

...ଘୁଟୁଥିଲା ବୋଧହୁଏ । ...ଭୟ ପାଇବାକୁ ଶିଖିବା ଆଗରୁ, ବିପଦ କଣ ତାହା ଜାଣିବା ଆଗରୁ ମାଆ ବୁକୁରୁ ଧସ ଖସିଲା ହଠାତ୍ । ଜଗଦ୍‌ବଳ ନଦୀ ତୀରର ବୁକୁଚାପା ଅନ୍ଧାର । ସେ ଅନ୍ଧାର ମଧ୍ୟ ଦେଇ ଶେଷ କାନ୍ଦଣା ଟିକକ ବି ବାହାରି ପାରି ନାଇଁ ।......

ମନଚନିୟା ଜାଣି ପାରିଲା ଅନେକ ପରେ । କେତେ ସମୟ ପରେ କିଏ ଜାଣେ ।... ସେଠି ଥଣ୍ଡା ଥଣ୍ଡା ଲାଗୁଛି କାହିଁକି ?–କେବେ କେବେ ଏମିତି ହୁଏ ସେ ଜାଗାରେ । ଘୋର ନିଦରେ କମ୍ବଳଟା ଦିହ ଉପରେ ଭଲ କରି ଟାଣି ଦେବା ସମୟରେ ବି ମନେ ପଡ଼ିନି, ଅନ୍ୟ ଏକ ପ୍ରାଣୀର କଥା । ଏମିତିକା ନିଦ କାତର ସେ । ......ତଥାପି ଏ ଜାଗାଟା ଥଣ୍ଡା ଥଣ୍ଡା ଲଗୁଚି କାହିଁକି ? 'କାଳୀସ୍ଥାନ'ରେ ଘଣ୍ଟା ବାଜୁଚି । ଭୋର ହେବାକୁ ଆଉ ଡେରି ନାଇଁ । ଧଡମଡ଼ କରି ଉଠି ବସିଥିଲ ସେ । ......କଛା ଭିଜିଲେ ତ ଏମିତି ଥଣ୍ଡା ଥଣ୍ଡା ଲଗେନା କମ୍ବଳ ତଳେ । ......ଏ ଯେମିତି ଅନ୍ୟ ରକମ, ଅନ୍ୟ ରକମ ଲଗୁଚି । କଂପି ଉଠିଥିଲ ଛାତି । ଘୁରିଟା ଡ଼ିଆସିଲୀ କାଠି ଖରଚ ହେଲ ଲଣ୍ଠଣଟା ଜଳାଇବାକୁ । ଲଣ୍ଠଣର ଶିଖା ବଢାଇ ବିଛଣା ଆଡ଼କୁ ଅନାଇବା ସଙ୍ଗେ ସଙ୍ଗେ ମନର କ୍ଷୀଣ ଆଶା ଟିକକ ବି ଲିଭିଗଲ । ତା ଚିତ୍କାରରେ ପରସାଦୀ ଉଠେ । ......କିନ୍ତୁ ତାର ଏହି ଦେହ ଟିକକରେ କଣ ଉତ୍ତାପ ଫେରଇ ଅଣାଯାଇ ପାରିବ ନାଇଁ ! କିଛି ବୋଲି କିଛିଂ ହେଲ ନାଇଁ । ସତର ଦିନର ମାଂସ ପିଣ୍ଡଟାକୁ ବୁକୁର ଜନ୍ତାରେ ଚକଟି ପେଷି ଦେବାକୁ ତାର ଭୟନାଇଁ ମନଚନିୟାକୁ । ଆଖି ଲୁହରେ ଏହି ବୁକୁହିଁ ଭସେ ।

ମନଚନିୟାର ବୁଢ଼ୀ କୁକୁରଟା ଖଣ୍ଡେଦୂର ପରସାଦୀ ସଙ୍ଗରେ ଯାଇ ଫେରି ଆସିଥିଲା । ଆସି ବସିଥିଲା ମନଚନିୟା ପାଖରେ । ରଙ୍ଗ କଳା, ତେଣୁ କୁକୁରଟାର ନାମ କାରିୟା । କାରିୟା ଚାହିଁ ଚାହିଁ ଦେଖୁଛି ତାର ଜଳଭରା ଆଖି ଆଡ଼କୁ, ଖୋଲା ବାଳର ବୋଝ ଆଡ଼କୁ । ଠିକ୍ ଘର ଲୋକ ପରି ।

ମନଚନିୟା କୁକୁରଟାକୁ ନେଇ ଆସିଥିଲା ବାପଘରୁ ପୁଆଣି ହୋଇ ଆସିବାବେଳେ । ଠିକ୍ ନେଇ ଆସିନାହିଁ, ନିଜ ମନକୁ କାରିୟା ଚାଲି ଆସିଥିଲା ତା ସାଙ୍ଗରେ ! ସେ କଣ ଆଜିର କଥା ! ତାର ବାହାଘର ହୋଇଥିଲା ଚାରିବର୍ଷ ବେଳେ, ପୁଆଣି ହୁଏ ପନ୍ଦର ବର୍ଷ ପରେ । ପରସାଦୀ ପୁଆଣି ଟଙ୍କା ଜମାଇ, ଶଶୁର ପାଖକୁ ବାରବାର ଖବର ପଠାଏ । ଶଶୁର କିଛି ଅମଳ ଦିଏନା; କେବଳ ଡେରି କରେ । ଲୋକେ ଦଶକଥା କହନ୍ତି ଏଥିପାଇଁ । ମନଚନି ସେତେବେଳେ ଗ୍ରାମର ତହଶୀଲଦାର ସାହେବଙ୍କ ଘରେ ପିଲାଝିଲା ରଖିବାର ଧାଈ କାମ କରୁଥାଏ । ଲୋକେ କହନ୍ତି ବାପ ଝିଅର ରୋଜଗାର ଖାଇବାକୁ ଚାହେଁ—ଆଉ ତା ଖାଲି ଝିଅରି ଦରମାର ରୋଜଗାର ନୁହେଁ । ଶୁଣି ପରସାଦୀର ରକ୍ତ ଗରମ ହୋଇ ଉଠେ । ବୟସର ଗରମ, ତା ଉପରେ ଟଙ୍କାର ଗରମ । ତେଲ ଦେଇ ଲଠି ପକାଇ ସେ ଯାଏ ଶଶୁର ପାଖକୁ । ଝଗଡାଝାଟି କରି, ଲଠି ଚଳାଇ ସେ ନିଜର ହକ୍‌ର ବୋହୂକୁ ନେଇଆସେ ସେଠାରୁ ।

ଗାଁ ବାହାରେ ଏଂଡ଼ିଖେତ ପାଖରେ ଯେତେବେଳେ ଶଗଡ ଆସି ପହଞ୍ଚେ, ସେତେବେଳେ ପ୍ରଥମେ ନଜରରେ ପଡ଼ିଲା ଯେ, କଳା କୁକୁରଟା ସଙ୍ଗେ ସଙ୍ଗେ ଆସୁଚି ।

"କାହାର କୁକୁର ରେ ।"

ଏଇ ହେଉଚି ପ୍ରଥମ କଥା ପରସାଦୀର ମନଚନିୟା ସଙ୍ଗରେ ।

"ମୋର"।

ଅତି ଭୟେ ଭୟେ କୁହା ।

"ତୋର"।

ମନଚନିୟାର ଚେହେରଟା ବିଶାଳ ହେଲେ କଣ ହେବ । ଭୟ ଲାଗେ । ବଡ଼ା ସ୍ୱାମୀ ! ଲଢ଼େଇ କରି ତାକୁ ନେଇ ଯାଉଚି । କିଛିକ୍ଷଣ ଇତସ୍ତତ

କରି ଜିଜ୍ଞାସା କରେ—

"ଉଠାଇ ନିବ ଏଟାକୁ ?"

"ରହି ପାରିବ ତ ।"

"ହଁ ପାରିବ ।"

ଚଳନ୍ତା ଗାଡ଼ିରୁ କୁକୁର ଛୁଆଟାକୁ ଟାଣି ଉପରକୁ ଉଠାଇବାକୁ ଚେଷ୍ଟା କରିବାରୁ ସ୍ୱାମୀ କହେ—"ଆହା କରୁଚୁ କଣ ? ତୁ କଣ ଏତେ ଝୁଙ୍କି ପାରିବୁ ? ଆଉ ଟିକିଏ ଏମିତି ଆଡ଼କୁ ମାଡ଼ି ବସ ।"

ଦିହର ଲୁଗାକୁ ସମ୍ଭାଳି ନେଇ ମନଚନିୟା କୁକୁରଟାକୁ ଟାଣି ଗାଡ଼ିରେ ଉଠାଏ । ଦେଖାଗଲା ଦେଲ ସିଏ ମୋଟା ହେଲେ ବି ସେ ଅକାମୀ ନୁହେଁ । କେହି ତାର ମୋଟାସୋଟା ଚେହେରକୁ ନେଇ କିଛି କହିଲେ ହିଁ କୁଣ୍ଠିତ ହୋଇ ସେ ଦିହର ଲୁଗାପଟା ସମ୍ଭାଳି ନିଏ, ଦେହଭର ଲୁଗ୍ୱାଇବା ପାଇଁ । ପ୍ରଥମ ଦିନହିଁ ପରସାଦୀ ଏହା ଲକ୍ଷ୍ୟ କରିଥିଲା ।

"କେତେ ଓଜନ ମୁଣ୍ଡରେ ନେଇ ଘୁରି ପାରୁ ?"

"ମହଣେ ତ ପାରିବି"।

ଏକ ମହଣର ବୋଝ ମୁଣ୍ଡରେ ନେଇ ମନଚନିୟା ଜଣାଏ ଯେ, ସେ ପାରିବ । ଆଖି ଆଉ ମୁହଁରେ ଅପ୍ରସ୍ତୁତର ଭବ ସୁସ୍ପଷ୍ଟ । କଥାବାର୍ତ୍ତାରେ ସାବଧାନ ହୋଇଯାଏ ପରସାଦୀ ସେଇଠାରୁ । "ହରଦା—ହାଟ ଆମ ଏଠୁ ତିନିକୋଶ । ସେଠାରୁ ପାଇକାରି ଦରରେ ତରି—ତରକାରୀ କିଣି ଆଣି ସହରରେ ବିକ୍ରି କରୁଁ ଆମେ ।"

ଏଇ ହୋଇଥିଲା ପ୍ରଥମ କଥାବାର୍ତ୍ତା ତାର ସ୍ୱାମୀ ସଙ୍ଗେ । ତାର କୁକୁର, ଆଉ ତାର ମେଦବହୁଳ ଦେହଟାକୁ ନେଇ କଥା । ସ୍ୱାମୀ ଯେତେନା ହାଟ—ବଜାର ଆଉ ତରି—ତରକାରୀ କଥା କହୁ, ମନଚନିଆ ବୁଝିପାରେ କଥାର ଇଙ୍ଗିତଟା କେଉଁଆଡ଼େ ।

ଏଇଠି ଶେଷ ନୁହେଁ । ଆଉ କିଛି ଦୂର ଆସି ଦେଖାହେଲା ତହଶୀଲଦାର ସାହେବଙ୍କ ସିପାହୀ ଦୁଇଟାଙ୍କ ସଙ୍ଗେ । ସେମାନେ ଅପେକ୍ଷା କରିଥିଲେ ପରସାଦୀ ପାଇଁ । ମାଲିକର ବୋଧହୁଏ ହୁକୁମ ଥିଲା ମାରଧର କରିବାକୁ । କିନ୍ତୁ ସେମାନେ ଅଳ୍ପକେ ଛାଡ଼ିଦେଲେ । ମାଲିକର ଦୁର୍ନାମ

କରିଥିବା ଯୋଗୁ ଗାଳିଗୁଜବ 'କରି ଶେଷରେ ରସିକତା କରିଗଲେ—
"ହି ଦିଟା କଳା କୁତ୍ତୀ ନେଇ ଗ୍ଲିଲୁ ଏଠୁ, ଆମ ଗାଁଟା ଯେ ଅନ୍ଧାର ହୋଇଯିବ । ମୋଟା କୁତ୍ତାଟା କିନ୍ତୁ ଯେଗା କୁତ୍ତୀଟାଠୁ ଖାଇବ ଅନେକ ବେଶୀ । ଦେଖିବୁ ।"

ହସି ଲୋଟିଯାଏ ଇଏ ତା ଉପରେ । ଏ ଘଟନା ଘଟିଥିଲା ଦଶବର୍ଷ ଆଗେ । ତା ପରଠୁ କୁକୁରଟା ଏଇଠି ହିଁ ରହେ । ସେଇ ଦିନଠାରୁ ମନଚନିୟା କଥା ମନେ ପଡ଼ିଲେ ହିଁ ତାର କାଳୀ କୁତ୍ତିଟା କଥା ବି ସଙ୍ଗେ ସଙ୍ଗେ ମନେପଡ଼େ ଏଠିକା ଲୋକଙ୍କର । ଇଁଦାରତଳକୁ (କୂପ), ହରଦାହାଟକୁ, ଗୃହସ୍ଥ ଘରକୁ, ଯେଉଁଠିକି ମନଚନିୟା ଯିବ, ସେଠିକୁ କୁକୁରଟା ତା ପଛେ ପଛେ ଯିବ । ନଡ଼ବଡ଼ୀ ଶୁଖୁଟୀ କାରିୟା ଆଉ ଧୁମ୍‌ସୀ ମନଚନିୟା କଥା ପିଲାଏ ଏକନିଃଶ୍ୱାସରେ କହି ହସାହସି କରନ୍ତି । କାହିଁକି ଯେ ସାହୀପିଲାମାନେ ଏତେ ନିଷ୍କରୁଣ ହୁଅନ୍ତି କିଏ ଜାଣେ ? ହୁଏତ ତରକାରୀ ବୋଝ ମୁଣ୍ଡରେ ଧରି ଗଳଦ୍‌ଘର୍ମ ହୋଇ ମନଚନିୟା ଆସୁଚି ରାସ୍ତା ଦେଇ, ପିଲାମାନଙ୍କର ଗୋଲି ଖେଳ ବନ୍ଦ ହୋଇଯାଏ । ଆଖିରେ ଆଖିରେ ଇସାରା ଖେଳିଯାଏ । ଜଣେ ସ୍ୱର ଧରି କହେ—'ମ—ନ—ଚ ନି—ୟା' । ଆଉ ଜଣେ ସ୍ୱର ମିଳାଇ କହେ 'ଲ—ଦ—ବ—ଦି—ୟା' । ମନଚନିୟା, ଲଦବଦିୟା । ମନଚନିୟା ଲଦବଦିୟା । କାରିୟା ଲୁଙ୍ଗୁଡ଼ ଯାକି ନେଇଛି । ମନଚନିୟା ପାଖେଇ ଆସିଗଲେ ଦଳର ସବୁଠୁ ଦୁଷ୍ଟ ଟୋକା ଦିଇଟା ରାସ୍ତାର ଦିପାଖରେ ଯାଇ ଛିଡ଼ା ହୁଅନ୍ତି । ଜଣେ ମନଚନିୟାର ଏପଟେ, ଆଉ ଜଣେ ସେପଟେ । ତା ଗ୍ଲିର ନକଲ କରି ଗ୍ଲନ୍ତି ସେମାନେ । ଦେହ ଭଙ୍ଗିର ତାଲେ ତାଲେ ସ୍ୱର ଉଠେ—ଲଦର, ବଦର ।। ଲଦର, ବଦର ।। ଲଦର, ବଦର ।।"

ମରମେ ମରିଯାଏ ମନଚନିୟା । ଜିଭର ଧାର ତାର କମ୍ ନୁହେଁ । ଅନ୍ୟ କେଉଁ ବିଷୟ ନେଇ ଏମାନେ ତା ପିଛାରେ ଲାଗିଲେ, ସେ ପାଲଟା ଜବାବ ଦେବାକୁ ଛାଡ଼ନ୍ତା ନାହିଁ ଗାଳିଗୁଜବ, ହଲାପଟା କରି ଏଭଳି ଅନର୍ଥ ଲଗାନ୍ତା ଯେ ପିଲାଏ ପଳାଇବାର ବାଟ ପାଆନ୍ତେ ନାହିଁ; କିନ୍ତୁ ଏ ଯେ ତା ଦେହର ବେଢଙ୍ଗ ଗଢଣ ନେଇ କଥା । ମୁହଁରେ ଫୁଟି ଉଠେ ଅପ୍ରସ୍ତୁତର ହସ । ଦିହର ଲୁଗା ସମ୍ଭାଳି ନେବାକୁ ମଧ୍ୟ ଉପାୟ ନାହିଁ, ଦି ହାତରେ ବୋଝଟାକୁ ଧରି ରହିଚି ବୋଲି । ପିଲାମାନଙ୍କ ହାତରୁ ଛାଡ ପାଇବାପରେ କିଛିଦୂର ଯାଇ

କାରିଆର ଲଞ୍ଜ ପୁଣି ଠିଆ ହୋଇଯାଏ ପିଲଙ୍କ ଆଡ଼କୁ ମୁହଁ ଫେରାଇ କୁକୁରଟା ଦିବାର ଡାକେ ଭ୍ୟାଉ-ଭ୍ୟାଉ କରି ! ଠିକ୍ ଗଣିକରି ଦିଥର । ତାପରେ ପୁଣି ଗୋଟାଏ ଅତି ପରିଚିତ ଗନ୍ଧ ନାକରେ ନେଉ ନେଉ ସେ ବାଟ ଚାଲିବାକୁ ଆରମ୍ଭ କରେ ।

ମନଚନିଆର ଏଇ କୁଣ୍ଠିତ ଭବଟା କଟିଥିଲା ଗତ କେତେ ମାସ ହେଲା । ନୂତନ ସମ୍ଭାବନାରେ ପୃଥିବୀର ରଙ୍ଗ ଯେତେବେଳେ ବଦଳି ଯାଏ ସେତେବେଳେ ଭାରୀ ବୋଝ ମଧ୍ୟ ହାଲ୍କା ଲାଗେ । ବେମାନିଆ ଜିନିସ ମଧ୍ୟ ମାନେଇଯାଏ । ତାର ସୌଷ୍ଠବହୀନ ଦେହର ଗୋଟାଏ ମାନେ ତଥାପି ସେ ଏତେଦିନକେ ଖୋଜି ପାଇଥିଲା । ......କିନ୍ତୁ ଇଏ ପୁଣି ବା କେତେଦିନ !

ସତର ଦିନର ଚାରିପାଟ ଶେଷ ହୋଇଗଲା ମନଚନିଆର । ......ଯେଉଁ ଅଙ୍ଗ ନେଇ ତାର ଚିରକାଳର ଖେଦ, ସେଇ ଅଭିଶାପର ବୋଝର କୁଣ୍ଠାରେ ସେ ଲୋକଙ୍କ ପାଖରେ ମୁଣ୍ଡ ନୋଇଁ ରହିଥାଏ ସବୁବେଳେ, ସେଇଟା ହିଁ ଏତେଦିନ ପରେ ତା ସଙ୍ଗେ ଶତ୍ରୁତା କରିଛି । ......ଶତ୍ରୁ ! ...ଶତ୍ରୁ !

ଦେହ ମେଲେଇ ବସିଚି ମନଚନିଆ ଘରର ଦରଜାରେ । ବୁଢ଼ୀ କୁକୁରଟା ତା ପାଦ ଚାଟୁଛି । କାରିଆର ଆଖି କଣରେ ଏଟା ପାଣି ନା ନେଂଜେଗ କିଛି ବୁଝା ଯାଉ ନାହିଁ । ନିଜର ଅଜାଣତରେ ବୋଧହୁଏ ମନଚନିଆର ହାତ ଚାଲିଯାଇଚି କୁକୁରଟାର ଦିହକୁ । ହାତ ବୁଲାଉଚି ପିଠିରେ, ବୁକୁରେ । ପିଠିର ଖଡ଼ଖଡ଼ିଆ ଲୋମ ଗୁଡ଼ାକ ଆଙ୍ଗୁଠି ଫାଙ୍କରେ ଖସି ଯାଉଚି । ବୁକୁର ରୋମ ଏହାଠୁ ନରମ । ପଂଜରର ହାଡ଼ଗୁଡ଼ାକ ହାତରେ ବିଂଧେ । ଶୁଖୁଟା ବୁକୁ ଉପରେ ଆଂଗୁଠି ଚଳାଉ ଚଳାଉ ସେ ଭଲ କରି ତକାଇ ଦେଖୁଲା ଭତୁଡ଼ି ଭଳି ଛୋଟ ଛୋଟ । ଟିକିଏ ଚେଷ୍ଟା କରି ନ ଦେଖିଲେ କଳା ଲୋମ ଭିତରେ ପ୍ରାୟ ନଜରରେ ପଡ଼େ ନାହିଁ । କାରିଆର କାନର ବାଟୁଲିଗୁଡ଼ିକ ପରି ଛୋଟ ଛୋଟ ସ୍ତନମୁଣ୍ଡି ବୟସ ହୋଇ-ଯାଇଥିବାରୁ ଗତବର୍ଷଠାରୁ ପିଲ ଦେବା ବନ୍ଦ ହୋଇ ଯାଇଚି ବୁଢ଼ୀ କୁକୁରଟାର । ...କିନ୍ତୁ ଇଏ ବି ଭଲ । ...ଶତ ଗୁଣେ ଭଲ ।

କାରିଆ ତକାଇ ତକାଇ ଦେଖୁଚି-ଥରେ ମନଚନିଆର ମୁହଁକୁ, ଆଉ ଥରେ ବେକ କାତ୍ କରି ତା ହାତର ଆଂଗୁଠି ଆଡ଼କୁ । ବୁଝିବାକୁ ଚେଷ୍ଟା

କରୁଛି । ଠିକ୍ ଆଦର କଲା ପରି ମନେ ହେଉ ନାହିଁ ତ, ମନଚନିୟାର ଆଖି ମୁହଁର ଭାବ ଦେଖି । ତେବେ ? ସ୍ତନମୁଣ୍ଡିଗୁଡ଼ିକରେ କୁତୁକୁତୁ ଲାଗୁଚି ଯେ ତାର ।

ଦୁଃଖ ତ ଅଛି । କିନ୍ତୁ ଏପରି ଭାବରେ ପେଟର ପିଲଟା ଗ୍ଲିଯିବାରେ ଯେ କି ଲଜ୍ଜା, କହି ବୁଝାଇ ହେବ ନାଇଁ । ସମସ୍ତେ ତ ତାରି କଥା ଆଲୋଚନା କରୁଛନ୍ତି । ସରକାରୀ ଇଁଦାରାତଳରେ । କେତେ କଥା ଯେ କହୁଛନ୍ତି । ଘରୁ ବାହାରିବାକୁ ସାହାସ ପାଉ ନାଇଁ ମନଚନିୟା । ତଥାପି କଣ ଶାନ୍ତି ଅଛି ? ସାହୀ ଲୋକେ ଆସନ୍ତି ତାକୁ ସାନ୍ତ୍ୱନା ଦେବାକୁ ନା ଚୂଲୀ ପାଉଁଶ ! ସବୁ ବୁଝେ ସିଏ । ଗ୍ଦର ଘୋଡିହୋଇ ଚଟାଇ ଉପରେ ଶୋଇରହେ, କେହି ବୁଲିବାକୁ ଆସିଲେ । ଯା ଇଚ୍ଛା କହି ଯାଅ, ସେ କୌଣସି କଥାର ଜବାବ ଦେବ ନାଇଁ । ପରସାଦୀ ଘରେ ଥିଲେ ପ୍ରତିବେଶିନୀମାନଙ୍କୁ ବାରଣ କରେ ମନଚନିୟାକୁ ବିରକ୍ତ କରିବାକୁ । ଜଣେ ବୁଢ଼ୀ ସହାନୁଭୂତି ଜଣାଇବାକୁ ଆସି ମନଚନିୟାର ଗାଢ଼ ନିଦ କଥା ଉଠାଇଥିଲା । ତାକୁ ଧମକାଇ ଚୁପ୍ କରାଇ ଦିଏ ପରସାଦୀ । କାରିୟା ଚଟାଇଟା ପାଖରେ ଅନବରତ ବସି ରହେ । ଚିହ୍ନା ଲୋକଙ୍କୁ ଘରେ ପଶିବାର ଦେଖିଲେ ବି ଦି'ଥର ଘେଉ ଘେଉ କରି ଡାକି ନିଜର ବିରକ୍ତି ଜଣାଇଦିଏ ।

ସ୍ତ୍ରୀର ମାନସିକ ଅବସ୍ଥା ସମ୍ବନ୍ଧରେ ସଠିକ ଅନ୍ଦାଜି ପାଇଲା ପରସାଦୀ ତାର ଗୋଟାଏ କଥାରୁ । ଭୂଇଁକୁ ଗ୍ହିଁ, ଅତି କୁଣ୍ଠାର ସଙ୍ଗେ ସେ ସ୍ୱାମୀକୁ କହୁଥିଲା ସରକାରୀ ଇଁଦାରରୁ (କୂଅ) ପାଣି ଆଣି ଦେବାକୁ । ପିଇବା ପାଣି ? ମନଚନିୟା ଚୂପ୍ କରି ରହେ । ଗାଧୋଇବାର ? ମନଚନିୟା ଆଖିରେ ପାଣି ଆସିଗଲାଣି । ସ୍ୱାମୀକୁ କେବେ ସରକାରୀ ଇଁଦାରରୁ ପାଣି ଆଣିବାକୁ କହିପାରେ କେଉଁ ଝିଅପିଲା ? ଏକେ ତ ମୋଟା ମଣିଷ, ସ୍ନାନ ନ କଲେ ତାର ଚଳିବ ନାଇଁ । ତା ଉପରେ ଦେହରେ ଦୁଧ-ପଗ୍ଧ ଗଂଧ । ନିଜ ଦେହ ବି ଝିମ୍ ଝିମ୍ କରେ । ଲଜ୍ଜା ଶରମ ଛାଡ଼ି ସେଥିପାଇଁ ସେ ସ୍ୱାମୀକୁ ଗାଧୋଇବା ପାଇଁ ପାଣି ଆଣିବାକୁ କହିଥିଲା । ଇଁଦାରତଳାର ଲୋକ-ବାକ୍‌ଙ୍କ ଭିତରେ ପାଣି ଆଣିବାକୁ ଯିବାର ଇଚ୍ଛା ଯେ ଇଆଠୁ ବେଶୀ । ପରସାଦୀ ମାଟି ମାଠିଆଟା ନେଇ ବାହାରୁଥିଲା । ମନଚନିୟା ବାଲ୍‌ଟିଟା ହାତକୁ ବଢ଼ାଇ ଦେଲା, ପରୁଷ ଲୋକ ସରକାରୀ ଇଁଦାରରୁ ମାଠିଆରେ ପାଣି

ନେଇ ଆସିଲେ ସାହୀଲୋକେ କଣ କହିବେ !

ସହଜ ବୁଦ୍ଧିରେ ପରସାଦୀ ବୁଝେ, ସ୍ତ୍ରୀକୁ ଟିକିଏ ଅନ୍ୟମନସ୍କ ରଖିବାକୁ ଚେଷ୍ଟା କରିବା ଉଚିତ ସବୁବେଳେ । ଅଗଣା ଭରି ସାକସବ୍‌ଜିର ଗଛ—ମନଚନିୟାର ନିଜ ହାତରେ ପୋତା ସେଗୁଡ଼ିକୁ ଯଦି ଟିକିଏ ଦେଖାଶୁଣା କରେ ତାହେଲେ ମନଟା ଭଲ ରହିବ । କିନ୍ତୁ କରୁଚି କେଉଁଠି ? ବାରଣ୍ଡାରେ ବସି ବସି କଣ ଭବେ ଦିନରତି, ସେଇ ଜାଣେ । ଏ ତିନିଦିନ ମନଚର୍ନିୟା ସୀମ ତୋଳିବାକୁ ବି ଭୁଲିଯାଇଚି ।

ସମୟ ପାଇଲେ ହିଁ ପରସାଦୀ ସ୍ତ୍ରୀ ସଙ୍ଗେ ଗଳ୍ପ କରି ତାକୁ ଟିକିଏ ଅନ୍ୟମନସ୍କ ରଖିବାକୁ ଚାହେଁ: କିନ୍ତୁ ଆରମ୍ଭ କରିବାର ଟିକିଏ ପରେ ଆଉ କଥା ଖୋଜି ପାଏନା । କହିବାକୁ ଇଛା କରେ ଯେଉଁଟା ଚାଲିଯାଇଛି ସେଇଟାର କଥା, କିନ୍ତୁ ସେ କଥା ଯେ କହିବାକୁ ମନା । ଅନ୍ୟ ଗଳ୍ପ କରିବାକୁ ଗଲେ ମଧ୍ୟ ବାଧା ଆସି ପଡ଼େ ଅଜାଣତରେ । ତରିତରକାରୀର ବଜାର ଦର ନେଇ ଗଳ୍ପ ଆରମ୍ଭ କରିବାହିଁ ଥିଲା ତାର ଚିରକାଳର ଅଭ୍ୟାସ । ପରସାଦୀ ହୁଏତ ଆରମ୍ଭ କଲା ସୀମର ଦର କଥା । "ଇଲଗେ ଦରଟା ଅଛି ଭଲ । ଆଉ ମାସକ ପରେ କିଏ ପଚାରିବ କୁକୁରର କାନ ପରି ଶକ୍ତ ଶକ୍ତ ସୀମ" । 'ସାତପୁଡିଆ' ସୀମ ମଂଜିର ଲାଭ ବେଶୀ । ଅସରନ୍ତି ଫଳନ; ନେଂଥା ନେଂଥା ଫଳେ । ଗୋଟିଏ ଗୋଟିଏ ପେଛାରେ ଥାଏ ସାତଟା କରି । ଅଗଣାର ସୀମ ଗଛଟା ସେଇ ଦଶହରଠାରୁ ଫଳ ଦେଉଛି । ମନେ ଅଛି ଓ ସେଇ ଯେଦିନ ଖଗରିୟା—ହାଟର ଦଶହର ମେଲାରୁ ତୋ ପାଇଁ ଦହିବଡ଼ା ?......

କହୁ କହୁ ଅଟକିଯାଏ ପରସାଦୀ । କଥାଟା ଉଠାଇବା ଠିକ୍ ହୋଇ ନାଇଁ । ପୁଅଟା ସେତେବେଳକୁ ପେଟରେ । ସ୍ତ୍ରୀ ଖାଇବାକୁ ଚାହିଁଥିଲା ଏଠା-କାର ଦହିବଡ଼ା ।

"ହୁଁ,ହୁଁ, ଅସମୟର ଶାକ୍‌ସବ୍‌ଜୀରେ ଲାଭ । ସୀମଗଛଟା ଏତେ ଅଗରୁ ଫଳିବାକୁ ଆରମ୍ଭ କରିଛି ଏଥର; ପୁରୁଣା ଗଛ ବୋଲି । ଗତ ବର୍ଷର ଗଛ । ତୁ ତ ଉପାଡ଼ି ଦେବାକୁ ଚାହୁଁଥିଲୁ ଶୁକ୍‌ଟୀ ଗଛଟାକୁ । ମୋରି କଥାରେ ତ ବୈଶାଖ ମାସରେ ପାଣି ଦେବାକୁ ଆରଂଭ କଲୁ । କହିଥିଲି କି ନା, କହ !"

ପୁଣି ଗୋଟିଏ କିମିତି କିମିତି ଭାବ ମନଚନିୟାର ଆଖି ଆଉ ମୁହଁରେ ଫୁଟିଉଠେ । ପରସାଦୀ ରହିଯାଏ ।

..."ଲାଉ ଗଛଟାରେ କି ତେଜ ହୋଇଚି ଦେଖ । ଗୁଳ ଛାଇଗଲାଣି । କି ମୋଟା ମୋଟା ଡେଂଫ ଗୁଡ଼ାକ—ବୁଢ଼ା ଆଙ୍ଗୁଠି ବି ମୋଟା । ଗେଜ୍ ଭାତ ପେଜ ପକାଉଛୁ ନା ଗଛମୂଳେ, ତେଣୁ ଏଟାର ଏତେ ଜୋର୍ । ଏତେ ବଡ଼ ହେଲେ କଣ ଗଛରେ ଫଳ ହୁଏ । ଇଆର ଡ଼ଙ୍କ କାଟି ବିକିଦେବା ହିଁ ଭଲ । ଦେଖୁନୁ, ଖାଲି କଷି ହେଉଛି ଆଉ ପଚି ଯାଉଚି—କଷି ହେଉଛି ଆଉ ପଚି ଯାଉଚି" ...

କଣ ପୁଣି କହି ପକାଇଲା ସେ । ସ୍ତ୍ରୀର ମୁହଁଟା ହଠାତ୍ ଶୁଖିଗଲା କିଆଁ ? ମଝିରେ କଥା ଅଟକି ଗଲା ପରସାଦୀର । ସେ ଉଠି ପଡ଼ିଲା । ଏତେ ସଭଳି ସଭଳି କଣ କଥା କୁହାଯାଏ ?

ସିଲାଇ ନେଇ ବସିଲେ ହୁଏତ ଟିକିଏ ଅନ୍ୟମନସ୍କ ହେବ । ସ୍ତ୍ରୀର କୁର୍ତ୍ତାପାଇଁ ଖଣ୍ଡେ ଛିଟ ନେଇଆସିଲା ପରସାଦୀ, ତରକାରୀ ବିକି ଫେରିବା ବେଳେ । ମନଚନିୟା ଦେଖି କହିଲା, "ଏ କପଡ଼ାଗୁଡ଼ାକ କାଚିଲାପରେ ବଡ଼ ଛୋଟ ହୋଇଯାଏ ।"

ଏତେ ଅଣ୍ଡା ଗୁଣ୍ଡା ଜାମା କରୁ କାହିଁକି ? ଟିକିଏ ଢ଼ିଲା ସିଲାଇ କଲେତ ହୁଏ ।"

କିଛି ଭାବିକରି କୁହାନୁହେଁ । ତଥାପି ମନଚନିୟା ତଳେ ଦୃଷ୍ଟିନିବଦ୍ଧ କରେ । କେତେ କଣ ଗଳ୍ପ କରିବ ଭାବି ଠିକ୍ କରି ଆସିଥିଲା ପରସାଦୀ । ସବୁ ଫସରଫାଟି ଯାଏ, ସ୍ତ୍ରୀର ଏଇ ଅପରାଧୀର ଭାବଟା ଲକ୍ଷ୍ୟକରି ।

ତାର ଚେଷ୍ଟାରେ ତ୍ରୁଟି ନାଇଁ । ତା ପରଦିନ ସେ ଫେରିଲା ଗୋଟାଏ କୁକୁରଛୁଆ ନେଇ । କୁକୁରଛୁଆଟା ଖୁବ୍ ଛୋଟ, ଏଇମାତ୍ର ଆଖି ଖୋଲିଚି । "ଇଏ ପୁଣି କଣ ଆଣିଛୁ ?"

"କାରିୟାଟା ବୁଢ଼ା ହୋଇଚି । କେବେ ମରିଯିବ କିଛି ଠିକ୍ ନାଇଁ ଏବେଠୁ ଗୋଟାଏ ନୂଆ କୁକୁର ପୋଷିବା ଭଲ । ରାସ୍ତା କଡ଼ରେ ଶୀତରେ କୁଁ-କୁଁ କରୁଥିଲା । ଉଠେଇ ଆଣିଲି ।"

ମନଚନିୟା ସେଦିନ କାମରେ ଯିବାକୁ ଯୋଗାଡ଼ କରୁଥିଲା । ଆଉ କେତେଦିନ ଘରେ ବସି ରହିବ ? ଘରେ ବସି ରହିଲେ କଣ ସେମାନଙ୍କ ଅବସ୍ଥାର ଲୋକଙ୍କର ଚଳିବ ? ଏଥି ମଧ୍ୟରେ ପୁଣି ସ୍ୱାମୀ କୁକୁରଛୁଆ ନେଇଆସି ହାଜର ।

......ଫିସାଦ୍ । ଏତେଦିନ ଯେବେ କାରିୟାର ବର୍ଷକୁ ବର୍ଷ ବଢା ହୋଇଚି, ସାତଗଣ୍ଡା କନି, ସେତେବେଳେ କୁକୁରଛୁଆ ପୋଷିବାର ଖିଆଲ ହୋଇନି ! କେତେ ଶିଆଳ ଖାଇଯାଇଛି, କେତେ ସାହିପିଲା ନେଇଯାଇଛନ୍ତି । ଯେତେ ଅଇଁଠାପତ୍ର ଖାଇବାକୁ ଦିଅ, କୁକୁର ପୋଷିବାର ଖରଚ ଅଛି ତ ! ଖାଲି ଅଇଁଠାଭତ ଖାଇବାକୁ ଦେଲେ କୁକୁର କଣ ଘରେ ରହିବ ! ଏକ ଗୃହସ୍ଥର ଅଇଁଠାପତ୍ରରୁ ଅନ୍ୟ ଏକ ଗୃହସ୍ଥର ଅଇଁଠାପତ୍ର ପର୍ଯ୍ୟନ୍ତ ଟହଲମାରି ବୁଲିବ ଆଠ ପ୍ରହର ।

ତଥାପି ସ୍ୱାମୀ ଯେତେବେଳେ ନିଜ ହାତରେ ନେଇ ଆସିଛି, ସେତେବେଳେ ତାକୁ ଘରେ ଜାଗା ଦେବାକୁ ହିଁ ହେବ ।

କୋଳରୁ ଓହ୍ଲାଇ ମନଚନିୟା କୁକୁରଛୁଆଟାକୁ ହାତରେ ଧରିଲା । ଘରୁ ବାହାରିବାକୁ ତାକୁ ଲଜ୍ୟା ଲାଗୁଥିଲା । ଯାହାହେଉ, ଟିକିଏ ସମୟ ମିଳିଲା କୁକୁରଛୁଆଟା ଆସିବାରୁ । ଗୋଟାଏ ଓଳି ଡେରି କରିବାର ଗୋଟାଏ କାରଣ ମିଳିଯିବାରୁ ସେ ବଂଚିଗଲା ।

ନିହାତି ବସ୍ତ । ନାକ ବଢ଼ାଇ ଶୁଂଘୁଛି ଫସ୍—ଫସ୍ ଶବ୍ଦକରି । ଲୁଗା ଭିତରେ ମୁହଁ ଗୁଞ୍ଜିବାକୁ ଚାହେଁ । ଲିକ୍‌ଲିକ୍ ଜିଭ ବଢ଼ାଇ ଆଙ୍ଗୁଠି, ହାତର ଚମଡ଼ା ଚାଟି ଦେଉଛି । ମନଚନିଯାର ଦେହର ଗନ୍ଧଟା ତା ମନମୁତାବକ । ଦୁଧର ଟକଟକ ମତାଣିଆ ଗନ୍ଧଟା ତାର ଚିହ୍ନା । ହଜିଲା ଗନ୍ଧ ପୁଣି ଫେରି ପାଇଚି କୁକୁରଛୁଆଟା । ସହଜ ପ୍ରବୃତ୍ତିରେ ବୁଝିଚି ଯେ ଏହି ଗନ୍ଧଟାହିଁ ତାକୁ ଭସ୍ତ—ଧାରର ସନ୍ଧାନ ଦେବ ।

"ବାବାରେ ବାବା ! ଏକ ମିନିଟ୍ ବି ନିଶ୍ଚିନ୍ତ ନୁହେଁ । ଚୁପ୍‌କରି ବସ୍ ଏଇଠି ।"

କୋଳରୁ ଓହ୍ଲାଇ ଦେଇ ମନଚନିୟା ବସ୍ତଟାକୁ ଚାପି, ପାଖରେ ବସାଇଲା ।

କାରିୟାର ଗଳାଭିତରୁ ଗୋଟାଏ ଶବ୍ଦ ବାହାରିଲା—ଘର୍‌-ର୍‌-ର୍‌ । ନୂତନ ଆଗନ୍ତୁକର କାଣ୍ଡକାରଖାନା ତାର ଅପସନ୍ଦ । ମୂଳରୁ ଶେଷଯାଏଁ ବ୍ୟାପାରଟା କିମିତି ଆସି ଛିଡ଼ା ହେଲା, ତାରି ଅନ୍ଦାଜ କରି ନେଉଛି ସିଏ ସଙ୍ଗେ ସଙ୍ଗେ । ଥରେ କୁକୁରଛୁଆଟା ପାଖକୁ ଯାଇ ତାର ଦେହକୁ ଶୁଂଘିନିଏ । ଗନ୍ଧ ଭିତରେ କଣ କିଛି ପାଇଲା କି ନାହିଁ ସେଇଜାଣେ । ଗୋଟାଏ ହାଇ ତୋଳି ବାରଣ୍ଡାରୁ ଓହ୍ଲାଇ ଯାଇ ସେ ବୁଲେଇବାକୁ ଲାଗିଲା ଅଗଣାରେ । ବଗ୍ଗଟା ସମ୍ବନ୍ଧରେ ସେ ସମ୍ପୂର୍ଣ୍ଣ ନିସ୍ପୃହ ।

କୁକୁରଛୁଆର ନରମ—ନରମ ଲୋମଗୁଡ଼ାକ ଲେପ୍‌ଟି ଯାଉଚି ମନଚନିୟା ହାତ ଉପରେ । ରେଶମ ପରି ବେଶ୍‌ ଆରାମ ଲାଗେ । ଯା ଉପରେ ଆଙ୍ଗୁଠି ଚଳାଇ ଆରାମ କରିବାକୁ ଗଲେ ଦେହ ସିର୍‌—ସିର୍‌ କରେ । ଅଥଚ ସେ ସିର୍‌ସିର୍‌ କିଛି ଖରାପ ଲାଗେନା । ଆଙ୍ଗୁଠି ମୂନରେ ଗୋଟାଏ କୋମଳ ଦେହର ଉତାପ ଆନମନା କରିଦିଏ ମନଚନିୟାକୁ ।

......ଦୁଧର ଫେଣ ତ ଫୋପାଡ଼ି ପକାଇ ଦେବାକ୍ ହୁଏ । ଗୋଟାଏ ଟିଣ ଡବାର ଢାକୁଣିରେ ସେ ଦୁଧର ଫେଣ ବାହାର କରି ସେ ବଛାଟା ସାମନାରେ ରଖିଲା ଚୁକ୍‌ଚୁକ୍ କରି ଖାଇଚି ବଗ୍ଗଟା । ଶବ୍ଦଟା ଶୁଣିବାକୁ ଖୁବ୍‌ ମିଠା । ଏକ ଦୃଷ୍ଟିରେ ଚାହାଁଇ ରହିଚି ମନଚନିୟା ସେଇ ଆଡ଼େ ।

ଅଗଣାରେ କାରିୟାର କାନ ଖାଡ଼ା ହୋଇ ଉଠିଛି । ତାର ଔଦାସୀନ୍ୟ କଟିଚି । ଛୁଟି ଆସିଲା ବାରଣ୍ଡାକୁ ଢାକୁଣିଟା ପାଖକୁ । "ତୁ ପୁଣି ଆସିଲୁ କିଆଁ ? ପଳା । ଯା କହୁଚି ।"

ଭ୍ୟା—ଆ—ଆ କରି ଗୋଟାଏ ଶବ୍ଦ ବାହାରିଲା କାରିୟା ଗଳାରୁ ।

"ସେ କଣ ତୋର ଖାଇବାର ଜିନିଷ ନା କଣ ? ରାଗ ଦେଖାଇଲେ ଖାଲି ହେଲା ! ଏଇ ଟିକିଏ ବଚ୍ଛା ସାଙ୍ଗରେ ରାଗାରାଗି ! ଯା ପଳା !"

"ଘ୍—ର୍—ର୍‌-ର ।"

ଅର୍ଥାତ୍ ଏ ବ୍ୟବସ୍ଥା କାରିୟାର ଅପସନ୍ଦ, କିନ୍ତୁ ହୁକୁମ ନ ମାନି ଉପାୟ ନାହିଁ ।

ଘର କାମ ସାରି ମନଚନିୟା ବୋଝ ମୁଣ୍ଡାଇ ବାହାରି ପଡ଼ିଲା

ଅଗଣାରୁ । ଚିରକାଳର ଅଭ୍ୟାସ ମରି କାରିୟା ଭିଡ଼ିମୋଡ଼ି ହୋଇ ଉଠ ଠିଆହେଲା ।

"ତୁ ପୁଣି ଉଠିଲୁ କାହିଁକି ? ତୁ ଥା ! ଆଜି ଆଉ ତୋର ମୋ ସଙ୍ଗେ ଯିବା ଦରକାର ନାହିଁ । କଥା ଶୁଣ୍ ! ଯା ! ଯା କହୁଚି ଘର ଭିତରକୁ ।"

ଦରଜାର ଶିକୁଳି ବାହାରୁ ବନ୍ଦକରି ମନଚନିୟ ଚାଲିଗଲା ପରେ କାରିୟା ଭ୍ୟା—ଉ ଭ୍ୟାଉ କରି ଡାକି ସାହୀ ଉଛୁଳାଇ ଦେଉଚି ।

ଯେଉଁଥିପାଇଁ ତାର ଘର ବାହାରକୁ ଯିବାପାଇଁ କୁଣ୍ଠା, ଠିକ୍ ତାହାହିଁ ହେଲା । ହସର ଖୋରାକ ପାଇଲେ ପିଲାଙ୍କର ସତରେ ଦୟା-ମାୟା ଥାଏ ନାହିଁ । ଆଜି ବି ମନଚନିୟାକୁ ଆସିବାର ଦେଖି ସେମାନଙ୍କର ମାର୍ବେଲ ଖେଳ ବନ୍ଦ ହୋଇଗଲା । ...ଆଜି "ମୋଟକା ତରକାରୀ ବାଲିଟା ।" ଏକା କାହିଁକି ରେ ! ଶୁକୁଟୀ କୁକୁରଟା ନାହିଁ କହିଁକି ରେ ! ...ଆଜି ସେମାନେ ଢଗ ବୋଲି ତାର ଦେହ ଭଙ୍ଗିର ନକଲ କରି ନାଚି ନାହାନ୍ତି ? ଖାଲି ନିଜ ମଧ୍ୟରେ 'ପୁତନା ରାକ୍ଷସୀ' କଥା କହି ହସାହସି କରୁଛନ୍ତି । ମନଚନିୟାର ସ୍ୱକର୍ଣ୍ଣେ ଶୁଣା । ଆଖି କାନ ବୁଜି ସେ କୌଣସି ପ୍ରକାରେ ସେଠୁ ପଳାଇ ଯାଇ ବଞ୍ଚେ । ତା'ପରେ ସେ ଯେଉଁ ଘରକୁ ତରକାରୀ ବିକିବାକୁ ଯାଏ ସେ ଘରର ସ୍ତିରିଲୋକମାନେ କିଛିଦିନ୍ ଆଗର ଅଘଟନଟାର ସାର ବୃତ୍ତାନ୍ତ ତାକୁ ପଚାରନ୍ତି । ···ପୁଲିଶ୍ ଯାହା ଭାବି ନାହିଁ ଏମାନେ ହୁଏତ ତା ଭାବି ନେଇଛନ୍ତି । କିଏ ଜାଣେ ! ନହେଲେ କେଉଁ ମା କଣ ଏକଥା ପଚାରିପାରେ ତାକୁ— ଯାହାର କପାଳ ଏପରି ଭାବରେ ପୋଡ଼ିଛି ? ସ୍ୱାମୀ ତାକୁ ଇଲଗେ ଦି ତିନିଦିନ ବାହାରେ ତରକାରୀ ବିକି ଯିବାକୁ ମନାକରି ଦେଇଥିଲା । ଠିକ୍ ହିଁ କହିଥିଲା । ସେତେବେଳେ ବୁଝି ପାରି ନଥିଲା ପରସାଦୀର କଥା । ଭାବିଥିଲା ଦୁଆର ଦୁଆର ବୁଲିଲେ ପରିଶ୍ରମ ବେଶୀ ବୋଲି ସେ ଇମିତି କହୁଛି । ......

ମନଚନିୟା ଯା ପରେ ଆଉ କୌଣସି ଗୃହସ୍ଥ ଘରକୁ ନଯାଇ ସିଧା ଚାଲିଯାଇଥିଲା ବଜାରକୁ ।

ଘରକୁ ଫେରିଲେ ସ୍ୱାମୀ-ସ୍ତ୍ରୀ ଏକା ସଙ୍ଗରେ । ଶିକୁଳି ଖୋଲିବାର ଶବ୍ଦ ପାଇ କାରିୟା ଲାଞ୍ଜ ହଲଇ ହଲାଇ ଆଗେଇ ଆସିଲା ନାହିଁ । କୌଣସି ସାଡ଼ାଶବ୍ଦ

ନାଇଁ । ବ୍ୟାପାର କଣ ? ଆଲୁଅ ଜଳାହେଲେ ଦେଖାଗଲା ଯେ, ଅଗଣାରେ କାରିୟା ଶୋଇ ରହିଛି ହାତଗୋଡ଼ ମେଲି, ଆଉ କୁକୁରଛୁଆଟା ତା'ର ଶୁଖିଲା ବୁକୁକୁ ପ୍ରାଣପଣେ ଘୁଟୁଛି । ମଝିରେ ମଝିରେ ଚୁଁ ମାରି ଏ ପଛା ମୁଣ୍ଡିଟା ଛାଡ଼ି ଆର ପଛା ମୁଣ୍ଡିଟାକୁ ଝୁଣୁଚି । ମନଚନିୟା ପାଖକୁ ଯାଇ ବଚ୍ଚାଟାକୁ ହାତରେ ଉଠାଇ ନେବାରୁ କାରିୟା ଦେହ ଝାଡ଼ି ଉଠି ଛିଡ଼ାହେଲା । ...ଅନେକ ସମୟ ଧରି ଆଗୁଳି ରଖିଚି ତମ କଥା ଅନୁସାରେ, ଏଥର ତମ ଜିନିସ ତମେ ବୁଝି ନିଅ, ଗୋଟାଏ କଡ଼ରେ ଅନେକ ସମୟ ଧରି ଶୋଇ ରହିବା ଫଳରେ ତା ଦେହ ହାତ ଗୋଡ କିମିତି ଅସାଡ଼ ହୋଇଯାଇଛି । କାରିୟା ମାଟି ଶୁଂଘି ଶୁଂଘି ଚାଲିଗଲା ଘର ବାହାରକୁ ।

"ଏଇଟାର ଗୋଟାଏ ନାଁ ରଖିବାକୁ ହେବ ଏତିକିବେଳୁ ।"

ହଁ, 'ବଚ୍ଚା' ନାମଟା ବେଶ୍ ହେବ ।"

"ବଚ୍ଚା ! ବଚ୍ଚା ! ଆରେ ବଚ୍ଚା ! ପୁଣି ଅନାଉଚି ମିଞ୍ଚି ମିଞ୍ଚ କରି । ଆଙ୍ଗୁଠି ଚୁଟିବୁ-ନାଇଁ କହୁଚି ! ବୋକା କେଉଁଠିକାର ! ଏଇଟା କଣ ଖାଇବା ଜିନିଷ ! ଭୋକ ଲାଗିଲାଣି ନା ! ତା ତ ଲାଗିବ । କମ ସମୟ ତ ହୋଇ ନାଇଁ । ଦୁଧଖିଆ ପିଲାଙ୍କୁ ଘଣ୍ଟା ଘଣ୍ଟାକେ କ୍ଷୁଧା ପାଏ । ଆ ।"

"କୁଁ କୁଁ କରି ଯେଉଁ ଶବ୍ଦଟା କରୁଚି ସେଟା ହେଉଚି ଭୋକ ଲାଗିବାର ଡାକ, କୁକୁରଛୁଆଙ୍କର ।"

"ଖାଲି ଭୋକ ଲାଗିବା ବେଳର କାହିଁକି ହେବ, ଅନ୍ୟ କେତେ ସମୟରେ ବି ତ ଏମାନେ ଏମିତି କରି ଡାକନ୍ତି ।"

ମନଚନିୟା ମୁହଁରେ ହସ । ଏଇ ହସ ଟିକକ ନଥିଲେ ଶେଷ କଥାଟାର ଇଙ୍ଗିତ ତା ସ୍ୱାମୀ ଧରିପାରି ନଥାନ୍ତା । ଏଇ ପ୍ରଥମ ହସିଲା ସିଏ ପାଞ୍ଚଦିନ ପରେ ।

"ସେ ସବୁ ବୁଝୁ ତ । କୁକୁର ପାଳି ପାଳି ତୋର ହାଡ଼ ପାକଲା ହୋଇଯାଇଚି ।"

ପରଦିନ ବଚ୍ଚାଟା ସାରଦିନ ଧରି କାରିୟାର ବୁକୁ ଘୁଟିଚି । କାରିୟା ସାରଦିନ ଦେହ ମେଲି ଶୋଇଥିଲା । ମନେ ହେଉଥିଲା ଯେମିତି ଆରାମ

ନେଇଛି । ମନଚନିୟା ଯେତେବେଳେ ବୋଝ ମୁଣ୍ଡାଇ ଘରୁ ବାହାରିଲା ସେତେବେଳେ ବୁଢ଼ୀ କୁକୁରଟା ସଙ୍ଗରେ ଗଲା ନାହିଁ । କିଛି କହିବାକୁ ହୋଇ ନାହିଁ ତାକୁ । ନିଜ ମନକୁ ଗଲା ନାହିଁ । ବଜାରୁ ଫେରି ଆସି ଦେଖିଲା, ଠିକ୍ ସେଇ ଏକଇ ଅବସ୍ଥାରେ କାରିୟାଟା ଶୋଇ ରହିଚି, ଆଉ ବଛାଟା ସେଇପରି ଚୁଁ ଚୁଁ କରି ଘେଷୁଛି । ପଛା ମୁଣ୍ଡିଗୁଡ଼ାକ ଆଉ ଭଟୁଡ଼ି ପରି ନାହିଁ, ଟିକିଏ ବଡ଼ ହୋଇଛି । ମୂଳ ଭଗଟା ମଧ୍ୟ ଟିକିଏ ଫୁଲା । ଟିକିଏ ନାଲି-ବାଇଗଣିଆ ଆଭ ଲାଗିଛି ସେଠାରେ । ଛିଣ୍ଡି ଯାଇନି ତ ! ଖାଲି କଣ ଚଟା ଆଉ ଘେଷା ! ଯାହା ଆମୁଡ଼ା କାମୁଡ଼ାର ଘଟା ବଛାଟାର ! କହିହେବ ନାହିଁ । ଆଙ୍ଗୁଠି ଦେଇ ଦେଖିଲା ମନଚନିୟା । ନା । ଇଏ ଛିଣ୍ଡା ଦାଗ ନୁହେଁ । ଶିର ଉପଶିରର ବାଇଗଣୀ ମିହିମିହା ଦାଗଗୁଡ଼ାକ ଯେମିତି ଚମଡ଼ା ଭେଦକରି ଉଠି ଆସିବାକୁ ଲାଗୁଁଛନ୍ତି । ବେଶ୍ ଚିକ୍‌କଣ ଦେଖାଯାଉଚି ଚମଡ଼ାଟା । କାରିଆର ଗୁହାଣୀ ଦେଖି ବୁଝାଯାଉଚି ଯେ ମନଚନିୟାର ଏଇ ଅହେତୁକ କୌତୂହଳ ସେ ସନ୍ଦେହ ଚକ୍ଷୁରେ ଦେଖୁଚି । ...ଏତେ ହାଁ କରି ଦେଖିବାର କଣ ଅଛି ଯା ଭିତରେ ! ଯା କଣ ଆଗରୁ ଦେଖିନ !......

ଟିଣ ଡବାର ଢାକୁଣିଟା ହାତରେ ନେଇ ମନଚନିୟା ବାରଣ୍ଡା ଉପରୁ ଡାକିଲା—"ବଛା, ବଛା ! ଆ ତୁ—ତୁ ! କୁର୍ କୁର୍ କୁର୍ କୁର୍ ଆ ବଛା ।"

ବଛାଟା ବୁଝିଁଛି କାହିଁକି ଏ ଡାକ । ଘୁର୍ ଘୁର୍ କରି ସେ ଉଠି ଆସିଲା ବାରଣ୍ଡାକୁ । ଠେଲି ମନଚନିୟା ଦେହରେ ଉଠିବାକୁ ଲାଗେ । ଆଣ୍ଠୁ ପାଖ ଲୁଗାରେ ଖରଖର ଶବ୍ଦ ହେଉଚି ନଖ ଆଞ୍ଚୁଡ଼ାରେ ।

"ରହ, ରହ ! ତର ସହୁ ନାହିଁ । ଆସିଲୁ କାହିଁକି—ଯା ନା କାରିୟା ପାଖକୁ । ନୂଆ ମା ପାଇଛୁ—ଯାଚ୍ ଯା ତା ବୁକୁ । ଶୁଂଘୁଛୁ ପୁଣି କଣ ?"

......କଣ ସେ ଜିନିଷ ! କଣ କାମରେ ଲାଗେ ! ଯେଉଁଟା ଏମିତି ଜବରେ ଲୁଚିଗଲା, ତା କଥା ମନେ ପଡ଼େ । ଭୁଲି କି ହୁଏ ! ......

କାରିୟା ମୁଣ୍ଡ ଟେକି ଦେଖୁଚି ଅଗଣାରୁ । ଆଖିରୁ ନେଞ୍ଜେଇ ତାର ଖସ କୁଆଡ଼େ ? ଶୁଣୁଚି ମନଚନିୟା କଥା । ଲକ୍ଷ୍ୟ କରୁଚି ତାର ହାବଭାବ, ଘଟିଚି ଅଙ୍ଗଭଙ୍ଗି । ଟିଣର ଢାକୁଣିଟା ଯେତେବେଳେ ମନଚନିୟା ନିଏ, ସେତେବେଳେ ତା କାନ ଖାଡ଼ା ହୋଇ ଉଠିଥିଲା । ବଛାଟା ହାତରୁ ଖସି

ପାଇ ବାହାରେ ଏକ ଚକ୍‌କର ଟହଲ ମାରି ଆସିବାହିଁ ତା ପକ୍ଷରେ ସ୍ୱାଭାବିକ ହୁଅନ୍ତା, କିନ୍ତୁ ତା ନକରି ସେ ଯାଇ ବସିଲା ପିଣ୍ଡା ତଳେ ଲାଞ୍ଜରେ ଭରଦେଇ । ଉଦଗ୍ର ଉତ୍କଣ୍ଠାରେ . ସେ ପ୍ରତୀକ୍ଷା କରୁଛି ବଗ୍ଘଟାର ଫେରି ଆସିବା ପାଇଁ । ...ଟିଣ ଡ୍ରାକୁଣିଟା ଘୁଟିଚୁଟି ଶେଷ କଲାପରେ ସେଠି କୁଁଇ-କୁଁଇ କରୁଛି କାହିଁକି ? ପୁଣି ସେଠି ଶୁଂଘୁଛି କଣ ?

'ହେଲା ତ !'

...ଇଏ ତ ଆଦର ନୁହଁ । ...ମନଚନିୟାର ଏ ଗଳାର ସ୍ୱରରେ ବିପଦ ଅଛି । ସେକଥା କାରିୟା ଜାଣେ । ଟପକରି କାରିୟା ବାରଣ୍ଡା ଉପରକୁ ଉଠେ ଏବଂ ବିଗ୍ଘରି ବେକଟାକୁ ଦାନ୍ତରେ କାମୁଡି ସେଟାକୁ ତଳକୁ ନେଇଆସେ । ...ଘ୍ଲଇ ନିଜ ଜାଗାକୁ । ସେଠି ଯା ଇଛା କର ପଛକେ । ...ଠିକ୍ ଆଗ ଜାଗାକୁ ନେଇ ଯାଇ ସେ ବଗ୍ଘର ବେକପାଖଟା ଟିକିଏ ଘ୍ଟି ତାକୁ ଆରାମ କରିଦିଏ । ତା'ପରେ ଗୋଡ଼ ଲମ୍ବାଇ ପୁଣି ଶୁଏ ନିଜେ ଆରାମ ନେବାକୁ । ...ନେ, ଏଥର ନେ । ...ଏଥର କଣ କରିବାକୁ ହେବ ତା କହିବା ଦରକାର ନଥିଲା ବଗ୍ଘଟାକୁ ।

ବାଉଁଶ ଖୁଣ୍ଟି ଧରି ଆବାକ୍ ହୋଇ ଦେଖୁଥିଲା ମନଚନିୟା ଏବେ ସୁଦ୍ଧା ସାଧ ମେଣ୍ଟିନାହିଁ ବୁଢୀ କାରିୟାଟାର । ମାଛି ଜ୍ୱାଳା କରୁଛନ୍ତି ବଗ୍ଘକୁ । ଦେହ ନ ହଲାଇ, ମୁଣ୍ଡ ହଲାଇ ମାଛିକୁ ମାରିବା ପାଇଁ କେତେ ଚେଷ୍ଟା ନ କରୁଛି କାରିୟା ଦିହ ହଲଚଲ କଲେ ଯେ ବଗ୍ଘର ଘ୍ଟିବାରେ ଅସୁବିଧା ହେବ । ପରସାଦୀ କଣ ଲକ୍ଷ୍ୟ କରିଚି ବୁଢ଼ୀ କୁକୁରଟାର ବୁକୁର ଆକୃତିର ପରିବର୍ତ୍ତନଟା ! ତାର ଭରୀ ଇଛାହୁଏ ସ୍ୱାମୀକୁ ଡ଼ାକି ଦେଖାଇବ, କିନ୍ତୁ ପାରେନା ସଙ୍କୋଚରେ ।

ପରସାଦୀର ବି ଜିନିଷଟା ଆଖିରେ ପଡ଼ିଚି; କିନ୍ତୁ ଏକଥା କଣ ମନଚନିୟାକୁ କୁହାଯାଏ ?

ସେ ରାତିରେ ଯେ କେତେଥର ମନଚନିୟାର ନିଦ ଭାଙ୍ଗିଛି ତାର ଠିକ୍ ନାଇଁ । ସାରା ରାତି କାରିୟା ଭୁକିଛି ଶିଆଳର ଗନ୍ଧପାଇ ।

ଭୋରରେ ଉଠି କାରିୟା ଆଉ ବଗ୍ଘଟାକୁ ଅଗଣାରେ ଦେଖାଗଲା ନାଇଁ । କୁଆଡେ ଗଲେ ? 'ସାତପୁରିଆ' ସୀମ ମଞ୍ଚା ତଳେ ସିନ୍ଦୁକ ପରି

ଗୋଟାଏ କାଠର ଘର ଅଛି । ଏକଦା ମନଚନିୟା ବତକ ପୋଷିଥିଲା ସେମାନଙ୍କ ରହିବା ପାଇଁ ଏଇଟା ତିଆରି ହୋଇଥିଲା । ଦେଖାଗଲା ସେଇ ବତକ ଘରେ କାରିୟା ବଚ୍ଚାଟାକୁ ନେଇ ଶୋଇଛି । ଘରଟା ଚାରିପଟୁ ବନ୍ଦ, ଖାଲି ଗୋଟାଏ ପଟେ ବତକ ପଶିବା ପାଇଁ ଗୋଟାଏ ଛୋଟ ଦରଜା ଭଳି ଅଛି । ଏତେ ଛୋଟ ଯେ କାରିୟାକୁ ମଧ୍ୟ ତା ଭିତରେ କଷ୍ଟ କରି ଘୁଷିବାକୁ ହୁଏ ।

ମୁଣ୍ଡ ନୁଆଇଁ ଦେଖିବାକୁ ଗଲା ମନଚନିୟା । ଭିତରେ ଅଂଧକାରରେ କିଛି ଦେଖା ଯାଉ ନାହିଁ ।

"ଘ-ର୍-ର୍-ର୍-ର ।"...ଏଠି ପୁଣି କାର ଦରକାର ?

"ଆ ମରଣ ! ଚୁପକର କହୁଚି କାରିୟା ।"

ମନଚନିୟା ମଂଗୁରୁ ସୀମ ପାରୁଚି । ଖଟ ଖାଟ୍ କରି ଶବ୍ଦ ହେଉଛି । ଆଉ ଭୁକି ଉଠୁଛି କାରିୟା । ପରସାଦୀ ପଚାରିଲା, ଏଇଟା ଏତେ ଭୁକୁଛି କାହିଁକି ?"

"ଅପସନ୍ଦ" ।

'ସାତପୁଡ଼ିଆ ସୀମ ଗଛଟା ଯାର ଇଲାକାରେ ପଡ଼ିଚି ବୋଧେ ।'

"ହଁ, ଏଇଆ ହେବ ନା କଣ ?"

"ନୂଆ ପୁଅ ପାଇଛି ।"

"ସାତ ଜନମର ପୁଅ ।"

ଏ ସଂବଂଧରେ ସ୍ୱାମୀକୁ ଆଉ ବେଶୀ କଥା କହିବାର ସୁଯୋଗ ନ ନ ଦେବା ପାଇଁ ମନଚନିୟା କଳସୀ ନେଇ ବାହାରିଗଲା ସରକାରୀ ଇଂଦାରଚଲକୁ ।

ପରସାଦୀ ବି ସ୍ୱସ୍ତିର ନିଶ୍ୱାସ ନେଲା । ଗୋଟାଏ ଅସ୍ୱସ୍ତିକର ଜାଗାରେ ଆସି ପହଂଚିଥିଲା ଦୁଇଜଣଙ୍କ କଥାବାର୍ତ୍ତା, ନିଜ ନିଜର ଅଜାଣତରେ ।

ଆଜି ସେମାନଙ୍କୁ ଯିବାକୁ ହେବ ହରଦା-ହାଟକୁ ତରକାରୀ କିଣିବା ସକାଶେ । ଟିକିଏ ସହଳ ସହଳ ବାହାରିବାକୁ ହେବ । ତେଣୁ ପରସାଦୀ ଚୁଲୀ ଧରଇବାକୁ ବସିଲା । ଲକଡ଼ିଟା କାଠି ଭାଙ୍ଗିବାର ଶବ୍ଦ ଶୁଣି କାରିୟା ଭ୍ୟାଉ-ଭ୍ୟାଉ କରି ଭୁକି ଉଠିଲା ।

"ବାବାରେ ବାବା ! କୁଟାଟିଏ ଗର୍ଜିବାର ନୋ ନାହିଁ ।"

ସତରେ ସେଇଆ । କାଉ ମଂଗ୍ରରେ ବସିଲେ କାରିଯା ଭେଉ-ଭେଉ କରେ । ପରସାଦୀ ଅଗଣାରେ ଚଲପେଗ କଲେ ଘେଉ-ଘେଉ କରେ । ଘର ଏକ ଉପରେ ଚିଲ ବସିବାର ଦେଖିଲେ ଚିତ୍କାର କରେ । ଦରଜା ବାହାରେ ବିଲେଇ ଦେଖିଲେ ଡାକି ଉଠେ । ...ସମସ୍ତେ ଶତ୍ରୁ, ସମସ୍ତଙ୍କ ପାଖରୁ ବିପଦ ଆସିପାରେ; ଆଖି ଅନ୍ଧାରରେ ରଖ; ଅଗୁଳି ରହ; ବିପଦର ଗଂଧ ନାକରେ ବାଜିଲେହିଁ ଡାକ ଛାଡ଼ି ଭୟ ଦେଖାଅ; ଆଖି, କାନ, ନାକ ସବୁ ଖୋଲି ରଖ ଚବିଶ ଘଂଟା, କାହାକୁ ବିଶ୍ୱାସ ନାହିଁ; ଶତ୍ରୁ ଆକ୍ରମଣ କରିବା ଆଗରୁ ତା ଉପରେ ଝାଁପି ପଡ଼; ସମୟ ଦେଲେ ହିଁ ଆଉ ପାରିବୁ ନାହିଁ ତା' ସାଂଗରେ ।

ଜଳା ମୁହଁରେ ଗୋଟାଏ ନେଉଳ ଦେଖି ବତକଘରୁ ଛୁଟି ଆସିଲା କାରିଯା । ଚୁଲୀ ପାଖରେ ବେଶ୍ ଭଲ କରି ଦେଖିଲା କୁକୁରଟାକୁ ପରସାଦୀ । ...ଆଖି ଦୁଇଟା ଲାଲ ହୋଇ ଉଠିଛି କାରିଯାର । ନୂଆ ବଚ୍ଚା ହେବାର ସବୁ ଲକ୍ଷଣ ତା ଦେହ ଆଉ ହାବଭାବରେ ସୁସ୍ପଷ୍ଟ । କୁକୁରଛୁଆଟା ବି ତା ପଛେ ପଛେ ବତକଘରୁ ବାହାରି ଆସିଲା । ନେଉଳଟା ଭୟରେ ପଳାଇଛି । ତଥାପି କାରିଯାର ହାବଡ଼ାକ, ଲଂଫ, ଝଂପ ବନ୍ଦ ହୁଏନା । ......ଦୁଧ ଭରରେ ଝୁଲି ପଡ଼ିଥିବା ବୁକୁଟା ପ୍ରାୟ ମାଟିରେ ଲାଗି ଯାଉଛି । ଚଂଚଳ ଅବସ୍ଥାରେ ବି କୁକୁର ଛୁଆଟା କାରିଯାର ବୁକୁ ଘୁଟିବା ଛାଡ଼ି ନାଇ । ......କିନ୍ତୁ ଇଏ କଣ ? ......ଠିକ୍ ତ ସେଇଆ । ···କିଛି ଭୁଲ ନାହିଁ । ...ଇଏ କିପରି ସଂଭବ ହେଲା ? ...ସେ ଦିଟା ପୁଣି ଢୁକିଗଲେ ବତକଘର ଭିତରେ । ...ଅବାକ୍ ହୋଇଗଲା ପରସାଦୀ । ଜନ୍ତୁ ଜାନୋୟାରମାନଙ୍କର ଯେ ଏମିତି ହୋଇପାରେ ସେକଥା ତାକୁ ଜଣା ନ ଥିଲା । ମନଚନିଯା କଣ ଦେଖୁଚି ? ମନଚନିଯାକୁ ଖବରଟା ଦେବ କି ? ପରସାଦୀର ତ ଇଚ୍ଛା ହେଉଚି ସାହୀ ଲୋକଙ୍କୁ ଡ଼ାକି ଆଣି ତାମାସାଟା ଦେଖାଇବ । କିନ୍ତୁ ସେ ଉପାୟ ଯେ ନାଇଁ, ତା ମୁହଁତ ବନ୍ଦ ।......

ହିରଦା-ଘାଟ ଯିବା ସମୟରେ ମନଚନିଯା କଥା ଉଠାଇଥିଲା କୁକୁର ଟିକା ସମ୍ବନ୍ଧରେ । ଖାଇବାକୁ ଡ଼ାକିଲେ ବି ଆଜି କାରିଯା ବତକଘରୁ ବାହାରି ନାଇଁ । ନା ଖାଇଲା ନିଜେ ନା ଖାଇବାକୁ ଦେଲା ବଗ୍ଧଟାକୁ ବଗ୍ଧଟା ପାଇଁ ହିଁ ଭାବନା ଚେଷ୍ଟା ।.....

"ଆରେ, ନଖାଇ କିଏ କଣ ରହିପାରେ ?" କହିବ କହିବ କରି ବି

ମନଚନିୟା ଯାଠୁ ପରିଷ୍କାର କରି କଥାଟାକୁ ପରସାଦୀ କହି ପାରିଲା ନାହିଁ ମନଚନିୟାକୁ । ତେବେ ମନଚନିୟା ବୁଝିଲେ ତ ! ବୁଝିଲା କେଉଁଠି ?...

ଘର ଫେରୁ ଫେରୁ ବେଳ ବୁଡ଼ିଗଲା । ଏତେ ଟିକିଏ ବଛା ସାରଦିନ ନଖାଇ ରହିଛି, ଇଏ ଏକ ଦାରୁଣ ଅସ୍ବସ୍ତି ମନଚନିୟାର । ଟିଣ ଡବାର ଜାକୁଣିଟା ନେଇ ସେ ଗଲା ବତଙ୍କ ଘର ଆଡ଼କୁ ।

"ବଛା ! ବଛା ! ଆ–ତୁ–ଉ–ଭ ଆ ! କୁର୍–କୁର୍–କୁର୍–କୁର୍–କୁର୍ ।"

ପରସାଦୀ ଘର ଭିତରୁ କହିଲା–"ଇଏ ଆଉ ଆସିବ !"

ସତରେ ବଛାଟା ଆସିଲା ନାହିଁ ।

ଦରଜା ଫାଙ୍କରେ ମୁହଁ ବଢ଼ାଇ ଭ୍ୟାଉ–ଭ୍ୟାଉ କରି ଡାକୁଚି କାରିୟା । ଦାନ୍ତ ବାହାର କରି ଯେମିତି କାମୁଡ଼ିବାକୁ ଆସୁଚି ।

"ତୁ ଡାକି ମରୁଚୁ କାହିଁକି ? ଚୁପ୍ କର ।"

ହାତ ବଢ଼ାଇବା ମାତ୍ରେ ରଗି ବାହାରି ଆସିଲା କାରିୟା । ଚିହ୍ନା କାରିୟା ନୁହେଁ । ଏ ଏକ ବେଳେକେ ଅନ୍ୟ ମୂର୍ତ୍ତି । ବ୍ୟାପାରଟା ଭଲଭବେ ବୁଝିବା ଆଗରୁ ଶତ୍ରୁ ଉପରେ ଝାଁପି ପଡ଼ିଛି ସିଏ । ଆମୁଡ଼ି କାମୁଡ଼ି ଛିଣ୍ଡାଇ ଟିକି ଟିକି କରିଦେବାକୁ ଚାହେଁ ସେ ମନଚନିୟାକୁ । ମନଚନିୟା ଛିଟିକି ଯାଇ ପଡ଼ିଛି ଲଉଗଛଟା ଉପରେ, ପିନ୍ଧା ଶାଢ଼ୀ ଛିଣ୍ଡି ଟିକି ଟିକି ହୋଇଯାଇଛି । ହାତର ଗୋଟାଏ ଜାଗାରୁ ରକ୍ତର ଧାର ବୋହୁଛି । ପରସାଦୀ ଆସିଛି ହୋ-ହୋ କରି ଲଠି ନେଇ । କିନ୍ତୁ ମନଚନିୟାର ଏସବୁ କଥାକୁ ଖିଆଲ ନାହିଁ । ବତଙ୍କଘରେ ଢୁକିଯିବା ସମୟ ପର୍ଯ୍ୟନ୍ତ ସେ କାରିୟାର ବୁକୁ ଉପରୁ ନଜର ଫେରଇ ନାହିଁ । ...କ୍ଷୀର ଆହିଛି କାରିୟା ବୁକୁରେ । ...ଏଇ ଗରମ, ଓଦାଳିଆ, ଝଇଥଲିଆ ମାଂସପିଣ୍ଡର ଘର ତା' ହାତ ଉପରେ ପଡ଼ିଥିଲା ଯେତେବେଳେ କୁକୁରଟା ତା ଉପରେ ଝାମ୍ପି ପଡ଼ିଥିଲା । ...ହଁ, ହଁ ଓଦା ଲଗୁଚି । କ୍ଷୀର ଝରି ପଡ଼ୁଥିଲା କାରିୟା ବୁକୁରୁ । ଏବେ ବି କ୍ଷୀର ଲଗି ରହିଛି ତା ହାତର ସେଇ ଜାଗାଟାରେ ।

ତା ନିଜ ଅଭିଶାପର ବୋଝ ଜଗଦଲ ପଥରଠାରୁ ବି ଅଧିକ ଭରୀ ହୋଇ ଉଠିଛି ।

# ସୀମାରେଖାର ସୀମା

## ଆଶାପୂର୍ଣ୍ଣା ଦେବୀ

ସମସ୍ତେ ହାରି, ଫେରି ଯାଇଛନ୍ତି ।

ଶେଷ ପର୍ଯ୍ୟନ୍ତ ସତୀନାଥ ନିଜେ ତିନତାଲକୁ ଉଠି ଆସିଲେ । ତୀବ୍ର ସ୍ୱରରେ କହିଲେ, "ଅସଭ୍ୟତାର ଗୋଟାଏ ସୀମା ଥାଏ ଛବି, ଥିବା ଉଚିତ । କିନ୍ତୁ ଏଇ ବାହାଘର ଭର୍ତ୍ତି ଲୋକଙ୍କ ସାମନାରେ ଯେଉଁ ଅସଭ୍ୟତା କଲୁ ତୁ, ତାର ସୀମା ନାହିଁ । ମୋତେ ତ ଏତେ ଗୁଡ଼ାଏ ଆତ୍ମୀୟ-କୁଟୁମ୍ବଙ୍କ ସାମନାରେ ଧୂଳିରେ ମିଶାଇଦେଲୁ, ନିଜେ ମଧ୍ୟ ହାସ୍ୟାସ୍ପଦ କମ୍ ହେଲୁ ନାହିଁ । ଏଥର ଚାଲ୍, ଦୟାକରି !"

ତିନିତାଲ ଛାତରେ ଘରର 'ସ୍ୟାଂସନ୍' ନଥିଲା । ତଥାପି ଛବି ପାଇଁ ଘରଟା ବନା ଯାଇଥିଲା ଟାଇଲ ଛାତ ଦେଇ । ଛବିର ଏହି ଟାଇଲ ଛାତର ଘରଟା ଭିତରେ ଆଲୁଅ ଜଳୁ ନଥିଲା । ଖାଲି ତଳତାଲରୁ ପେଣ୍ଡେଲରେ ଅସଂଖ୍ୟ ଆଲୁଅର ଗୋଟାଏ ଗୋଟାଏ ତୀର୍ଯ୍ୟକ ରେଖା କେମିତି ଯେପରି ଆସି ଘରର ଦରଜାଟାକୁ ସାମାନ୍ୟ ଆଲୋକିତ କରିଥିଲା !

ସେଇ ଦରଜା ଧାରରେ ହାତ ରଖି ଛିଡ଼ା ହୋଇଥିଲା ଛବି, ହାତର ସେଇ ଆଙ୍ଗୁଠି କେଇଟାଟି ଆଉ ଗାଲର ଗୋଟାଏ ପାଖ ଦେଖା ଯାଉଥିଲା କେବଳ ତାର । କିନ୍ତୁ ସେତିକି ଦେଖାରେ ଛବିର ମୁହଁର ଭାବ ଧରା ପଡ଼ୁ ନଥିଲା ।

ଧରା ପଡ଼ୁ ନଥିଲା-ଇଲାଗେ ଆଗପରି ଅନମନୀୟ, ନା ନରମ ହୋଇ ଆସିଛି ।

ସତୀନାଥ ଡାକି ଆସିବା ପରେ ଯଦି ପୂର୍ବ ଅବସ୍ଥାରେ ଥାଏ, ଧରି ନେବାକୁ ହେବ, ଛବି ମଧ୍ୟ ତା ସ୍ୱାମୀପରି ପାଗଳ ହୋଇଯାଇଛି ।

କିନ୍ତୁ ଅବସ୍ଥାର ପରିବର୍ତ୍ତନ ବୁଝାଗଲା ନାହିଁ । ଛବି ଅଦ୍ଭୁତ ଶୃଙ୍ଖଳ ଗଳାରେ କହିଲା, "ତୁମେ କିଆଁ କଷ୍ଟ କରି ଆସିଲ ଦାଦା (ବଡ଼ଭାଇ), ମୁଁ ତ କହିଦେଇଛି ।"

"ହଁ, ଜାଣେ–" ସତୀନାଥ କ୍ରୁଦ୍ଧ ଓ କ୍ଷୁବ୍ଧ ସ୍ୱରର ସମିଶ୍ରଣରେ କହିଲେ, "ଜାଣେ ଘରସାରା ସମସ୍ତେ ଏକେ ଏକେ ତୋତେ ଖୋଶାମୋଦ କରିବାକୁ ଆସିଲେ, ଆଉ ତୁ ସମସ୍ତଙ୍କୁ ହୁଟ୍–ଆଉଟ୍ କରି ଦେଇଛୁ 'ଖାଇବି ନାହିଁ, ତଳକୁ ଓହ୍ଲାଇବି ନାହିଁ' କହି । ତୋ ଭଉଜବୋହୂ ତ ଶୁଣିଲି ହାତ ଯୋଡ଼ିକରି ଫେରି ଯାଇଛନ୍ତି । ସେଥିରେ ବି ତୋର–"

ଛବିର ମୁହଁ ଏଇକ୍ଷଣି ଦେଖା ଯାଉନାହିଁ ।

ଛବି ଯଦି ଘର ଭିତରୁ ଟିକିଏ ବାହାରକୁ ଆସନ୍ତା, ହୁଏତ ଦେଖା-ଯାଆନ୍ତା, କିନ୍ତୁ ବାହାରୁ ନାହିଁ ଛବି । ଯେମିତି ଘରର ଦରଜା ଭିତରେ ତାକୁ କିଏ ଗାର କାଟି ଦେଇ ଅଟକାଇ ରଖି ଦେଇଛି, ସୀତାଙ୍କ ପରି । ଏହି ଚୌକାଠ ଡେଇଁଲେ ହିଁ ରାବଣ ହାତରେ ପଡ଼ିଯିବ ସେ ।

କିନ୍ତୁ ଦରଜାଟା ବନ୍ଦକରି ପକାଇ ନିଜକୁ ଯେ ଛବି ବିଛଣାରେ ପକାଇବ ଏ ଅବକାଶ ମିଳୁନାହିଁ । ସେଇ ସନ୍ଧ୍ୟାବେଳୁ ଖାଲି ଲୋକ ପରେ ଲୋକ ଆସୁଛନ୍ତି ଛବିକୁ ଡାକିବା ପାଇଁ ।

"ଏ ଛବି, ପାଞ୍ଚଶ ଲୋକ ଆସିଛନ୍ତି ତଳେ, କେତେ ଜଣ ଖୋଜିଛନ୍ତି 'ଛବିଛବି' କରି, ଆ ଥରେ । ...ଓ ଛବି, କି ରୂପର ଜ୍ୱାଇଁ ହୋଇଚି ତୋ ଦାଦାର; ଦେଖିବୁ ନାହିଁ ଥରେ ?' ...'ପିଇସି ମା, ସଂପ୍ରଦାନର ଘରେ କଣ ସବୁ ତୁମେ କରି ଆସନି, ବାବା ଗଗି ନିଆଁ ହୋଇପାଇଛନ୍ତି । ଆସ ଜଲଦି ।"

କିନ୍ତୁ ଛବି ଅଟଳ ।

ଛବିର ଦୁର୍ଜ୍ଜୟମାନ ଭଙ୍ଗୁ ନାହିଁ ।

ଛବି କହୁଚି, 'ମୁଣ୍ଡ ବିନ୍ଧୁଚି ।'

ଅଥଚ ସାରଦିନ କିଛି ନଥିଲା ।

କେଉଁଦିନ ବି କିଛି ନାହିଁ । ମୁକ୍ତରୁ ବାହାଘରର ସବୁ କାମହିଁ ଛବି ସମ୍ଭାଳିଛି । ...ରନ୍ଧାଘର, ଭଣ୍ଡାର ଘର, ଖାଇବା ଘର, ପୂଜାଘର ଚରକି ପରି

ଘୂରି ବୁଲିଚି ଛବି, ଏହା ମଧ୍ୟରେ ଠିକ୍ ଏଇ ବାହାଘର ସନ୍ଧ୍ୟାର କେଉଁ ଫାଙ୍କରେ ଯେ ସେ ଘଟନାଟିକକ ଘଟି ଯାଇଛି, ଆଉ କେଉଁ ଫାଙ୍କରେ ଛବି ସେହି ତୁଚ୍ଛ ଘଟନାଟିକୁ ଉଚ୍ଚ କରି ପକାଇ ଅଭିମାନରେ ଶଯ୍ୟା ନେବାକୁ ଯାଇଛି, ତା କିଏ ଖିଆଲ କରି ନାହିଁ । ତାକୁ ଖୋଜା ପଡ଼ିଥିଲା ସଂପ୍ରଦାନ ସମୟରେ ।

ଛବି କେଉଁଠି ? ଛବି ?

ଗଣ୍ଠି ବନ୍ଧାର ହଳଦି କଉଡ଼ି କେଉଁଠି ରଖିଥିଲା ଛବି ? କନ୍ୟାର ଇଚ୍ଛାବସ୍ତ୍ର ? ମିଳୁ ନାହିଁ ଦରକାର ସମୟରେ ।

ମିଳିଲା ଅବଶ୍ୟ ସେକ୍ଷଣି, ପାଖରେ ହିଁ ଥିଲା । କିନ୍ତୁ କେହି ପାଖରେ ବସି ହାତେ ହାତେ ଯୋଗାଇ ନ ଦେଲେ ଅସୁବିଧା ନାହିଁ ? ଆଉ ଖାଲି ଏତିକି ତ ନୁହଁ, ନିୟମକର୍ମର ସବୁ କିଛି ତ ଛବିର ଅକ୍ତିଆରରେ । କନ୍ୟା ମା କେତେ ଆଡ଼େ ହେବ ? ଅଭ୍ୟାଗତ ମାନଙ୍କର ଅଭ୍ୟର୍ଥନା କରିବ କିଏ ?

କିନ୍ତୁ ସବୁ ଜାଣି ମଧ୍ୟ ସବୁଠୁ ଘମାଘୋଟିଆ ସମୟରେ ହାଓ୍ୱା ହୋଇଗଲା ଛବି ? ଛି, ଛି ! ଧମକ ଖାଇଥିବା ସ୍ୱାମୀକୁ ସୁଆଗ କରିବାକୁ ଗଲା ଆଉ କଣ ? କିନ୍ତୁ ଏଇ କଣ ସମୟ ? ପାଗଳ–ଛାଗଳ ମଣିଷ, ଆହୁରି କଣ କରିବାକୁ ଯାଇ କଣ କରିବ, ତାକୁ ନିଦ ଔଷଧ ଖୁଆଇ ଶୁଆଇ ରଖି ନିଶ୍ଚିନ୍ତ ହୋଇ ଓହ୍ଲାଇ ଆ ? ବର କନ୍ୟା ବାସରରେ ବସିଲେ ସେତେବେଳେ ବରଂ ସଜାଡ଼ି ଭେଜି ଭତ ସଜାଇ ନେଇ ସ୍ୱାମୀକୁ ନିଦରୁ ଉଠାଇ ଖୁଆଇ ସୁଆଗ କର ।

ଇଏ କଣ ?

ଏ ଯେ ବରଦାସ୍ତ କରିବା କଠିନ !

ଏଇ ଘରଭର୍ତ୍ତି ଲୋକଙ୍କ ସାମନାରେ ତୁ ତେଜକରି ସ୍ୱାମୀକୁ ନେଇ ଘରେ ବସି ରହିଛୁ, କହୁଚୁ କଣ ନା 'ଇଏ ଖାଇବ ନାହିଁ, ମୁଁ ଖାଇବି ନାହିଁ !' ଛି ଛି ! ଏମିତି ଯେ କ୍ୱାଇଁ ହେଲ, ଦାଦାର କେତେ ଆମୋଦ-ଆହ୍ଲାଦ ହେଲ, ବିବାହ ସମୟରେ, ସ୍ତ୍ରୀ-ଆଚ୍ଛର ସମୟରେ ଦେଖିଲୁ ନାହିଁ ଥରେ ? ଏପରିକି ଖାଇବାରେ ମଧ୍ୟ ତେଜ ଦେଖାଉଛୁ ? ଏଇ ଉତ୍ସବ, ଏଇ ରଂଧାବଢ଼ା, ମାଛ-ମିଠାଇ, ଏଣ୍ଡୁ-ଡେଣ୍ଡୁ, କିଛି ତାର ଦାନ୍ତରେ କାଟିବ ନାହିଁ

ଦି ଟା ମଣିଷ ? ଉପାସ କରି ପଡ଼ି ରହିବ ।

ଝିଆରୀର କଲ୍ୟାଣ-ଅକଲ୍ୟାଣ ଦେଖିବୁନି ? ଭଇ ଭଉଜଙ୍କ ମୁଣ୍ଡ ତଳକୁ କରିଦେବୁ ? ଇତରତାର କଣ ମାତ୍ରା ନାହିଁ ?

ଦାଦା, ତୋଠୁ କୋଡ଼ିଏ ବର୍ଷ ବଡ଼ ଦାଦା । ବାପ ପରି କହିଲେ ଚଳେ, ବାପ ଭଳି ତୋତେ ମଣିଷ କରିଛନ୍ତି, ବାହା ବି ଦେଇଛନ୍ତି । ଆଉ ତାପରେ ବାରମାସ ତିରିଶଦିନ ତୋତେ ଆଉ ତୋର ପାଗଳ ବରକୁ ପୋଷୁଛନ୍ତି, ଘର ବନେଇ ଦେଇଛନ୍ତି ତମ ପାଇଁ । ସେଇ ଦାଦା ଯଦି ପାଗଳାଟାକୁ ଗୋଟାଏ ଧମକ ଦେଇଥାନ୍ତି, କି ଗୋଟାଏ ଧକ୍କା ମାରିଥାନ୍ତି, ଏଇଭଳି ବ୍ୟବହାର କରିବୁ ତୁ ? କୃତଜ୍ଞତାର ଚିହ୍ନବର୍ଣ୍ଣ ନାଇଁ ତୋ'ଠାରେ ?

ଏତେ ବଡ଼ ଅକୃତଜ୍ଞତା କରି କେମିତି ଦେଖାଉଛି ଛବିକୁ, ସେଇ ଦୃଶ୍ୟ ଦେଖିବାକୁ ବୋଧହୁଏ ଏଇ ଟାଇଲ୍‌ଛାତ ଘରର ଦରଜା ପାଖରେ ରଥ-ଦୋଳର ଭିଡ଼ ଲଗି ଯାଇଛି ସେତିକିବେଳୁ ।

ଅନେକେ ପୁଣି ସହାନୁଭୂତି ଦେଖାଉଛନ୍ତି !

ଚୁପ୍ ଚୁପ୍ କରି ଅବଶ୍ୟ ।

କାରଣ ଯାହାର ଘର ତା ବିପକ୍ଷ ଦଳଭୁକ୍ତ ହୋଇ କଥା କହିଲାବେଳେ ଚୁପ୍‌ଚୁପ୍ ହିଁ ଭଲ । ଫୁସ୍‌ଫୁସ୍ କରି କୁହାଯାଏ, 'ଆହା !', କୁହାଯାଏ, 'ମରିଯାଏଁ, ଛୋଟ ଭଗ୍ନୀପତିଟା ପାଗଳ ମଣିଷ, ବୁଝେନା ବୋଲି ତ ଏମିତିକା କାମଟାଏ କରି ପକାଇଥିଲା; ତା ବୋଲି ତୁମେ ଜଣେ ବିଜ୍ଞ, ବିଚକ୍ଷଣ ବ୍ୟକ୍ତି, ତମରି ଝିଅର ବାହା ଦଦାକୁ ବସିଚ, ସେଇ ଶୁଭଦିନରେ ତାକୁ ବେକରେ ଧକକା ଦେଇ ଫିଙ୍ଗିଦେଇ ? ଭଉଣୀଟା ତମ ପାଖରେ ପଡ଼ି ଅଛି ବୋଲି ତ ଏମତିକା କାମଟାକରି ପାରିଲ ? ପଇସାବାଲୀ ଭଗ୍ୟବାନୀ ଭଉଣୀ ହେଲେ ପାରିଥାନ୍ତ ?

କିନ୍ତୁ ତଳକୁ ଓହ୍ଲାଇ ଯାଇ ସେଇମାନେ, ଗଗରେ ଆଠଖଣ୍ଡ ହୋଇ ଓଲଟା ଗାଇବାକୁ ବସିଛନ୍ତି ।

ନ ବସବେ କାହିଁକି ?

ସେମାନେ କଣ ଖ୍ରୀଷ୍ଟ-ନା ଶ୍ରୀ ଚୈତନ୍ୟ ଯେ, ଗଗ ନାଇ ଶରୀରରେ ?

ଏଇ ସହାନୁଭୂତିର ଉତ୍ତରରେ ଛବି ଯଦି ଆଖିରୁ ଲୁହ ନ ଗଡ଼ାଏ, ଯଦି କହେ, 'ଏ ସବୁ କଥା ମୋତେ ଭଲ ଲାଗୁ ନାହିଁ, ଆପଣମାନେ ତଳକୁ ଯାଆନ୍ତୁ—

ତା ହେଲେ ?

ଖ୍ରୀଷ୍ଟ-ଚୈତନ୍ୟଙ୍କର ମଧ୍ୟ ରାଗ ହୁଅନ୍ତା ଏଥିରେ ।

କିନ୍ତୁ ଏ ସବୁ ତ ସାଂଧ୍ୟ ଲୀଳା!

ରାତିରେ, ଅନେକ ରାତିରେ, ଯେତେବେଳେ ବାହାରୁ ଆସିଥିବା ଲୋକମାନେ ବିଦାୟ ନେଇଛନ୍ତି, ଘର ଲୋକଙ୍କର ଖାଲି ଖାଇବା ବାକି, ଯେତେବେଳେ ସତୀନାଥ ତାଙ୍କ ଜ୍ୱାଇଁର ରୂପ-ଗୁଣରେ ମୋହିତ, ଏବଂ ନିଜର କ୍ୟାପାସିଟିର ଆହ୍ଲାଦରେ ଭରପୂର,ସେତେବେଳେ ହଠାତ୍ ପ୍ରଶ୍ନ କଲେ, 'କ୍ଷିତୀଶ ଖାଇଛି ?'

ସେତିକିବେଳେ ବୋଧହୁଏ ମନେପଡ଼ିଲା, ଅସଭ୍ୟଙ୍କ ପରି ସେ ଟାଏ ଝିଅଙ୍କ ଉପରେ ଗଦାଏ ଲୁଚି, ମିଠା, ଚପ୍ ଫ୍ରାଇ ନେଇ ଆସର ମଝିରେ ଖାଉବାରେ ଲାଗିଛି ଦେଖି କ୍ଷିତୀଶକୁ ସେ ପ୍ରଚଂଡ଼ ଗୋଟାଏ ଧମକ ଦେଇ ବେକରେ ହାତ ଦେଇ ବାହାର କରିଦେଇଥିଲେ ଆସରରୁ ।

କାର୍ଯଟା ଟିକିଏ ଗର୍ହିତ ହୋଇଥିଲା, ଅସ୍ୱୀକାର କରୁନାହାନ୍ତି ସତୀନାଥ, କିନ୍ତୁ ତାଙ୍କର ବି ତ ରକ୍ତମାଂସର ଶରୀର ?

ସେଇମାତ୍ର ବରଯାତ୍ରୀ ଦଳ ଆସି ଆସରରେ ବସିଛନ୍ତି, ଏବଂ ସତୀନାଥ କନ୍ୟାଦାନ କରିବେ ବୋଲି ସେପର୍ଯ୍ୟନ୍ତ ଅଭୁକ୍ତ ରହିଛନ୍ତି, ସେଇ ଉଦ୍‌ବେଗରେ ଅଧୀର, ଉତ୍କଣ୍ଠାରେ ଚଞ୍ଚଳ, ଆଉ ଆଶଙ୍କାରେ ଥରଥର ସଙ୍ଗୀନ୍ ସମୟରେ ଏ କୁତ୍ସିତ, ବିଭତ୍ସ ଦୃଶ୍ୟ ସହ୍ୟ କରିବା କଣ ସହଜ ?

ସହ୍ୟ କରି ପାରି ନାହାନ୍ତି ସତୀନାଥ ।

କିନ୍ତୁ ପାଗଳାଟା ଯେ ସେଥିରେ ଅପମାନରେ ଖଣ୍ଡଖଣ୍ଡ ହେବ, ତା ମଧ୍ୟ ଆଶଙ୍କା କରି ନଥିଲେ ।... ଘୂରି ଯାଇ ପୁଣି ହାଲୁଇକରମାନଙ୍କ ପାଖରେ ଯାଇ ବସିବ, ଏଇ ରକମର ଗୋଟାଏ ଅନ୍ଦାଜ ଥିଲା । ଜାଣି ପାରିଲେ ଛବିର ଅନୁପସ୍ଥିତିରୁ । ଛବି ବିହୀନେ ଖାଲି ସେ ତ ଅସୁବିଧାରେ ପଡ଼ି ନାହାନ୍ତି ସାରା ଘରଟାରେ ନାନା ବିଶୃଙ୍ଖଳା ଦେଖାଦେଇଛି ଆଉ 'ଛବି, ଛବି' ରବ ପଡ଼ି-ଯାଇଛି ।

ସେଇ ସମୟରେ ବଡ ଶାଳୀ ଏଇ 'ଦାନ'ର ଆସରରେ ହିଁ କାରଣଟା ଉଦ୍ ଘାଟିତ କରିଦେଲେ ।

'କେଜାଣି ଭଇ, ଶୁଣିଲି ତୁମେ ନା କୁଆଡେ କେତେବେଳେ ତମ ଭିଣେଇକୁ ଯାଚ୍ଛାତାଇ କରିଛ, ବେକରେ ଧକ୍କା ଦେଉଚ, ତେଣୁ ଭଉଣୀ ତମର ମନ ଦୁଃଖରେ ବରକୁ ନେଇ ନିଜ କୋଠରୀରେ ଯାଇ ବସିଅଛି । ସେତିକିବେଳୁ ଓହ୍ଲାଇ ନାଇଁ । ଭିଣେଇଟି ବୋଧହୁଏ ହାଲୁଇକରମାନଙ୍କ ପାଖରେ ତମ୍ବି ତୋଫାନ କରି ଏକ ଥାଳୀ ଖଇବା ଯୋଗାଡ କରିଥିଲା । ସେ ସବୁ ଅଗଣାରେ, ଚଉତରରେ, ସିଢ଼ିରେ ପଡ଼ି କି କାଣ୍ଡ ! ଗଗି କରି ଫିଙ୍ଗା ଫୋପଡ଼ା କରିଯାଇଛି । ସେ ନହେଲା ପାଗଳ, ଭଉଣୀଟି ତ ପାଗଳ ନୁହେଁ ।

ଏଇ ଯୁକ୍ତିପୂର୍ଣ୍ଣ ପ୍ରଶ୍ନରେ ସତୀନାଥ ବି ସେତେବେଳେ ପାଗଳ ହୋଇ-ଉଠିଥିଲେ, ନିହାତ୍ 'ଦାନ'ର ଆସନରେ ବସି ଉଚିତ ବ୍ୟବସ୍ଥା କରି ପାରିନଥିଲେ । କିନ୍ତୁ ବର୍ତ୍ତମାନ ମନରେ ଉଦାରତାର ସ୍ୱର ବାଜୁଛି, ବର୍ତ୍ତମାନ ପ୍ରଶ୍ନ କରଯାଏ କ୍ଷିତୀଶ କାହିଁ, କ୍ଷିତୀଶ ଖାଇଚି ?

ଅନୁକୁ ସଂଧ୍ୟାବେଳୁ ପ୍ରାୟ ପଚିଶ ଜଣ ଯାଇ ଛବିକୁ ଲଗାଇଛନ୍ତି ବାହାଘର ଦେଖିବାକୁ, ପାଂଚଜଣଙ୍କ ପାଖରେ ଆସି ବସିବାକୁ, ପଂକ୍ତିରେ ବସି ଖାଇବାକୁ । ପାହାଡ ପରି ଅଚଳ ହୋଇ ବସିଛି ଛବି, ତଳକୁ ଅଣାଯାଇ ପାରି ନାହିଁ ତାକୁ ।

ଏଭଳି ଅସଭ୍ୟତାର କାହାଣୀ ସବୁଟା ଶୁଣିଲେ ପୁଣି ସ୍ତ୍ରୀଙ୍କ ମୁହଁରୁ । ତା ପରେ ଯେ ତାଙ୍କ ମନରେ ଉଦାର ରାଗିଣୀ ବାଜିବ, ଏ ଆଶା କରଯାଇ ପାରେନା ।

ରାଗି ମାଗି ଗଲେ ତିନିତଲକୁ ।

କହିଲେ, ନ ହେଲା ହାତଯୋଡୁଚି । ଥରେ ଆମ ସଙ୍ଗେ ଖାଇ ବସିବୁ ଚାଲ୍ ।

ଛବିର କଣ ଗଲା କଂପିଲା ?

ନା ସତୀନାଥର ମନର୍ ଭ୍ରମ ?

ବୋଧହୁଏ ଭ୍ରମ ହିଁ । ଛବି ତ ଖୁବ୍ ପରିଷ୍କାର ଗଳାରେ କହୁଛି, "ଏ ସବୁ କାହିଁକି କହୁଚ ଦାଦା, ମୁଁ ତ କହିଚି ମୋର ଖାଇବାର କ୍ଷମତା ନାହିଁ ।

ଖାଇ ପାରିବି ନାହିଁ । ମୁଂଡରେ ଯଂତ୍ରଣା ହେଉଛି ।

ଅମଳକୁ ଦେଖି ହାତଟା ଗେକିଲ । ଦରଜାଟା ଅଧେ ସେମିତି ବନ୍ଦ ରହିଲ ।

ଅମଳ ଭବିଲ, ଫସ କରି କଣ ଗୋଟାଏ ଡିଆସିଲି କାଠି ଜଳାଇବ ?

କିନ୍ତୁ ଜଳାଇଲ ନାହିଁ ।

କହିଲ, 'ଆଲୁଅଟା ଜଳା ନା ।"

ଛବି ଆଗ ଭଳି ଶୁଖିଲ ଗଳାରେ କହିଲା, କଣ ଦରକାର ?

'ଦରକାର ଅବଶ୍ୟ ନାହିଁ, କିନ୍ତୁ ତମକୁ କେମିତି ଯେପରି ଭୌତିକ—ଭୌତିକ ଲାଗୁଚି, ସେଥିପାଇଁ—।"

ଛବି ପ୍ରତିବାଦ କଲା ନାହିଁ, ଗୃଞ୍ଜଲ୍ୟ ପ୍ରକାଶ କଲା ନାହିଁ, କୈଶୋର ସ୍ମୃତିର ମର୍ଯ୍ୟାଦା ରକ୍ଷା କରିବାକୁ ଏଇ କୌତୁକ-କଥାରେ ହସି ବି ଉଠିଲା ନାହିଁ । ଛବି ଖାଲି ଛବିଟି ପରି ଛିଡ଼ା ହୋଇ ରହିଲା ସେଇ ଛାୟା-ଛାୟା ଅନ୍ଧାରରେ ।

ଅମଳ ଛବିର ଘରର ଭିତରଟା ଦେଖିପାରୁ ନଥିଲା, ଅଧେ ବନ୍ଦ ଦରଜାରେ ହାତ ରଖି ଛିଡ଼ା ହୋଇଥିଲା ଛବି । ତେଣୁ ଅମଳ ଘରର ମଝିଟା ଦେଖିବ ବୋଲି ବୃଥା ଚେଷ୍ଟାକରି କହିଲା, "କ୍ଷିତୀଶ ବାବୁ ଶୋଇଛନ୍ତି ।"

ଏଥର ଛବି ଅକାରଣରେ ଯେମିତି ଟିକିଏ ହସିଲା । କହିଲା, 'ହଁ' ।

'ଶୁଣିଲି ସତୀନାଥଦା ତାକୁ 'ଇଏ' କରିଛନ୍ତି, କିନ୍ତୁ, ଛବି, ତଥାପି ତୁମେ ଏତେଟା ନକରି ତ ପାରିଥାନ୍ତ ।

ଛବି ଏଥର ସ୍ପଷ୍ଟ ହସି ଉଠିଲା ।

ଆହୁରି ଥରେ ମନେହେଲା ଅମଳର, ସତରେ ତ ଛବିକୁ କିମିତି ଭୌତିକ—ଭୌତିକ ଦେଖାଉଛି । ହସଟା ପର୍ଯ୍ୟନ୍ତ । ହସି କହିଲା ଛବି 'ମୋର ନିର୍ଲଜ୍ଜତାରେ ତୁମେ ହଠାତ୍ ଲଜ୍ଜା ପାଇବାକୁ ଗଲ କାହିଁକି ଅମଳ ?'

ଅନ୍ଧକାରର ଛାୟାରେ ଢ଼ଙ୍କା ଛବିକୁ ଚିହ୍ନିବାକୁ କଷ୍ଟ ହେଉଛି ।

ଛବିର ଦାଦା ଠକିଥିଲେ । ନ ବୁଝି ଛବିକୁ ଜଣେ ମୁଣ୍ଡ ଖରାପ ପିଲା ସଙ୍ଗେ ବାହାକରି ଦେଇଥିଲେ । ତଥାପି ଛବି କୌଣସି ଦିନ ଦାଦା ନାଆଁରେ

ଅଭିଯୋଗ କରିନାଇଁ । ଛବିର ଦେଢ଼ଶୁର ପାଗଳ ଭାଇ ଆଉ ଭାଇବୋହୂଙ୍କୁ ଏଠିକି ଚାଲାନ୍ କରି ଦିଅନ୍ତି । ସେଥିପାଇଁ ବି ଛବି ଗାଳି ଦେଇନି ସେମାନଙ୍କୁ ।

ଛବି ଅମଳର କାପୁରୁଷତାକୁ ଧିକକାର ଦେଇନି କେଉଁଦିନ । ସହଜ ସ୍ୱାଭାବିକ ଭାବେ ଛବି କାମଦାମ କରିଛି, କୁମାରୀ କାଳରେ ଇଏ ଯେମିତି ସଂସାରର ଦାୟିତ୍ୱ ନେଉଥିଲା, ତାହାହିଁ ନେଇଛି, ବେଶୀ ଭିତରେ ପାଗଳଙ୍କୁ ସମ୍ଭାଳିଛି ।

ସତୀନାଥଙ୍କର ସେଇ ଏକ ଥାଳୀ ଭଲଖିଆର ବୀଭତ୍ସ ଦୃଶ୍ୟଟା ମନେ ପଡ଼ିଲା । ସଙ୍ଗେ ସଙ୍ଗେ ଗୋଟାଏ କଥା । ...ପାଗଳ ହେଉ, ଛାଗଳ ହେଉ, ସ୍ୱାମୀ ।

ନରମ ଗଳାରେ କହିଲେ, "ବେଶ ତ, ପାରୁ ନପାରୁ ବସିବୁ ଆ ଥରେ ଆମ ସଙ୍ଗରେ । କ୍ଷିତୀଶର ଖାଇବା ଜିନିଷ ସବୁ ଉପରକୁ ପଠାଇ ଦେବାକୁ କହୁଚି । ତାକୁ ଖୁଆଇ କରି ଚାଲିଆ ।"

ଛବି ସେମିତି ନିଷ୍କମ୍ପ ଛିଡା ହୋଇ କହିଲା–"ଇଏ ଖାଇବେ ନାଇ, ଦାଦା ।"

ପୁଣି ଧୈର୍ଯ୍ୟଚ୍ୟୁତି ଘଟିଲା ।

ଆଉ ସେଟା ଆଶ୍ଚର୍ଯ୍ୟ ବି ନୁହଁ ।

ସତୀନାଥ ଓଙ୍ଗାଇ ଗଲେ, ଖାଲି କଡ଼ା ଗଳାରେ ଗୋଟିଏ ମନ୍ତବ୍ୟ କରି, "ବେଇମାନ ହେଲେ ଏମିତି ହୁଏ ଆଉ କଣ ?"

ଆଉ ସେଥି ସଙ୍ଗେ ସଙ୍ଗେ ଅମଳ ଉଠି ଆସିଲା ।

ଶେଷ ପରିବେଶଣର ଦାୟିତ୍ୱ ନେଇଚି ସେ, ଅଥଚ ସାମାନ୍ୟ ଗୋଟାଏ ଝିଅର ଧନୁ-ଭଙ୍ଗା ପଣରେ ଅକାରଣ ଘଡ଼ିର କଣ୍ଟା ବାରଟାର ଘରୁ ଯାଇ ଫେର୍ ଗୋଟାକରେ ପଡ଼ିଲାଣି ।

ସେ ଏମାନଙ୍କର ଆତ୍ମୀୟ ନୁହେଁ, କିଛି ନୁହେଁ ସାହାର ଲୋକମାତ୍ର, ତାର ଏତେ ଦାୟିତ୍ୱ ମୁଣ୍ଡରେ ନେବାର କୌଣସି କାରଣ ନାଇଁ, ତଥାପି ନେଇଚି ! ସ୍ୱଭାବ ଯୋଗୁ ନେଇଛି । କିନ୍ତୁ ଆଉ ଗତି ହେଲେ ତା ନିଜ ଘରର ଲୋକେ ବା କଣ କହିବେ ?

ସିଡ଼ିରେ ସୀତାନାଥଙ୍କ ସଙ୍ଗେ ପ୍ରାୟ ଧକ୍କା ।

ସତୀନାଥ ଥରେ ଚକାଇ ଦେଖିଲେ । କ୍ଷୁବ୍ଧ ବ୍ୟଙ୍ଗରେ ତୀକ୍ଷ୍ଣ ହୋଇ ଉଠିଲେ, "ଓ, ତୁ ବୋଧହୁଏ ବାକୀ ଥିଲୁ ।"

ଓହ୍ଲାଇ ଗଲେ ।

ସାହୀର ପିଲା, ଚିରକାଳର ଜଣାଶୁଣା । ଅବାକ୍ କିଛି ହିଁ ହେଲେ ନାଇଁ । ତେବେ ଆଶା ବି ରଖିଲେ ନାଇଁ ।

ଅମଳ ବି ରଖେନି ।

ଅମଳର କିଛି ଶୁଣିବାକୁ ବାକୀ ନାଇଁ ।

ଘଟନାରୁ ହିଁ ମନ୍ତବ୍ୟ ।

ତେଣୁ ଅମଳର ଭରସା ନିଜ ଉପରେ । ତଥାପି ତାର ଅରେ ଦେଖିବାର କୌତୂହଳ ହେଉଥିଲା । ଏତେ ଦୂର ଅନମନୀୟ ହେଲେ କିମିତି ଦେଖାଯାଏ, ବୋଧହୁଏ ଦେଖିବାକୁ ଇଛା ହେଉଥିଲା ଅମଳର !

ଛବି ସେତେବେଳକୁ ଆସ୍ତେ ଦରଜାଟା ବନ୍ଦ କରୁଥିଲା । ହୁଏତ ଭାବିଥିଲା, ଏଥର ଟିକିଏ ଶୋଇଯାଇପାରେ ।

କିନ୍ତୁ ସବୁ କିଛି ଉପରେ ଗୋଟାଏ କୌତୁକର ବର୍ମ ପିନ୍ଧାଇ ନିଜକୁ ଲୁଚାଇ ରଖିଛି ଛବି । ଅମଳ କଣ ନ ଜାଣେ, ଅମଳ ସର୍ବଦା ଆସେ ।

କ୍ଷିତୀଶକୁ ଅନେକ ବେଳ ନ ଦେଖିଲେ ଉଦ୍‌ବେଗ ପ୍ରକାଶ କରିଛି ଛବି, ତା ବି ହସ ପରିହାସ ଛଳରେ । ଗଳ୍ପ କରୁ କରୁ ହଠାତ୍ ଉଠି ପଡ଼ି କହିଛି, 'ଏଇ ସାରିଛି, ଅନେକ ବେଳୁ ମୋ ନିଧିଟିକୁ ସେମିତି ଦେଖିନାଇ ମନେ ହେଉଛି, ଯାଇ ଦେଖେଁ ବୈରାଗୀ ହୋଇ ଚାଲିଯାଇ ନାହାନ୍ତି ତ !" ...କହିଛି 'କେଇଟା ବାଜିଲା ? ଏ ମା, ତା ତ ମେଘରେ ବେଶ୍ ବେଳ ହୋଇଗଲାଣି । ଦେଖେଁ ମୋ ପ୍ରଭୁ ନିଜେ ସେଷେଇ ଘରେ ପଶି ହାଣ୍ଡି ଘାଟୁଛନ୍ତି କି ନା !' କହିଛି, ଏଇ ଦେଖ, ମୁହଁ କଳାକରି ହଠାତ୍ ଚାଲିଗଲେ ଦୟାମୟ, ଆମେ ଜମେଇ ଗଳ୍ପ କରୁଛୁଁ ନା, ସହ୍ୟ ହେଲାନାଇଁ ପ୍ରାଣରେ । ଚାଲିଲି ବାବା । ନହେଲେ ଭୋଳାନାଥ ରୁଦ୍ର ହୋଇ ବସି ରହିବେ ।'

ପାଗଳର ପାଗଳ ଜନୋଚିତ ଆଚରଣରେ ଯଦି କେହି ଥଟ୍ଟା ବା

ବିରକ୍ତି ପ୍ରକାଶ କରିଛି, କେବେହେଲେ ରଗିବାର ଦେଖା ଯାଇନି ଛବିକୁ । ସେମାନଙ୍କ ସଙ୍ଗେ ସ୍ୱର ମିଳାଇ କହିଛି, 'କହ ବାବା, ସମସ୍ତେ ମିଳି ଟିକିଏ ତାଙ୍କୁ କହ । ମୋର କିଛି କାମ କମୁ ! ଜ୍ୱାଇଁବାବୁ ବୋଲି ସମ୍ମାନକରି 'ପ୍ରହାରେଣ ଧନଞ୍ଜୟ' କଲେ ଉପକାର ହେବ ତାଙ୍କର ।'

ହସି ହସିହିଁ କହିଁଛି ।

ଅଥଚ ଆଜି ବରର ସତରେ ଟିକିଏ ଅପମାନରେ ବେଶ ବଦଳି ଗଲା ଛବିର ?

ସତୀନାଥଙ୍କ ସ୍ତ୍ରୀର କଥା ତେବେ ସତ ବୋଲି ମାନନେବାକୁ ହେବ । ଭାବିନେବାକୁ ହେବ ଯେ ହିଂସାର ଜ୍ୱାଳାରେ ସାମାନ୍ୟ ଟିକିଏ ଆଞ୍ଚ ପାଇ ଏମିତିକା କରି ବସିଛି ଛବି । ଦାଦାର ଝିଅର ଏତେ ଭଲ ବାହାଘର ହେଲା, ଅନେକ ସୁନ୍ଦର ବର ହେଲା, ଏଥିରେ ବୁକୁ ଫାଟି ଯାଉଛି ତାର !

ଛବି ସମ୍ପର୍କରେ ଏମିତି କଥା ଭବା ଯାଏନା ।

କିନ୍ତୁ ନିଜେଇ ଭବଉଛି ଛବି ।

ଏଇ ଅଶୋଭନ ଆଚରଣ ଆଉ ବିସଦୃଶ ବ୍ୟବହାର ମଧ୍ୟଦେଇ ସମସ୍ତଙ୍କୁ ଭବାଇ ଛାଡ଼ିଛି ।

ଈର୍ଷା !

ନହେଲେ କେବେ ଇମିତି ପତିଭକ୍ତ ଥିଲା ଛବିର ? ବରଂ ତାର ଭଉଜ କହନ୍ତି, 'ସ୍ୱାମୀ ପାଗଳ ବୋଲି ଏତେ ଟିକିଏ ଦୁଃଖ ଅଛି ଛବିର, ତା ବୁଝା ଯାଏନା । କି ଅଦଭୁତ ଅଟୁଟ ମନ ବାବା !'

ଛବିର ସେଇ ଅଟୁଟା ମନ ଫୁଟ୍‌ଫୁଟ୍ ହୋଇଯାଇଛି, ଅତଏବ ହିଂସାର ଜ୍ୱାଳାରେ ତ !

କିନ୍ତୁ ଅମଳ ଏସବୁ ଚିନ୍ତାର କିଛି ଉଠାପଡ଼ା ପ୍ରକାଶ କଲା ନାହିଁ । ଖାଲି କହିଲା, "ତୁମେ ବଡ଼ ନିଷ୍ଠୁର ଛବି ।"

ଛବି କହିଲା, "ଆଜି ଜାଣିଲ ?" ତାପରେ କହିଲା, "ତୁମେ ପର୍ଯ୍ୟନ୍ତ କାହିଁକି ଆସିଲ କହ ଦେଖି । ଖାଇବା ପାଇଁ ଡାକିବାକୁ ନା କଣ ?"

ଅମଳ ଆହତ ଦୃଷ୍ଟି ତୋଳି ଆଉ ଥରେ ଚେଷ୍ଟାକଲା ଛବିକୁ

ଦେଖିବାକୁ । ତାପରେ କହିଲା, "ନା ତମକୁ ଡାକିବାକୁ ଆସିନି, ଏତେ ବଡ଼ ଦୁଃସାହସ ନାହିଁ ମୋର । ଭବୁଥିଲି—କ୍ଷିତୀଶବାବୁଙ୍କୁ ଖାଇବାକୁ ନ ଦେଇ ଅଟକ ରଖି ଦାଦାଙ୍କୁ ଆଉ କଣ ଶାସ୍ତି ଦେଇ ପାରିବ ? ଖାଲି ଏଇ ବିଶ୍ୱର ଭଦ୍ରଲୋକଙ୍କୁ ହିଁ ଯାହା ଜବ୍ଦ କଲ । ଖୁବ୍ ଉତ୍ସାହ କରି ମୋତେ କହିଥିଲେ, ତୁମେ ମୋତେ ପରିଶିବ, ବୁଝିଲ ? ଏମାନେ ଭଲ କରିଦେବେ ନାହିଁ !"

କଥା ଶେଷକରି ହସିଲା ଟିକିଏ ଅମଳ । କହିଲା, "ଅବଶ୍ୟ ସିଏ ଏମାନେ' କହି ନଥିଲେ । କହିଥିଲେ 'ଶଳାଏ' ।"

ଛବିର କଣ ଏତେବେଳଯାଏ ଉପାସ କରି ରହି ଗଲାଟା ଏତେ ବେଶୀ ଶୁଖି ଯାଇଛି ? ନା ଏତେ ବେଳ ଧରି ଅଶୋଭନ ଆଚରଣର ଅନୁତାପରେ ? ନହେଲେ ଗଲାଟା ତ ବେଶ୍ ସୁଉଚ୍ଚ ଥିଲା ଛବିର !

ଥିଲା; ବର୍ତ୍ତମାନ ନାହିଁ । ବର୍ତ୍ତମାନ ସେଇ ଶୁଖିଲା ଗଳାରେ କହେ ଛବି, "ତା ତମ ପରିବେଷଣର ଅପେକ୍ଷା ତ ସେ ରଖି ନାହାନ୍ତି । ନିଜେଇ ନ—"

'ଆଉ, ଛବି, ସେ ସବୁ କଥା ।... ତୁମେ ଖାଅ ନ ଖାଅ, ତାଙ୍କୁ ଉଠେଇ ଦିଅ । ମୁଁ ମୋର ସତ୍ୟ ରକ୍ଷା କରେ ।'

ଛବି ତାର କୌଣସି ସ୍ତୁତିର ମର୍ଯ୍ୟାଦାକୁ ଏକାବେଳେ ଧୂଳିସାତ କଲା । ଛବି ସେମିତି ଛିଡ଼ା ହୋଇ କହିଲା, "ସେ ଖାଇବେ ନାହିଁ ।'

'ଛବି ! ବାସ୍ତବିକ୍ ତୁମେ ଯତପରୋନାସ୍ତି ଅସଭ୍ୟତା କରୁଛ । ସବୁର ସୀମା ଥିବା ଦରକାର । ଆଜି ଗପି କରି ଖାଇବାକୁ ଦେବ ନାହିଁ ତାଙ୍କୁ; କାଲି ତ ଦେବାକୁ ହେବ, ସେତେବେଳେ ?'

ଛବି ଏଥର ହସି ଉଠିଲା ।

ସତଂରେ ହସି ଉଠିଲା । ଶବ୍ଦ କରି ।

କହିଲା, 'କାଲି ନୁହେଁ, ପଅରିଦିନ ବି ନୁହେଁ । କେଉଁଦିନ ନୁହେଁ ।'

ଅମଳ ଏଇ ସାଧାରଣ ଗପଗଛ କଥାରେ ଏମିତି ଭୟ ପାଇଗଲା କିଆଁ ? ଛବିକୁ କଣ ସତରେ ଭୌତିକ ମନେ ହେଲା ଅମଳର, ଏଇ ହସ ଶୁଣି ?

ତେଣୁ ଅମଳ ହଠାତ୍ 'ଛବି' ବୋଲି ଏଭଳି ଆର୍ତ୍ତନାଦ କରି ଉଠିଲା ।

ଛବି ଏ ଡାକର ଉତ୍ତର ଦେଲା ନାହିଁ । ଛବି ହଳଚଲ ହେଲା ନାହିଁ ।

ଆଉ ଛବିର ହେହି ଅଚଳ ମୂର୍ତ୍ତିଟା ଆଡ଼କୁ ଗ୍ରହିଁ ଅମଳ ହଠାତ୍ ବହୁ କାଳରୁ ଭୁଲିଯାଇଥିବା ବେ.କାମି କରି ବସିଲା । ଥରେ ପାଖକୁ ଲଗି ଆସି କବାଟ ଧରିଥିବା ହାତଟାକୁ ଗ୍ରପି ଧରିଲା ଜୋରରେ । କହିଲା, 'ଛବି, ଆଲୁଅ ଜଳାଅ ।'

ଛବି ଆସ୍ତେ ହାତଟା ଛଡ଼ାଇ ନେଲା ।

କହିଲା, "କଣ ହେବ ?"

"ମୁଁ ଦେଖିବି ।"

"ଦେଖିବାର କିଛି ନାଇଁ ଅମଳ ।"

ଛବି ନିଜକୁ ଏଡ଼େ ନିର୍ଭୁଲ ମନେ କରନା ଛବି ଦରଜା ଛାଡ଼ ମୋତେ ଦେଖିବାକୁ ଦିଅ ।'

ଛବି ତଥାପି ହଟିଲା ନାଇଁ ।

କେବଳ ସ୍ୱରଟା ଦୃଢ଼ କଲା, ସତରେ ଦେଖିବାର କିଛି ନାଇ୍ ଅମଳ ।'

ଅମଳ ବି କ'ଣ ଭୌତିକ ହୋଇ ଯାଇଛି ।?

ଅମଳକୁ ବା ଏମିତି ଦେଖାଉଚି କାହିଁକି ? ଅମଳ କଣ ଭୁଲି ଯାଇଚି ତାର ଦୀର୍ଘ ଅନୁପସ୍ଥିତିରେ ତଳେ ଲେକମାନେ କଣ ଭବୁଥିବେ । ଏମାନଙ୍କର କୈଶୋରର ଇତିହାସ କଣ ସେମାନଙ୍କର କାହାର ମନେ ନାଇଁ ?

ଅନେକ କ୍ଷଣ ପରେ ଅମଳର ବୋଧହୁଏ ମନେ ପଡ଼ିଲା, ତଳେ ଗୋଟିଏ ଜଗତ୍ ଅଛି । ତାକୁ ଓହ୍ଲାଇବାକୁ ହେବ । ତେଣୁ କହିଲା ଛବି ଇଏ କଣ ?' ଶଲା ମୋତେ ଖାଇବାକୁ ଦେଲା ନାଇଁ, ବୋଲି କହି ନିଜ ମୁଣ୍ଡରେ ଗୋଟାଏ ବିଧା ବସାଇବାକୁ ବସିଥିଲା —'

'ଛବି, ତୁମେ କଣ ପଥରର ?'

'ହୁଏତ ସେଇଆ ।'

'ଛବି, ତଳକୁ ଯାଇ ଏମାନଙ୍କୁ କଣ କହିବି ?'

'କିଛି ନାଇ, ଅମଳ । ତମକୁ ଗଣ । ବର-କନ୍ୟା ବାସରରେ ବସିଛନ୍ତି । ଏମାନଙ୍କର ଏଇ ରତିଟାକୁ ଧ୍ୱଂସକରି ଦିଅନା ।'

'ଛବି କିମିତି ପାରୁଛ ?'

'ପାରିବାକୁ ତ ହେବ ଅମଳ । ସୀମାରେଖାଟା ଭୁଲିଗଲେ ଚଳିବ କିମିତି ? ଏମାନଙ୍କର ଏହି ଆହ୍ଲାଦର ସମୟରେ କଣ ମୁଁ ମୋର—'

'ସାରା ରାତି ଏଇପରି ରହିବ ତୁମେ ?'

'ନା, ଶୋଇବି । ବଡ଼ ନିଦ ମାଡୁଛି । ମନେ ହେଉଛି, ପଡ଼ିଯିବି ।'

ଅଭଦ୍ର ଆଉ ଅସଭ୍ୟ ଛବି ହଟାତ୍ ଅମଳର ମୁହଁ ସାମନାରେ ଦରଜାଟା ବନ୍ଦ କରିଦେଲା ।

ଖୁଟ୍‌କରି ଗୋଟାଏ ଶବ୍ଦ ହେଲା । ଛିଟିକିଣିର ଶବ୍ଦ ।

ହଁ ଦରଜାଟା ବନ୍ଦ ନକରି ଆଉ ପାରୁନାହିଁ ଛବି । ସତୀନାଥଙ୍କ କଥାଟାହିଁ ବର୍ତ୍ତମାନ ଠିକ୍ ମନେ ହେଉଛି ସାର । ସବୁ କିଛିର ମାତ୍ରା ଥାଏ, ଥିବା ଉଚିତ ।

କେତେଘଣ୍ଟା ଏଇ ଥଣ୍ଡା-ଥଣ୍ଡା ଅନ୍ଧକାର ମଧ୍ୟରେ ବୁଡି ରହିବାକୁ ପାଇଲେ ପୁଣି ଛବି ଶକ୍ତି ସଂଗ୍ରହ କରି ପାରିବ । ପୁଣି କାଲି ସକାଳେ ସ୍ୱାଭାବିକ ଛନ୍ଦରେ ତଳକୁ ଓହ୍ଲାଇ ଯାଇ ସହଜ ଗଳାରେ କହିପାରିବ, 'କାଲି ବାହାଘର ଗୋଳମାଳ ମଧ୍ୟରେ ତମକୁ ସବୁ ଆଉ ବ୍ୟସ୍ତ କରିନାହିଁ, କିନ୍ତୁ ଆଉ ବୋଧହୁଏ ନକଲେ ନ ଚଳେ । ଆସି ଦେଖ ଏଥର ! ଯାହା କରିବାର ତାହା ତମମାନଙ୍କୁ ତ କରିବାକୁହିଁ ହେବ ।'

# ଠକିନୀ

## ସୁବୋଧ ଘୋଷ

ସନାତନ, ଆଉ ସନାତନର ଝିଅ ସୁଧା । ଯେମିତି ବାପ ସେମିତି ଝିଅ ।

ଗୋଟାକ ପରେ ଗୋଟାଏ ଅଦ୍ଭୁତ ଏକ-ଏକ ଘଟଣା ଘଟେ, ଆଉ ସେଇ ଘଟନାରେ ବାପ ଯେପରି ବେଦନାରେ ଏକାବେଳେକେ ଭାଙ୍ଗିପଡ଼େ ଓ ଶୁକୁ ଶୁକୁ କାନ୍ଦେ, ଝିଅ ମଧ୍ୟ ସେମିତି ବ୍ୟଥା ଭରରେ ମୁହଁ ଟେକି ଅନାଇ ପାରେନା, ଆଖିରେ ଅଞ୍ଚଳ ଗୁପି ଫୁଲି ଫୁଲି କାନ୍ଦେ । ଯେଉଁମାନେ ପାଖରେ ଛିଡ଼ା ହୋଇ ସେ ଦୃଶ୍ୟ ଦେଖନ୍ତି, ସେମାନଙ୍କ ଆଖିରେ ଲୁହ ଆଉ ବୁକୁରେ ଦୀର୍ଘଶ୍ୱାସ ଦେଖାଯାଏ । ଆହା କି କଷ୍ଟର କଥା । ଗୋଟିଏ ମାତ୍ର ଝିଅ ଛଡ଼ା ସଂସାରରେ ଆଉ କେହି ନାହିଁ ଯାର, ସେ ମଣିଷର ବୁକୁ ତ ଭାଙ୍ଗି ପଡ଼ିବ ଝିଅକୁ ପର ଘରକୁ ପଠାଇବାକୁ ଗଲେ ।

ସୁଧାର ବାହାଘର ପରଦିନ ଯେତେବେଳେ ସୁଧାକୁ ନେଇ ବିଦାୟ ନେବାପାଇଁ ବର ଆଉ ବରଯାତ୍ରୀ ତିଆରି ହୁଅନ୍ତି, ସେତେବେଳେ ଶୁକୁଶୁକୁ କାନ୍ଦିଉଠେ ସନାତନ, ଆଉ କଇଁ କଇଁ ହୋଇ କାନ୍ଦିଉଠେ ସୁଧା ।

କିନ୍ତୁ ଏକ ମାସ ନ ଯାଉଣୁ ସାହୀର ଏଇ ସବୁ ଲୋକ, ଏବଂ ଏଇ ବର ଓ ଆହୁରି ଅନେକେ ଭଲକରି ବୁଝି ପାରନ୍ତି, ହଁ, ଠିକ୍ ଏକାବେଳେକେ ବର୍ଣ୍ଣେ ବର୍ଣ୍ଣେ ଠିକ୍, ଯେମିତି ବାପ ସେମିତି ଝିଅ ।

ପୁଲିଶ କୁହେ, ଯେମିତି ଝିଅ, ସେମିତି ବାପ । ଯାକୁ ନେଇ ତିନିବାର ହେଲା । ଥରେ ତାରକେଶ୍ୱରଠାରେ ଆଉ ଥରେ ବସିର ହାଟରେ ଏଇ ରକମ ଜୁଆଚୋରିର ଦୁଇଟା କେସ୍ ହୋଇଛି । ମାତ୍ର ଦି'ମାସ ମଧ୍ୟରେ

ଧୁଭଗ୍ଯା କେସ୍ । ଏଟା ହେଲ ଥାର୍ଡ଼ କେସ୍ । ତିନୋଟି ଘଟଣା ଏଇ ଏକଇ ବାପ ଏବଂ ଏକଇ ଝିଅର କାଣ୍ଡ ବୋଲି ମନେ ହେଉଛି । ଏଇ ରକମ କରି ମଣିଷଙ୍କୁ ଠକିବା ଏମାନଙ୍କର ପେଶା ।

ଭଟପଡ଼ା ବଜାର ପାଖରେ ଗୋଟିଏ ଛୋଟ ଗଳି ମଧ୍ୟରେ ଗୋଟିଏ ଛୋଟ ଘରର ଦରଜା ବନ୍ଦ, ତାଲ ଭାଙ୍ଗି ତଲାଶ କରେ ପୁଲିଶ । କିନ୍ତୁ ଗୋଟାଏ କୁଟା ବି ନାଇଁ ସେଇ ଶୂନ୍ୟ-ଘରର କେଉଁ କଣରେ । ସନାତନ ଆଉ ସୁଧା, ସେଇ ବାପ ଆଉ ସେଇ ଝିଅ ଯେପରି ଏକ ଅଦଭୁତ ଭେଳକବାଜି ଖେଳା ଦେଖାଇ ନିଜ ନିଜକୁ ହାଓ୍ୱାରେ ମିଶାଇ ଦେଇଛନ୍ତି । କେତେବେଳେ ପଳାଇଗଲେ କେହି ଜାଣନ୍ତି ନାଇଁ । ସାହୀ ଲୋକେ ଯେଉଁମାନେ ଏକ ମାସ ଆଗରୁ ସେଇ ବାପ ଝିଅର ଆଖିର ଲୁହ ଦେଖି ନିଜେ କାନ୍ଦ କାନ୍ଦ ହୋଇ-ଥିଲେ, ଲଜ୍ଜା ପାଆନ୍ତି ସେମାନେ ଏବଂ ଆକ୍ଷେପ ବି କରନ୍ତି । —ବାସ୍ତବିକ୍ ଏଇ ସଂସାରଟା ଏକ ଚିଡ଼ିଆଖାନା, କଣ ସବୁ କାଣ୍ଡ ନ ହୁଏ ଏଠାରେ ।

କେହି କେହି କହନ୍ତି—ଚିଡିଆଖାନାରେ ଏ ରକମ କୁତ୍ସିତ କାଣ୍ଡ ହୁଏନା ମହାଶୟ । ମଣିଷର ସଂସାରରେ ହିଁ ହୁଏ ।

ଆଉ ଜଣେ କୁହନ୍ତି—ଲଜ୍ଜାର ବ୍ୟାପାର ଏହି ଯେ, ଆମ ସାହିରେ, ଆମ ଆଖି ଆଗରେ ଏ-ରକମର ଗୋଟାଏ କାଣ୍ଡ ଘଟିଗଲା । କେଉଁଟାରେ ଗୋଟାଏ ଲୋକ ଆଉ ଗୋଟିଏ ଝିଅପିଲା ଆସି କେତେଦିନ ମଧ୍ୟରେ ସାହୀସାରା ଲୋକଙ୍କୁ ଏକାବେଳେକେ ବୋକା ବନାଇ ଦେଇ ଉଭନ୍ ହୋଇ-ଗଲେ ମହାଶୟ । କେହି ଏମାନଙ୍କୁ ଟିକିଏ ସନ୍ଦେହ କରିପାରିଲା ନାଇଁ ।

ହଁ, କେହି ସନ୍ଦେହ କରିପାରି ନାଇଁ । ଏଇ ଶୁକୁ ଶୁକୁ କାନ୍ଦ ଆଉ ଫୁଲା ଫୁଲା କାନ୍ଦ ଦୃଶ୍ୟ ଭିତରେ ଯେ ଅତି ଚମତ୍କାର ଗୋଟାଏ ଜୁଆଚ୍ଚୋରି ହେଉଚି, ସେଟା ସାହୀ ଲୋକଙ୍କ ଆଖିରେ ଆଉ ବରଯାତ୍ରୀ ମାନଙ୍କ ଆଖିରେ ଧରାପଡ଼ି ନାଇଁ । ଧରା ପଡ଼ିବ ବା କେମିତି ? ବାପଝିଅର ସେଇ କରୁଣ କାନ୍ଦଣାର ଛବି ବର୍ତ୍ତମାନ ମଧ୍ୟ ସ୍ମରଣ କଲେ ମନେହୁଏ, ନା ଯୋଚ୍ଚୋରିର ବ୍ୟାପାର ନୁହେଁ, ଅନ୍ୟ କିଛି ବ୍ୟାପାର ଅଛି ।

ପୁଲିଶ କହେ—ଅନ୍ୟ କୌଣସି ବ୍ୟାପାର ନୁହେଁ । ଏମାନେ ବାପ ଝିଅ ଠକ୍.ଇ । ଏକ ଏକ ନୂଆ ଜାଗାକୁ ଯାଇ ନୂଆ ନାମ ନେଇ ଏବଂ ନୂଆ

ଜାତିର ନାମ ନେଇ ବାପ-ଝିଅ କିଛିଦିନ ରହନ୍ତି । ତାପରେ ଏପରି ଗୋଟାଏ କାଣ୍ଡକରି ପଳାଇଯାନ୍ତି ।

ସାହୀର ଲୋକେ ମଧ୍ୟ ଦୁଃଖ ଓ ଲଜ୍ଜ୍ୟାରେ, ଏବଂ ଅପରାଧୀଙ୍କ-ପରି ମୁହଁର ଭାବକରି ତକାଇଥାନ୍ତି ସେଇ ଭଦ୍ରଲୋକର ମୁହଁଆଡ଼େ, ଯିଏ ଏକ ମାସ ତଳେ ଟୋପି ମୁଣ୍ଡରେ ଦେଇ ଏକ ସନ୍ଧ୍ୟାରେ ଏଇ ବସ୍ତିରେ ଆବିର୍ଭୂତ ହୋଇଥିଲେ, ଆଜିର ଏ ଶୂନ୍ୟଘରେ ଥିବା ଏକ ଗରୀବ ପିତାଙ୍କୁ କନ୍ୟାଦାୟରୁ ଉଦ୍ଧାର କରିବା ପାଇଁ । ସାହୀର କେତେକ ଛୋକରା ମୁହଁଟିପି ହସୁ ବି ଥାନ୍ତି ।

ଭଦ୍ରଲୋକ ଟିକିଏ ବୟସ୍କ, ବୟସ ପଇଁଚାଳିଶରୁ ବି ବେଶୀ ହେବ । ପ୍ରାୟ ପଚାଶ ପାଖାପାଖି । ନୈହାଟିରେ କପଡ଼ାର ଦୋକାନ ଅଛି ଭଦ୍ରଲୋକଙ୍କର । ବିପତ୍ନୀକ ଓ ନିଃସନ୍ତାନ ଏକ ବ୍ୟବସାୟୀ ଲୋକ । ଆଉ ଥରେ ବାହା ହେବାକୁ ପ୍ରସ୍ତୁତ ନଥିଲେ, ଇଚ୍ଛା ବି ନଥିଲା । କିନ୍ତୁ ସନାତନ ବାବୁଙ୍କ ସଙ୍ଗେ ପରିଚୟ ହେବାପରେ ଏବଂ ସନାତନ ବାବୁଙ୍କ ଦାରିଦ୍ର୍ୟର ପରିଚୟ ପାଇବା ପରେ ତାଙ୍କର ଏ ବୟସର ମନ ସଂସାର ପାଖରୁ ଟିକିଏ ମିଠା ହସ ପାଇବା ପାଇଁ ବଡ଼ ବିଚଳିତ ହୋଇ ପଡ଼ିଲା ଏଇ ଗଳିର ଏଇ ଘରକୁ ଦିନେ ସନାତନ ବାବୁଙ୍କ ଆମନ୍ତ୍ରଣରେ ଟିକିଏ ପିଠା ଓ ପାୟେସ ଖାଇବାକୁ ଆସି ସେ ମନେ ମନେ ଠିକ୍ କରିନେଲେ ଯେ ସନାତନ ବାବୁଙ୍କୁ କନ୍ୟାଦାୟରୁ ଉଦ୍ଧାର କରିବାକୁ ହେବ । ସ୍ୱଜାତିର ଏକ ଗରୀବର ସୁନ୍ଦରୀ ଝିଅଟି ଏପରି ଭାବରେ ପଡ଼ି ରହିଚି ଏଇ ଗଳିର ଅନ୍ଧାରରେ । ଭାବିବାକୁ ମଧ୍ୟ କଷ୍ଟ ହେଉଥିଲା ନୈହାଟିର ସେଇ କପଡ଼ା ବିକାଳୀ ଆଉ ବେଶ୍ କିଛି ଟଙ୍କା ପଇସାବାଲା ମଣିଷଟି ମନରେ । ଝିଅର ବାପ ସନାତନକୁ ନଗଦ ପାଞ୍ଚଶ ଟଙ୍କା ଦେଇ ଏବଂ ଦାନସାମଗ୍ରୀ ପାଇଁ ଆଉ କିଛି ଦେଇ, ଆଉ ଝିଅକୁ ଦଶଭରି ସୁନା ଅଳଙ୍କାର ଦେଇ ସନାତନର ସମ୍ମତିକ୍ରମେ ଗୋଟାଏ ଶୁଭଦିନ ସ୍ଥିର କରି ପକାଇଲେ ନୈହାଟିର ଗଣେଶ ବସ୍ତ୍ରାଳୟର ଏଇ ମାଲିକ । ବିଗ୍ରହ ! ସୁନ୍ଦରୀ ସୁଧାର ଓଢ଼ଣା ଟାଣି ମୁହଁ ଆଡ଼କୁ ଅନାଇ ଅନାଇ ଧନ୍ୟ ହୋଇ ଦିନେ ସକାଳେ ଏଇ ଗଳିର ଏଇ ଘର ସୁଧାକୁ ନେଇ ବିଦାୟ ନେଇ-ଥିଲେ ଯେଉଁ ମଣିଷଟି, ସେଇ ଆଜି ପୁଲିଶ୍ ସଙ୍ଗରେ ଆସି ଛିଡ଼ା ହୋଇଛନ୍ତି ଏଇ ଘରର ଦରଜା ନିକଟରେ । ବାହାଘର ହେବାର ଦିନ ସାତକ ପରେ

ସନାତନ ନିଜେ ନୈହାଟି ଯାଇ ସୁଧାକୁ ନେଇ ଫେରି ଆସିଥିଲେ ଏଇ ବସାକୁ । ତା ପରେ ଆଉ କେତେ ଦିନ ସେମାନେ ସେଠି ଥିଲେ ତା କେହି ସଠିକ କହି ପାରନ୍ତି ନାଇ । ଚିଠିପତ୍ର ଦେଇ ବି କିଛି ଖବର ନ ପାଇ, ଏବଂ ନିଜେ ଆସି ଘରର ଦରଜା ବନ୍ଦ ଦେଖିପାରି ଚମକିଉଠିଲେ ଗଣେଶ ବସ୍ତ୍ରାଳୟର ମାଲିକ । ପୁଲିଶକୁ ଖବର ଦିଆହେଲା, ଏବଂ ପୁଲିଶ । ଏବେ କହୁଛି, ହଁ, ଯାକୁ ନେଇ ତୃତୀୟ ବାର ହେଲା । ଏଇ ପରି ଭବରେ ଆଉ ଦୁଇ ଥର ଏଇ ବାପ ତାଙ୍କର ଏଇ ଝିଅର ବାହା ଦେଇଛନ୍ତି, ଆଉ ବାହାଘର ହେବାର କିଛିଦିନ ପରେ ଅଦୃଶ୍ୟ ହୋଇଯାଇଛନ୍ତି ବାପ-ଝିଅ ଦିଜଣ ଯାକ ହିଁ । ଏ ମାନଙ୍କର ଅସଲ ନାମ ମଧ୍ୟ ଜାଣେନା ପୁଲିଶ ।

ତାରକେଶ୍ୱର ଏମାନେ ଥିଲେ ବ୍ରାହ୍ମଣ ଏବଂ ବସିରହାଟରେ ବୈଦ୍ୟ ତାରକେଶ୍ୱରର କେସ୍‌ଟା ହେଲା, ପ୍ରସନ୍ନ ଚକ୍ରବର୍ତ୍ତୀ ନାମରେ ଜଣେ ବାପ ଏବଂ ସୁନୟନା ନାମକ ତାର ଏକ ଝିଅର ଜୁଆଚ୍ଚୋରି । ବସିରହାଟର କେସ୍‌ଟା ହେଲା, ସଦାନନ୍ଦ ଘୋଷ ନାମରେ ଅଭୁତ ଜଣେ ବାପ ଆଉ ମାଧବୀ ନାମକ ତାଙ୍କର ଏକ ଝିଅର ଜୁଆଚ୍ଚୋରୀର କେସ୍ । ଆଉ ଏବେ ଭଟପଡାରେ ଏଇ ଗଳିରେ ସେଇମାନେ ହିଁ ସନାତନ ସେନ ଆଉ ସୁଧା ସେନ ନାମରେ ଅଭୁତ ଏକ ବାପ ଏବଂ ଅଭୁତ ଏକ ଝିଅର—ଜୁଆଚ୍ଚୋରୀର ସ୍ମୃତି ଟିକିକ ଖାଲି, ରଖିଯାଇ ଅଦୃଶ୍ୟ ହୋଇ ଯାଇଛନ୍ତି । ତିନିଜଣ ନିରୀହ ଓ ବିଶ୍ୱାସୀ ମଣିଷଙ୍କ ଜୀବନକୁ ମିଥ୍ୟା ବାସରଘର ଏବଂ ଝୁଟା ଫୁଲଶଯ୍ୟା ଦେଇ ନିର୍ମମ ଭବରେ ଠକି, ଏଇ ପୃଥିବୀରେ ଜନାତଙ୍କ ଭିତରେ ବର୍ତ୍ତମାନ କିଏ ଜାଣେ କେଉଁଠି ଲୁଚି ରହିଛନ୍ତି ଏକ ଅଭୁତ ଠଗ ଆଉ ଏକ ଅଭୁତ ଠଗିନୀ ଝିଅ । ଯେମିତି ବାପ ତାର ସେମିତି ଝିଅ । ଏବଂ ଯେମିତି ଝିଅ ତାର ସେମିତି ବାପ ।

ଭଟପଡ଼ାର ଗଳି ଭିତରୁ ଚିନ୍ତା କରି କରି ଫେରିଯାଏ ପୁଲିଶ । ସାହୀ ଲୋକେ ହତଭମ୍ବ ହୋଇ ଠିଆ ହୋଇ ଭବୁଥାନ୍ତି । ଆଉ ଗଣେଷ ବସ୍ତ୍ରାଳୟର ମାଲିକ ଗୋଟାଏ ହସହସ ଶାନ୍ତ ଓ ସୁନ୍ଦର ମୁହଁକୁ କଳ୍ପନାରେ ଦେଖିପାରି ଦୁଃଖ ଓ ବିସ୍ମୟରେ ଚମକି ଉଠନ୍ତି ।—ଉଃ, ଏପରି ଭବେ ମଣିଷ ଠକାଇପାରେ ମଣିଷକୁ !

ଭଟପଡାର ଗଳି ଜାଣେନା, ପୁଲିଶ ବି ଅନୁମାନ କରିପାରେନା, ଆଉ ଗଣେଷ ବସ୍ତ୍ରାଳୟର ମାଲିକର ମନ କଳ୍ପନା କରିପାରେନା ଯେ, ଠିକେ

ସେଇ ମୁହୂର୍ତ୍ତରେ ଗଣାଘାଟର ଏକ ପଲିର ଏକ କ୍ଷୁଦ୍ର ଗୃହର ଝରକା ଆଡକୁ ଚକାଇ ଏଇଭବରେ ନିଜ ଭଗ୍ୟକୁ ଏକ ନିଷ୍ଠୁର ଛଳନା ଢ଼ାଲରେ ସଁପ ଦେବା-ପାଇଁ ହସୁଚି ଆଉ ଗୋଟାଏ ମଣିଷର ଆଖି ! ବିଜୟବାବୁ ନାମକ ଏକ ଭଦଲୋକର କରବୀ ନାମରେ ଏକ ତରୁଣୀ କନ୍ୟା କଥା କହୁଛି ରମେଶ ନାମକ ଏକ ଯୁବକ ସଂଗରେ !

ଝରକା ପାଖରେ ଠିଆହୋଇ ଘର ଭିତରୁ କରବୀ ଅଭିମାନରେ ଆସ୍ତେ ଆସ୍ତେ କହୁଚି, ଆପଣ କାହିଁକି ବାରମ୍ବାର ଆସନ୍ତି ?

ରମେଶ ଉତ୍‌ଫଲରେ ହସେ । ଜଣେ ଜ୍ୟୋତିଷୀ ମୋ ହାତ ଦେଖି କଣ କହିଛନ୍ତି ଜାଣ ? ଯେଉଁ ଝିଅ ମୋର ବୋହୂ ହେବ, ତା ନାମରେ ପ୍ରଥମ ଅକ୍ଷର ହେବ 'କ' ।

କରବୀ ମଧ୍ୟ ହସେ । କିନ୍ତୁ ବୁଝି ପାରେନା କାହିଁକି ଏମିତି ଭବରେ ରୋଜ ଆସି ଝରକା ପାଖରେ ଠିଆ ହୁଏ ରମେଶ । ସେଥିରେ ତାର ଖାଲି ଦୁର୍ନାମହିଁ ହେବ, ଆଉ କିଛି ହେବନାହିଁ ।

ସାଇକେଲରେ ଭରଦେଇ ରାସ୍ତାରେ ଛିଡ଼ାହୋଇ ରମେଶ କହେ, ମୁଁ ଯେ ନଆସି ପାରୁନାହିଁ କରବୀ । ଯେଉଁଦିନ ତୁମେ ପ୍ରଥମେ ଅନାଇଲ ମୋ ଆଡ଼େ, ସେଇଦିନ ବୁଝିଲି ଯେ ତୁମେଇ ମୋର ଶାନ୍ତି ଆଉ ସୁଖ ।

କରବୀ; 'ଇଏ ଆପଣଙ୍କର ବଡ଼ଲୋକୀ ଖିଆଲ । ଏଇଲାଗେ ଆସିବାକୁ ଭଲ ଲଗୁଚି କିନ୍ତୁ ଆଉ କିଛିଦିନ ପରେ ଏ ଆଡ଼ର କଥା ଭୁଲରେ ମଧ୍ୟ ମନେ ପଡ଼ିବ ନାହିଁ । ଆସିବାକୁ ଭଲ ବି ଲଗିବ ନାହିଁ, ଆଉ ଆସିବେ ନାହିଁ ମଧ୍ୟ । ତେବେ କାହିଁକି ମିଛେ ମିଛେ......।'

ରମେଶ କହିଲା—ମୁଁ ବଡ଼ଲୋକ ନୁହେଁ, ବଡ଼ଲୋକୀ ଖିଆଲ ବି ମୋର ନାହିଁ । ମୁଁ ତମକୁ ଦେଖିବାକୁ ଆସେ ପ୍ରାଣର ତାଗିଦାରେ । ଏହା ମୋର ଖିଆଲ ନୁହେଁ କରବୀ ।

କରବୀ—ଆପଣ ମୋଟେ ବଡ଼ଲୋକ ନୁହନ୍ତି ?
ରମେଶ—ମୋଟେ ନୁହେଁ ।
କରବୀ—କଣ କରନ୍ତି ଆପଣ ?
ରମେଶ—ମୁଁ ଆର୍ଟିଷ୍ଟ ।

କରବୀ—ତାର ମାନେ ?

ରମେଶ—କଲିକତାରେ ତୁମେ ଥିଲ କେବେ ?

କରବୀ—ହଁ, ଥିଲି କିଛିଦିନ ।

ରମେଶ—ସିନେମା ଛବି ଦେଖିଚ କେବେ ?

କରବୀ—ଗୋଟାଏ ଦି'ଟା ଦେଖିଚି ।

ରମେଶ—ସିନେମା ହାଉସ କାଛରେ ଅଙ୍କା ବଡ଼ ବଡ଼ ରଙ୍ଗୀନ୍ ଛବି ଗୁଡ଼ାକ ଦେଖିଚ କେବେ ?

କରବୀ—ହଁ ।

ରମେଶ—ଏଇ ଛବି ମୁଁ ଆଙ୍କେ ।

କରବୀ—ସେଥିପାଇଁ କଣ ଟଙ୍କା ପଇସା ମିଳେ ?

ରମେଶ—ହଁ, ନିଶ୍ଚୟ । ଏଇ ତ ମୋର ରୋଜଗାର । ଆଉ ଭଗବାନଙ୍କ ଆଶୀର୍ବାଦରେ ଏ ରୋଜଗାରଟା ମନ୍ଦ ନୁହେଁ ।

କରବୀ—ମାସରେ ପଚାଶ ଟଙ୍କା ହୁଏ ?

ରମେଶ ହସେ ।—ତା ହୁଏତ ନିଶ୍ଚୟ ।

କରବୀ—ଠିକ୍ କେତେ ହୁଏ, କହନ୍ତୁ ନା ।

ରମେଶ—ଯାହା ହେଉନା କାହିଁକି ? ସେଥିରେ ତମକୁ ସୁଖରେ ରଖି ପାରିବି ?

କରବୀ ମୁହଁ ଭରିକରି କହେ–ହଁ, କାଙ୍ଗାଳର ଝିଅକୁ ସୁଖୀ କରିବାକୁ ହେଲେ ବର୍ଷକେ ଦିଖଣ୍ଡ ଶାଢ଼ୀ ଏବଂ ରୋଜ୍ ବେଳାଏ ଦିମୁଠା ଭାତ ହେଲେ ହେଲା ! ତାଠୁ ବେଶି କିଛି ଦରକାର ହୁଏ ନାଇଁ ।

ରମେଶ ବିବ୍ରତ ଭବେ କହେ—ତା କାହିଁକି ହେବ ? ମୁଁ କଣ ବର୍ଷକେ ଦିଯୋଡା ଧୋତୀ ପିନ୍ଧେ, ନା ରୋଜ୍ ବେଳାଏ ଦିମୁଠା ଭାତ ଖାଏ ?

କରବୀ ହସେ – ତାହେଲେ କହନ୍ତୁ ଆପଣଙ୍କର ଟଙ୍କା ଅଛି ।

ରମେଶ—ତମକୁ ସୁନ୍ଦର କରି ସଜାଇ ରଖିବା ଭଳି, ତମକୁ କଷ୍ଟ ନଦେବା ଭଳି ଟଙ୍କା ଅଛି ମୋର ନିଶ୍ଚୟ । ତେବେ ସେମିତି କିଛି ନୁହେଁ ।

ଦୂରରେ ଗୋଟାଏ ମାରଓ୍ୱାଡ଼ୀ ଧନିକର ପ୍ରକାଣ୍ଡ କୋଠା ଆଡ଼କୁ

ହାତ ବଢାଇ ରମେଶ କହେ—ଏ ରକମ ବଡଲୋକ ମୁଁ ନୁହେଁ । ତୁମେ ବି ନୁହଁ କରବୀ; ତେଣୁ—

କରବୀ—ବାହାଘରର ଖରଚ ଆସିବ କେଉଁଠୁ ?

ରମେଶ କିଛିକ୍ଷଣ ଚୁପ୍‌ହୋଇ କଣ ଭାବେ ତା'ପରେ ଟିକିଏ ହତାଶ ଭାବେ କୁହେ, ବିଜୟ ବାବୁଙ୍କର କଣ କିଛି ନାହିଁ ?

ଛଳ ଛଳ କରେ କରବୀର ଦୁଇ ଆଖି । ଥିଲେ କଣ ଆଉ ?

ରମେଶ—କେତେ ଟଙ୍କା ଲାଗିପାରେ ?

କରବୀ—ମୁଁ ତ ଜାଣେ ଭଦ୍ରଲୋକର ଝିଅର ବିବାହ ନମୋ ନମୋ କରି କରିଦେଲେ ମଧ୍ୟ ଅନ୍ତତଃ ଦି ହଜାର ଟଙ୍କା ଲାଗେ ।

ରମେଶ ବିସ୍ମିତ ହୁଏ । ଦି ହଜାର !

କରବୀର ଆଖି କଣରେ ଗୋଟାଏ ସନ୍ଦେହଭରା ବିରକ୍ତିର ଭାବ ହୋଇଉଠିଲା—କଣ ଭାବୁଛନ୍ତି ? ଏତେ ଟଙ୍କା ପାରିବେ ନାହିଁ ଯୋଗାଡ କରି ?

ରମେଶ ବିଷର୍ଣ୍ଣ ଭାବରେ କହିଲା—ପାରିବି, କିନ୍ତୁ, ଶୀଘ୍ର ଶୀଘ୍ର ଯୋଗାଡ଼ କରିବାକୁ ହେଲେ ନାନା ଜାଗାରୁ ଶହେ ଦିଶହ କରି ଧାରନେବା ଛଡ଼ା ଉପାୟ ନାହିଁ ।

କରବୀ—ତା ହେଲେ ଧାର କରନ୍ତୁ । ଧାର୍ ଦିନେ ଶୁଝିଦେଇ ପାରିବେ । କିନ୍ତୁ ଡ଼େରି କଲେ......... ।

କହୁ କହୁ ହଠାତ୍ ରେକିଯାଏ କରବୀ । ପୁଣି ଛଳ ଛଳ କରେ ଦୁଇ ଆଖି ।

ରମେଶ କହେ—କଣ ହେଲା ?

କରବୀ—ସତରେ କଣ ଭଲପାଅ ମୋତେ ?

ରମେଶ—ହଁ କରବୀ ।

କରବୀ ତେବେ ଟିକିଏ ଜଲଦି ଜଲଦି ବ୍ୟବସ୍ଥା କର । ଯଦି ନ କର, ତେବେ ବୋଧହୁଏ ମୋତେ ମରିବାକୁ ହେବ ।

ବିଚଳିତ ହୋଇ ରମେଶ କହେ - ଇଏ କଣ କହୁଛ ?

କରବୀ—ହଁ, ବଦ୍ୟବାଟିର ଏକ ଦୋହରା ବୁଢା ସଂଗେ ମୋ ବାହା-

ଘର ପ୍ରାୟ ଠିକ୍ ହୋଇଯାଇଛି । ବାହାଘର ଖରଚ ପାଇଁ ତିନି ହଜାର ଟଙ୍କା ବାବାଙ୍କୁ ଦେବାକୁ ଚାହିଁଛନ୍ତି ବଦ୍ୟବାଟିର ଭଦ୍ରଲୋକ ।

ରମେଶ ତାର ସାଇକେଲର ହ୍ୟାଣ୍ଡେଲକୁ ଶକ୍ତ କରି ଧରେ । ଆଖି ଆଉ ମୁହଁ ଯେପରି ହଠାତ୍ ଏକ ପ୍ରତିଜ୍ଞାରେ ଶକ୍ତ ହୋଇଉଠେ । କରବୀ ମୁହଁକୁ ଚାହିଁ ରମେଶ କହେ—କଦାପି ତା ହେବାକୁ ଦେବିନି କରବୀ । ବିଜୟ-ବାବୁଙ୍କୁ ତୁମେ ବାରଣ କରି ଦିଅ, ବୁଢ଼ାର ଟଙ୍କା ଯେପରି ସ୍ପର୍ଶ ନ କରନ୍ତି ସିଏ ।

ସାଇକେଲର ପ୍ୟାଡ଼ାଲରେ ପାଦ ଦେଇ ରମେଶ ପ୍ରାୟ ଚିତ୍କାର କରି ଉଠେ ମୁଁ କଥା ଦେଉଚି କରବୀ । ବାହାଘରର ସବୁ ଖରଚ ମୋର । ଦଶ ଦିନ ଭିତରେ ମୁଁ ତମକୁ ବାହାହୋଇ ମୋ ଘରକୁ ନେଇଯିବି ।

ଚାଲିଗଲା ରମେଶ ।

ଛୋଟ ଏକ ଉତ୍ସବ ହୋଇଗଲା ଗଣାଘାଟର ସେଇ ବସ୍ତିର ସେଇ କ୍ଷୁଦ୍ର ଗୃହର ଅଗଣାରେ । ବସ୍ତି ଲୋକେ ତ ମୁଗ୍ଧ ହୋଇଯାଇଥିଲେ ଏଇ କେତେ ଦିନ ଧରି ବିଜୟବାବୁ ନାମରେ ନବାଗନ୍ତୁକ ଏଇ ଗରୀବ ଭଦ୍ରଲୋକ ଆଉ କରବୀ ନାମକ ତାଙ୍କର ଶାନ୍ତ ଓ ସୁନ୍ଦର ଝିଅଟିର ବ୍ୟବହାରରେ । ଖିଆ–ପିଆର ସମାନ୍ୟ ଟିକିଏ ବ୍ୟବସ୍ଥା କରିବାକୁ ଚାହିଁଥିଲେ ବିଜୟବାବୁ, କିନ୍ତୁ ସାହୀର ଭଦ୍ରଲୋକମାନେ ବାଧା ଦେଇଛନ୍ତି ବିଜୟବାବୁଙ୍କୁ । —ମିଛରେ ଏ ସବୁ ବାଜେ ଖରଚ କରିବାର କୌଣସି ଦରକାର ନାହିଁ ମହାଶୟ । ଆପଣଙ୍କ ପରି ଅବସ୍ଥାର ଲୋକ ପକ୍ଷରେ ଏହା ଏକାବେଳେକେ ଗୋଟାଏ ଅନ୍ୟାୟ ଖରଚ ।

ଖାଲି ଦେଢ଼ ହଜାର ଟଙ୍କାର ଅଳଂକାରରେ ଝିଅକୁ ସଜାଇ ଏବଂ ଅନ୍ୟ ସବୁ ଖରଚର କାର୍ଯ୍ୟ ନମୋ ନମୋ କରି ସାରିଦେଇ ଶୁଭକାର୍ଯ୍ୟ ସଂପନ୍ନ କଲେ ବିଜୟବାବୁ । ସାହୀ ବସ୍ତିର ଲୋକେ ଜାଣିଲେ, ଭଦ୍ରଲୋକ ଜୀବନରେ ଯାହା କିଛି ପୁଂଜି ସଂଚୟ କରିଥିଲେ ସବୁ ଖରଚକରି ଝିଅକୁ ସୁନା ଅଳଙ୍କାରରେ ସଜାଇ ଦେଇଛନ୍ତି । ଏତେଟା କରିବା କିଛି ଦରକାର ନ ଥିଲା, କାରଣ ପାତ୍ର ପକ୍ଷରୁ ଏଭଳି କିଛି ଦାବୀ ବି ନ ଥିଲା । ଯାହା ହେଉ, ଗୋଟିଏ ମାତ୍ର ସନ୍ତାନ, ଏଇ ଗୋଟିଏ ଝିଅ, ଏବଂ ଏହାହିଁ ତ ଭଦ୍ରଲୋକଙ୍କ ଜୀବନର ଏକ-ମାତ୍ର ଦାୟ, ତେଣୁ ସେଇପରି ଦାୟ ପାଳନ କରିବାକୁ ଯାଇ ଭଦ୍ରଲୋକ ନିଜକୁ ଭିଖାରୀ କରିଦେଲେ । ଝିଅକୁ ବଡ଼ ଭଲପାନ୍ତି ବିଜୟବାବୁ କିନା !

ରମେଶ ଦେଇଥିବା ଟଙ୍କାରେ କିଣା ଅଳଙ୍କାରରେ ନିଜକୁ ସଜାଇ ରମେଶ ସଙ୍ଗରେ ଗ୍ଲିଲ୍ଲ ରମେଶର ପରିଣୀତା କରବୀ । ଝିଅର ବିଦାୟ ସମୟରେ ସେଇ ରକମ କରୁଣ ହୋଇ ଜାଗି ଉଠିଲ ସେଇ ଦୃଶ୍ୟ, ଯେଉଁ ଦୃଶ୍ୟ ଥରେ ତାରକେଶ୍ୱର, ଆଉ ଥରେ ବସିରହାଟ ଏବଂ ଆଉ ଥରେ ଭଟପଡ଼ାର ଗୋଟିଏ ପଡ଼ାର ଆଖି କରୁଣ କରିଦେଇଛି । ଶୁକୁ ଶୁକୁ କାନ୍ଦି ଉଠ ବିଜୟବାବୁ ଏବଂ ଫୁଲିଫୁଲି କାନ୍ଦେ କରବୀ ।

ଗଣାଘାଟରେ ଗୋଟିଏ ପଡାରେ ଅନେକ ମଣିଷଙ୍କ ଆଖିକୁ କରୁଣ କରି ଦେଇ ସ୍ୱାମୀ ସଙ୍ଗରେ ସ୍ୱାମୀ ଘରକୁ ଗଲ କରବୀ । ଆଉ ସେଇ ଦିନହିଁ କଲିକତା ବାଗବଜାରର ଗୋଟିଏ ଗଳିରେ ଛୋଟ ଏକ-ବଖୁରିଆ ବସା ଘର ଭିତରେ ଆସି ଠିଆ ହେଲ ରମେଶର ନବବିବାହିତା ବଧୂ ରୂପ ।

ତାର ଦୁଇ ଦିନ ପରେ ବାଗବଜାରର କ୍ଷୁଦ୍ର ସେଇ ବସାଘରେ ଉତ୍ସବର ବତି ଜଳେ ସାରାରାତି । ବୌଭାତ ଆଉ ଫୁଲଶଯ୍ୟା । ଉତ୍ସବରେ ସମାରୋହ ନାହିଁ, କିନ୍ତୁ ହସ ଆଉ କଳରବର ସମାରୋହ ଅଛି । ରମେଶର ନିଜର ବୋଲି ଏଇ ପୃଥିବୀରେ ଯେଉଁମାନେ ଅଛନ୍ତି, ସେଇମାନଙ୍କ ଭିତରୁ କେତେଜଣ ବନ୍ଧୁ ବାନ୍ଧବ ଆସି ଏଇ ଉତ୍ସବରେ ସବୁ ଭର ନେଇଛନ୍ତି । ଆସି-ଛନ୍ତି ଜଣେ ମାଉସୀ ଏବଂ ତାଙ୍କର ତିନି ଝିଅ । ଆସିଲେ ଜଣେ ଦାଦା ତାଙ୍କର ଦଶଟି ପୁଅଝିଅଙ୍କୁ ନେଇ । ରମେଶର ଦୁଇବନ୍ଧୁଙ୍କ ମାଆ ଏବଂ ଆଉ ଜଣେ ବନ୍ଧୁର ସ୍ତ୍ରୀ ମଧ୍ୟ ଆସିଲେ । ଗୋଟିଏ ରାତି ଏବଂ ଗୋଟିଏ ସକାଳ ପହରକୁ ବ୍ୟସ୍ତତାରେ; ମୁଖରତାରେ ଏବଂ ହସଖୁସିରେ ଭରି ଦେଇ ଯେତେବେଳେ ଗ୍ଲିଗଲେ ସମସ୍ତେ, ସେତେବେଳେ ଉପରବେଳାର ଖରା ଝରକାରେ ଆସି ଲେଟି ପଡୁଛି । ଘରଭିତରେ ନବବଧୂ ଜୋରରେ ଗୋଟାଏ ନିଶ୍ୱାସ ଛାଡେ; ମୁଣ୍ଡରୁ ଓଢ଼ଣା କାଢ଼ିଦେଇ ତାର ବଡ଼ ବଡ କଜଳଲଗା ଆଖି ବୁଲାଇ ଗ୍ଲରି-ଆଡ଼କୁ ଦେଖେ, ଆଉ ରମେଶ ଗ୍ଲହିଁଥାଏ କରବୀର ମୁହଁକୁ ।

ରମେଶ କହେ—ମୁଁ ପଟ ଉପରେ ତମର ଗୋଟାଏ ଛବି ଆଂକିବି କରବୀ । ଦି ଦିନରେ ଶେଷ କରି ପକାଇବି । ତାପରେ ନିଜ ଆଖିରେ ଦେଖି ବୁଝିବ, ମୋର ଏଇ ହାତରେ ମୁଁ କଣ କରିପାରେ ।

କରବୀ ଉତ୍ସୁକ ଭବରେ ଅନାଏ ।—ବୁଝିପାରୁନି କଣ କହୁଚ ।

ରମେଶ ତମ ଆଖି ଦୁଇଟିକୁ ଥରେ ଜୀବନ୍ତ କରି ଉଠାଇବି ଛବିରେ ।

କରବୀ –କରି ରଖ । ମୁଁ ଫେରିଆସି ଦେଖିବି ।

ରମେଶ ଆଶ୍ଚର୍ଯ୍ୟ ହୋଇ— କୁଆଡ଼େ ଯିବ ?

କରବୀ—ବାବାଙ୍କ ପାଖକୁ ।

ରମେଶ –ତା ତ ଯିବ । କିନ୍ତୁ ଆଜି-କାଲି ମଧ୍ୟରେ ତ ଯାଉନା ।

କରବୀ—ଯିବାକୁ ଚାହେଁନା; ତେବେ ବାବା ଯଦି ଆସି ପଡ଼ନ୍ତି, ନ ଯାଇ ପାରିବି ନାଇଁ ।

ରମେଶ—ତମ ବାବାଙ୍କର ଆସିବାର କଥା ଅଛି ନା କଣ ?

କରବୀ—ମୋର ମନେ ହୁଏ କାଲି ସକାଳେ ଆସି ପଡ଼ିବେ ।

କିଛି ସମୟ ଚୁପ୍ କରି ରହେ କରବୀ— । ତାପରେ ହଠାତ୍ ଯିମିତି ଗୋଟାଏ ଦୁଃସହ ବେଦନାରେ ଛଟ ପଟ କରି ଉଠେ ।—ଉଃ ବାବାଙ୍କ କଥା ମନେ ପଡ଼ିଲେ ଆଉ କିଛି ଭଲ ଲାଗେନା ବୋଧହୁଏ ଇଲଗେ କାଂଦୁଥିବେ ।

ସାନ୍ତ୍ୱନା ଦେବା ସ୍ୱରରେ ରମେଶ କହେ, ଆଶ୍ଚର୍ଯ୍ୟ ନୁହେଁ । ତୁମେ ତ ତାଙ୍କର ଏକମାତ୍ର ସନ୍ତାନ । ତମ ବାବାଙ୍କ କଷ୍ଟ ମୁଁ ବୁଝିପାରେ କରବୀ । କିନ୍ତୁ ଦେଖାଯାଉ, ଆସନ୍ତୁ ତମ ବାବା । ତାପରେ ମୁଁ ତାଙ୍କୁ ବୁଝାଇ କହିବି ।

କରବୀ—କଣ କହିବ ତୁମେ ?

ରମେଶ—ମାସେ ଖଣ୍ଡେ ପରେ ତୁମେ ଯିବ । ତା ଆଗରୁ ଯେମିତି ତମକୁ ନେବା ପାଇଁ ପୀଡ଼ାପୀଡ଼ି ନ କରନ୍ତି ସିଏ ।

କରବୀ– ବାବା ବୋଧହୁଏ ରାଜି ହେବେ ନାଇଁ । ଆଉ ମୁଁ ବି କହୁଚି, ତୁମେ ଆପତ୍ତି କର ନାଇଁ । ବାବାଙ୍କ ମନରେ ଦୁଃଖ ଦିଅ ନାଇଁ ।

ରମେଶ ବିଷଣ୍ଣଭାବେ ହସେ ।—କିନ୍ତୁ ମୋ ମନର ଦୁଃଖ କଣ ସିଏ ବୁଝିବେ ନି ?

କରବୀ—ତମ ମନରେ ପୁଣ କେଉଁ ଦୁଃଖ ?

ତମ ବାବା ଯଦି କାଲି ଆସନ୍ତି ଆଉ ତୁମେ ଯଦି ତାଙ୍କ ସଙ୍ଗରେ ଚାଲିଯାଅ, ତାହାଲେ ମୋତେ ଯେ ଭାରୀ ଖରାପ ଲାଗିବ କରବୀ ।

ରମେଶ ମୁହଁକୁ କଜ୍ଜଳ ଲଗା ବଡ଼ ବଡ଼ ଆଖିର ଦୃଷ୍ଟିକୁ ଟିକିଏ ତୀବ୍ର କରି ଦେଖୁଥାଏ କରବୀ ।

ରମେଶ କହେ—ଯଦି ତୁମେ ଯାଅ, ତାହେଲେ ମୁଁ ବି ତମ ସଙ୍ଗରେ ଯିବି । ଗଣାଘାଟରେ କେତୁଟା ଦିନ ରହି ପୁଣି ତମକୁ ସଙ୍ଗରେ ନେଇ ଚାଲି ଆସିବି ।

କରବୀ କହେ—ଛି ! ତମର କଣ ଟିକିଏ ହେଲେ ମାନ-ସମ୍ମାନ ଜ୍ଞାନ ନାହିଁ ? ଯିବାକୁ ନ କହିଲେ ଶଶୁର-ଘରକୁ କେବେ ଯାଏ ମଣିଷ ?

ରମେଶ—ତମ ବାବା କଣ ମୋତେ ସଙ୍ଗରେ ଯିବାକୁ କହିବେ ନାହିଁ ?

କରବୀ—ନା ।

ରମେଶ—କାହିଁକି ?

କରବୀ କୁଂଥୁ କୁଥୁଂ ହୁଏ ।—କିଏ ଜାଣେ କାହିଁକି?

ରମେଶ—କିନ୍ତୁ ତମେ ତ ବାବାଙ୍କୁ କହିପାର ।

କରବୀ—କଣ କହିବି ?

ରମେଶ—ମୋତେ ବି ଯିମିତି ସଙ୍ଗରେ ଯିବାକୁ କହନ୍ତି ।

କରବୀ—ଛି ! ମୋତେ କଣ ଏକବାରେ ଗୋଟାଏ ବେହିୟା ମନେ କରିଛ ? ଝିଅ ହୋଇ ବାପକୁ ଏ କଥା କୁହାଯାଏ ? କି ବିଶ୍ରୀ ଲଜ୍ଜାର କଥା !

ଚୁପକରି ରହେ ରମେଶ । କରବୀ କୁହେ, ତୁମେ ଗମ୍ଭୀର ହୋଇଗଲ କାହିଁକି ? କିଛି ସନ୍ଦେହ ହେଉଚି ନା କଣ ?

ରମେଶ—ସନ୍ଦେହ ? ସନ୍ଦେହ ପୁଣି କେଉଁଥି ପାଇଁ ?

କରବୀ—ବୋଧହୁଏ ସନ୍ଦେହ ହେଉଚି ଯେ ତମ ମନରେ ମୋ ପାଇଁ କିଛି ଟାଣ୍ ନାହିଁ ।

ରମେଶ—ମୋ ମନରେ ତମ ପାଇଁ କୌଣସି ଟାଣ୍ ନାଇଁ ଏ ସନ୍ଦେହ ହେବା ଆଗରୁ ମୁଁ ବୋଧହୁଏ ମରିଯିବି ।

କରବୀର ଆଖି ଦୁଇଟା ହଠାତ୍ କର୍ମି ଉଠେ । ବୋଧହୁଏ ତାର ବୁକୁ ଭିତରେ ଅଦ୍ଭୁତ ଗୋଟାଏ ଭୟ ଛଟପଟ କରି ଉଠୁଛି । ଆସ୍ତେ ଆସ୍ତେ. ଯେପରି ଟିକିଏ ହସଖୁସି କରିବା ଉଦ୍ଦେଶ୍ୟରେ କହି ଗ୍ଲାଲ କରବୀ—ତୁମେ ମରିବ କାହିଁକି ? ତାର ଅପେକ୍ଷା ବରଂ ମୁଁ ମରିଯିବି, ଆଉ ତୁମେ ଏଇ ଘରେ ନୂତନ ବୋହୂ ନେଇ ଦିନେ ମୋ କଥା ଗଳ୍ପ କରିବ ଆଉ ହସିବ ।

ରମେଶ--ଏଭଳି ଭୟାନକ କଥା ଥଟ୍ଟାରେ ମଧ୍ୟ କହିବା ଉଚିତ ନୁହେଁ କରବୀ ।

କରବୀ ହସେ—ଭାଗ୍ୟବାନର ବୋହୂ ମରେ ।

ରମେଶ—ମିଥ୍ୟା କଥା ।

ରମେଶ ବି ହସି ହସି ପାଖକୁ ଲାଗି ଆସି କରବୀର ହାତ ଧରି— ଏପରି ବୋହୂ କାହାରି ବି ହୁଏ ନା ।

ଚମକି ଉଠେ କରବୀ । ରମେଶ ହସିହସି କହେ—ଏଭଳି ବୋହୂ ଯଦି ମରିଯାଏ, ତେବେ ସେ ଅଭାଗା ସ୍ୱାମୀର ବି ବଂଚିରହି ଲାଭ ନାହିଁ ।

ହାତ ଛଡ଼ାଇ ନେଇ ଅନ୍ୟଦିଗକୁ ଗ୍ରହେଁ କରବୀ । ତାପରେ ଉଠିଯାଇ ଖଟର ଗୋଟିଏ କୋଣରେ ସଙ୍କୋଚରେ ବସି ରହେ । ଯେପରି ରମେଶର ମୁହଁକୁ ଅନାଇବାକୁ ଗ୍ରହେଁନା; ଆଉ ରମେଶ ଆଖି ଆଗରେ ନିଜର ମୁହଁଟାକୁ ବି ଆଉ ଦେଖାଇବାକୁ ଗ୍ରହେଁନା କରବୀ ।

ସନ୍ଧ୍ୟା ହୋଇ ଆସେ । କରବୀ ହଠାତ୍ ବ୍ୟସ୍ତହୋଇ କହେ– ତମେ କଣ ଆଜି ଖାଇବ ନାହିଁ, ଆଉ ମୋତେ ବି ଖାଇବାକୁ ଦେବ ନାହିଁ ବୋଲି ଠିକ କରିଚ ?

ରମେଶ—ତା ମାନେ ?

କରବୀ – ବାହାରୁ ଖାଇବା ଜିନିଷ କିଛି କିଣିଆଣିବାର ଗରଜ ଦେଖୁନାହିଁ, ଅଥଚ ମୋତେ କିଛି ଖାଇବା ପାଇଁ ବନାଇବାକୁ ବି କହୁନାହଁ ।

ଉତ୍ତର ଦେବାକୁ ଯାଇ ରମେଶର କଣ୍ଠସ୍ୱରରେ ଗୋଟାଏ ଆନନ୍ଦର ଢେଉ ଯେପରି ନାଚି ଉଠିଲା ।

– ତୁମେ ରାନ୍ଧିବ ?

କରବୀ – ହଁ, ଏଇ ଗୋଟାଏ ରାତି ତ ! ଟିକିଏ ଖଟିଯାଏ ତମ ଘରେ ।

ହସୁଥାଏ କରବୀ । ରମେଶ ବି ହସି ହସି କହେ ଏତେବେଳ ଧରି ଏଇ କଥାଟା କହିବା ପାଇଁ ମନଟା ଛଟପଟ କରୁଚି ।

କରବୀ—କି କଥା ?

ରମେଶ - ଏତେ ଦିନଧରି ହୋଟେଲର ରନ୍ଧା ଖାଇ ଆସିଛି । ଆଜି ତୁମେ ଘରେ ଥାଉ ଥାଉ ହୋଟେଲର ଖାନା ଆଣିବାକୁ ଟିକିଏ ବି ଇଚ୍ଛା କରୁନାଇଁ ।

କରବୀ—ମୋ ହାତର ରନ୍ଧା ଖାଇବା ପାଇଁ ଏତେ ଲୋଭ ତମର ?

ରମେଶ—ହୋଇଛି ତ ।

କରବୀ ଯେପରି ଅନ୍ୟମନସ୍କ ଭବରେ ଅନ୍ୟ ଦିଗକୁ ଚାହିଁ ହଠାତ୍ କହି ଉଠିଲା—କିନ୍ତୁ ଏପରି ଲୋଭ ନ କରିବା ହିଁ ଭଲ ।

ରମେଶ—ଚିରକାଳ ହିଁ ଏହି ଲୋଭ କରିବି ।

ତାପରେ ଆଉ ଡେରି ହେଲା ନାହିଁ । ବାଗବଜାର ଗଳିର ଏକ କ୍ଷୁଦ୍ର ଘର ଭିତରୁ କୋଇଲା ଧୂଆଁ ଉଠି ଖେଳିଗଲା ସନ୍ଧ୍ୟା ବତାସରେ । ଏକ ନବବଧୂ ହାତରେ ଏଇ ଘର ଭିତରେ ନୂଆ ଏକ ଘରକରଣାର ଆନନ୍ଦ ଖୁଟ୍‌ଖାଟ୍ ଆଉ ଟୁଙ୍ଗ୍‌ଟାଙ୍ଗ୍ ଶବ୍ଦକରି ବାଜିବାକୁ ଲାଗିଲା ବାସନ କୁସନ ଆଉ ଡଙ୍କା କରଚୁଲି ଓ ହାଣ୍ଡି ଡେକ୍‌ଚୀର ଅଙ୍ଗେ ଅଙ୍ଗେ । ନୂଆ ଶାଢ଼ୀର ଅଞ୍ଚଳ ଅଣ୍ଟାରେ ବାନ୍ଧି, ହଳଦି-ମଖା ହାତର ଆରପଟ ଦେଇ କପାଳ ଉପରୁ ଅଡ଼ୁଆ ତଡ଼ୁଆ କେଶ-ପାଶର ଉପଦ୍ରବ ଠେଲି, କାମ କରି ଯାଉଚି ଏକ ନୂତନ ଗୃହିଣୀ ।

ରନ୍ଧା ଶେଷ ହୋଇଗଲା । ଘର ଚଟଣାରେ ଆସନ ପାତିଦିଏ କରବୀ । ଖାଇବାକୁ ବସେ ରମେଶ ।

ରମେଶ—ଗୋଟାଏ କଥା କହିବି ?

କରବୀ—କହ ।

ରମେଶ—ଏକା ଖାଇବାକୁ ଇଚ୍ଛା କରୁନାଇଁ ।

କରବୀ—ତାର ମାନେ ?

ରମେଶ—ତମେ ବି ଆସ । ଗୋଟିଏ ଥାଳିରେ ଦି'ଜଣ ଯାକ ଏକାସଙ୍ଗେ ଖାଇବା । ପୁଣି ଚମକି ଉଠେ କରବୀ । କିନ୍ତୁ କୌଣସି କଥା କହି

ନପାରି ଖାଲି ସ୍ତବଧ ହୋଇ ଛିଡ଼ାହୋଇ ରହେ ।

ରମେଶ ବି ଉଠି ଛିଡ଼ାହୁଏ । ହସି ହସି ଅଥଚ ବେଶ୍ ଶକ୍ତକରି କରବୀର ହାତଧରି ଆସନ ପାଖରେ ବସାଇ ଦେଇ ରମେଶ କହେ -- ଯାପରେ ତ କାମଦାମ ଗ୍ରପାରେ କେବେ ସୁଯୋଗ ନଷ୍ଟ ହୋଇଯିବ, ତମ ସଙ୍ଗରେ ବସି ଏକ ଥାଳିରେ ଏପରି ଖାଇବାର ଆନନ୍ଦ ଜୀବନରେ ଆଉ କେବେଦିନ ପାଇବି କିଏ ଜାଣେ ?

ଖାଇବସେ କରବୀ । ରମେଶ ଓ କରବୀ ଏକ ସଙ୍ଗେ ଥାଳି ଉପରେ ହାତ ଚଳାଇ ଗରମ ଭାତର ଗୋଟାଏ ସ୍ତବକ ଭାଙ୍ଗନ୍ତି । ଯେମିତି ଜୀବନରେ ଗୋଟାଏ ନୂଆ ବ୍ରତ କରୁଛନ୍ତି ରମେଶ ଓ ତାର ଭଲପାଇ ବିବାହ କରିଥିବା ସଙ୍ଗିନୀ ।

ଖାଉ ଖାଉ କିପରି ଗୋଟାଏ କାନ୍ଦ କାନ୍ଦ ସ୍ୱରରେ ପ୍ରଶ୍ନକରେ କରବୀ, ତମକୁ ଖୁବ୍ ଖଟିବାକୁ ହୁଏ ବୋଧେ ?

ରମେଶ—ନିଶ୍ଚୟ । କାମ ତ କାହାପ୍ରତି ଦୟାମାୟା କରେନା । ଜର ନେଇବି କେତେଦିନ କାମ କରିବାକୁ ଛୁଟିଛି ।

କରବୀ—ଏତେ ଖାଟିବାକୁ ହୁଏ କାହିଁକି ?

ରମେଶ – ପେଟପାଇଁ ।

କରବୀ—କେତେ ରୋଜଗାର କର ।

ରମେଶ—କେଉଁ ମାସରେ ପଚାଶ; କେଉଁ ମାସରେ ଶହେ, କେଉଁ-କେଉଁ ମାସରେ କିଛି ନୁହେଁ ।

କରବୀ—ତା ଉପରେ ମୁଁ ଗୋଟାଏ ନୂଆ ଜଞ୍ଜାଳ ଜୁଟିଚି । ଏଥର ତାହେଲେ ତୁମେ ଖଟିଖଟି ପାଗଳ ହୋଇଯିବ ବୋଧହୁଏ ।

ରମେଶ – ମୋଟେ ନୁହେଁ । ଏଣିକି ମନ ଖୁସିରେ ବରଂ ବେଶୀ ଖଟି ପାରିବି ।

କରବୀ - ତୁମେ ଅନେକ ଟଙ୍କା ଧାର ବି ତ କରିଛ ?

ରମେଶ ହସି ହସି ସେଇ ଋଣର ଭାରକୁ ଯେମିତି ଉଡାଇ ଦେବାକୁ ଚାହେଁ । ଦିଟା ବର୍ଷ ଜୋର୍ ଖଟି ସେ ଧାର ଶୁଝିଦେବି । ସେଥିପାଇଁ କିଛି ପରବା କରେନା ।

କରବୀର ମୁଣ୍ଡଟା ହଠାତ ତଳକୁ ଆସେ । ହାତ ବନ୍ଦକରି ଚୁପ୍‌କରି ବସିଥାଏ କରବୀ । ରମେଶ ପ୍ରଶ୍ନକରେ—କଣ ହେଲା, ତୁମେ ଖାଉନା ଯେ !

କରବୀର ସ୍ତବ୍ଧ ହାତଟା ଆଡକୁ ଚାହିଁ ଦେଖେ ରମେଶ । ତାପରେ ଅଦ୍‌ଭୁତ ଏକ ବ୍ୟାପାର ଦେଖି ଚିତ୍କାର କରି ଉଠେ କରବୀ । —ଏ କଣ କରବୀ ?

ଟପ୍ କରି ଟୋପାଏ ଲୁହ ଝରି ପଡ଼ିଛି କରବୀର ପୋଡା ମୁହଁର ଛାୟାରେ ଢ଼ଙ୍କା ଆଖି ଦୁଇଟିରୁ, କରବୀର ହାତ ଉପରେ ।

ହାତ ଧୋଇ ଉଠି ଛିଡ଼ା ହୁଏ କରବୀ । ଅଞ୍ଚାରେ ବନ୍ଧା କାନିକୁ ଅଲଗା କରିଦେଇ ସେ ଲୁହ ପୋଛେ । ତାପରେ କୁହେ—ଶୁଣ ।

ରମେଶ—କହ ।

କରବୀ—ତୁମେ ବଂଚିବାକୁ ଚାହଁ ?

ରମେଶ—ଏ କଥାର ମାନେ କଣ କରବୀ ?

କରବୀ—ଯଦି ବଂଚିବାକୁ ଚାହଁ ତେବେ ଏକ୍ଷଣି ପୁଲିଶ୍ ଡାକି ମୋତେ ଧରେଇ ଦିଅ ।

ରମେଶର ଆଖି ଥରଥର କରି କମ୍ପେ । —ଏ କଥାର ବା ମାନେ କଣ କରବୀ ?

କରବୀ—ମୁଁ ତମକୁ ଠକେଇବାକୁ ଆସିଛି । ମୁଁ କରବୀ ନୁହେଁ । ......ମୁଁ ହେଲି......।

ଚିତ୍କାର କରି ଉଠେ କରବୀ । —ମୁଁ ଏକ ଭୟଙ୍କର ବାପର ଭୟଙ୍କର ଝିଅ । ମୁଁ ତମର ଘର କରିବାକୁ ତମ ପାଖକୁ ଆସିନି, ପଳାଇ ଯିବାପାଇଁ ହିଁ ଆସିଛି ।

ଯେମିତି ଥିଏଟରର ଗୋଟାଏ ଝିଅ ଗୋଟାଏ ମିଥ୍ୟା ଢ଼ଙ୍ଗ ଧରିଛି ! ମଜା କରିବାପାଇଁ ଆଉ ଥଟ୍ଟା କରି ମିଛେ ମିଛେ ରମେଶକୁ ଭୟ ଦେଖାଇବା-ପାଇଁ ଆସିଚି । ରାଜକୁମାରୀର ସାଜ ପିନ୍ଧି ଏକ ମାୟାବିନୀ ଜଣେ ରାଜାଙ୍କୁ ଠିକ୍ ଏମିତି ଭାବରେ ଢଙ୍ଗ କରି ବେହିୟାଙ୍କପରି କେତେଗୁଡ଼ାଏ ଭୟଙ୍କର କଥା ଶୁଣାଇ ପଳାଇଗଲା, କଣ ଯେ ସେ ହତଭାଗା ରାଜାର ନାମଟା ମନେ-କରି ପାରୁନାହିଁ ରମେଶ, ଥିଏଟରର ସେ ନାଟକର ନାମଟା ବି ମନେ ପଡୁନାହିଁ ।

ତଥାପି ଭୟପାଏ ରମେଶ । ଚୁପ୍‌କରି ଯେପରି ମୃତ୍ୟୁର ବାର୍ତ୍ତା ଶୁଣୁଚି ରମେଶ । କରବୀର ମୁହଁ ଆଡକୁ ଚକାଇ ବୁଝିବାକୁ ଚେଷ୍ଟାକରେ ରମେଶ, ସତରେ କଣ ଏଇ ମୁହଁ ଏକ ଠଗିନୀର ମୁହଁ ହୋଇପାରେ ?

କରବୀ କୁହେ— ମୁଁ ଜାଣେ, ତୁମେ ପୁଲିଶ୍ ଡାକି ମୋତେ ଧରେଇ ଦେଇ ପାରିବ ନାଇଁ । ତୁମେ ଏତେ ବୋକା ଆଉ ଏତେ ଦୁର୍ବଳ ।

ଦିହରୁ ସବୁ ଗହଣା ଖୋଲି ଚଟାଣ ଉପରେ ରଖିଲ କରବୀ ।

......ଏଇ ନିଅ, ତମର ଅନ୍ତତଃ ଦେଢ଼ ହଜାର ଟଙ୍କା ବଂଚିଲ । ଏଥର ମୋତେ ଚୁପ୍‌ଚାପ ଚାଲି ଯିବାକୁ ଦିଅ ।

ରମେଶ – କୁଆଡେ ଯିବ ତୁମେ ?

ଉତ୍ତର ଦିଏନା କରବୀ ।

ରମେଶ କଠୋର ସ୍ୱରେ ଚିତ୍କାର କରେ । – ଭୟଙ୍କର ବାପ ପାଖକୁ ଫେରିଯିବାକୁ ଚାହଁ ।

ଉତ୍ତର ଦିଏନା କରବୀ ।

ପାଟିକରି କାନ୍ଦିଉଠେ କରବୀ—ତୁମେ କହ, ତୁମେ ମୋତେ ଯିବାକୁ ଦେବାକୁ ଚାହଁନା ।

ଶାନ୍ତହୋଇ କିଛିକ୍ଷଣ ଭାବିବାକୁ ଲଗେ ରମେଶ । ତାପରେ ଛଳଛଳ ଆଖିରେ କହେ – ତମକୁ ଛାଡ଼ିଦେବାକୁ ଇଚ୍ଛା କରେ ନା ।

କରବୀ – ତେବେ ଶୁଣ ।

ରମେଶ—କହ ।

କରବୀ—ଆଜି ଏକ୍ଷଣି ଏଠୁ ଦିଜଣ ପଳାଇଯିବା ।

ରମେଶ—କୁଆଡେ ଯିବ ?

କରବୀ – ତୁମେ ଯେଉଁଠିକି ନେଇଯିବ, ଯେଉଁଠି ରଖିବ ।

ଆଉ ଡେରି କରେନାଇ ରମେଶ, ସେଇ ରାତିରେ ହିଁ ଶୂନ୍ୟ ହୋଇଗଲା ବାଗବଜାର ଗଳିର କ୍ଷୁଦ୍ର ଗୋଟିଏ ବସା । ଠଗର ଝିଅ ଠଗିନୀ ଜୀବନରେ ଶେଷଥର ପାଇଁ ପୃଥିବୀର ଗୋଟିଏ ସାହାକୁ କେବଳ ଭବାନୀପୁର କରିଦେଇ କୁଆଡ଼େ ଖସିଗଲା ତା ସ୍ୱାମୀ ସଙ୍ଗରେ ।

ଠକେଇ ଖାଇ ଖାଲି ଜଣେ ଲୋକକୁ । ଗଣାଘାଟରୁ ଜଣେ ବିଜୟବାବୁ ପରଦିନ ସକାଳେ ଯେତେବେଳେ ବାଗବଜାର ଗଳିରେ ଆସି ଠିଆହେଲେ, ସେତେବେଳେ ଦେଖି ଅବାକ୍ ହୋଇଗଲେ, ସେଇ ଘରର ଦରଜାରେ ଗୋଟାଏ ତାଲା । ଦରଜା ଫାଙ୍କରେ ଭୁଙ୍କିମାରି ଦେଖିଲେ ବିଜୟବାବୁ ଘର ଭିତରଟା ବି ଶୂନ୍ୟ ! କି ଭୟାନକ ସେ ଶୂନ୍ୟତା !

କିନ୍ତୁ ବେଶୀ ସମୟ ଅବାକ୍ ହୋଇ ରୁହିଁ ରହିବାକୁ ହୋଇନି । ପୁଲିସ୍ ଆସି ହାତ ଚପି ଧରିବା ମାତ୍ରେ କାନ୍ଦି ଉଠିଲେ ବିଜୟବାବୁ ନାମକ ଲୋକଟି ।

ଇସ୍ ଝିଅ ହୋଇ ବାପକୁ ଏମିତି କଣ ଠକାଇବାକୁ ହୁଏରେ ଠଗିନୀ !

# ଗୋଟିଏ ପ୍ରେମର ଗଳ୍ପ

## ନରେନ୍ଦ୍ର ମିତ୍ର

ଝରକାରେ ମୁହଁ ଚଢ଼ାଇ ପ୍ରଭାତବାବୁ କହିଲେ, "ଲେଖୁଛନ୍ତି ? ତେବେ ଥାଉ ଇଲଗେ ଆଉ ଡିସଟର୍ବ କରିବି ନାହିଁ ।"

ମୁଁ କାଗଜ କଲମ ଗୋ ଟେଇ ରଖି ମୋର ଶ୍ରଦ୍ଧେୟ ପ୍ରବୀଣ ବନ୍ଧୁଙ୍କୁ ସ୍ୱାଗତ ଜଣାଇ କହିଲି, "ଆସନ୍ତୁ, ଆସନ୍ତୁ, ଭିତରକୁ ଆସନ୍ତୁ ।"

ପ୍ରଭାତବାବୁ ଟିକିଏ ଦ୍ୱିଧାନ୍ୱିତ ହୋଇ କହିଲେ, "କିନ୍ତୁ ଆପଣ ଲେଖୁଥିଲେ ଯେ ।"

କହିଲି, "ସବୁ ଲେଖା କଣ ଲେଖା ? ଖଣ୍ଡେ ଦିଖଣ୍ଡ ଚିଠିପତ୍ରର ଜବାବ ଦେଉଥିଲି, ଆସନ୍ତୁ ।"

ଆମନ୍ତ୍ରଣ ପାଇ ପ୍ରଭାତବାବୁ ଏଥର ଘରେ ଢୁକିଲେ । ସୋଫାରେ ବସି ହାତର ଛତାଟିକୁ ତଳେ ଶୁଆଇ ଦେଲେ । ଯିବା ସମୟରେ କାଳେ ନେବାକୁ ଭୁଲିଯିବେ ସେଇଥିପାଇଁ ବୋଧହୁଏ । ପ୍ରିୟବସ୍ତୁଟିକୁ ଆଖିର ବାହାରେ ରଖିବାକୁ ଚାହାନ୍ତି ନାହିଁ ।

ସେ ଆସିବା ସଙ୍ଗେ ସଙ୍ଗେ ମୁଁ ଉଚ୍ଚାସନରୁ ଓହ୍ଲାଇ ଆସି ତାଙ୍କ ସାମନା ସୋଫାଟିରେ ଆସି ବସିଲି ।

ସେ ମୋ ଆଡ଼କୁ ଚାହିଁ ହସି କହିଲେ, "ଖୁବ୍ ଚିଠିପତ୍ର ଲେଖନ୍ତି ବୋଧହୁଏ । ଦିନେ ମୋର ବି ଚିଠିପତ୍ର ଲେଖିବାର ନିଶା ଥିଲା । ଗତିରେ ନଶୋଇ ବନ୍ଧୁମାନଙ୍କୁ ଚିଠି ଲେଖୁଥିଲି । ଏ ଦିଗରୁ ଆପଣ ମୋତେ a man of letters କହି ପାରନ୍ତି ।"

ମୁଁ ତାଙ୍କର ନିଜେ ଦିଆ ଖେତାବ୍‌ଟାକୁ ସ୍ୱୀକାର କରିନେଇ କହିଲି, "ଚା ଚଳିବ ?"

ଘ୍ଭ କଥାରେ ପ୍ରଭାତବାବୁ ପ୍ରସନ୍ନ ହୋଇ କହିଲେ, "ତା ଚଳିପାରେ । କିନ୍ତୁ ଏଇ ଦିପହରଟାରେ ଘ୍ଭ ମାଗି ଆପଣଙ୍କର ଆଶ୍ରମପୀଡ଼ା ଘଟାଇବି ନାହିଁ ତ ! ଗାର୍ହସ୍ଥ୍ୟାଶ୍ରମର ନିଜେ ତ ଆଉ ଗୃହୀ ନୁହେଁ । ତେଣୁ ଭୟ କରିଥିଲେ କାହିଁ ଅପରର ଗୃହିଣୀର ଶାନ୍ତି ଭଙ୍ଗ କରେ ।"

ମୁଁ ଅନ୍ଦରମହଲ ଆଡ଼କୁ ଆଗେଇ ଯାଇ ଦି'କପ ଘ୍ଭ'ର ଫରମାସ କରି ମୋ ନିଜ ଜାଗାରେ ଆସି ବସିଲି ।

ପ୍ରଭାତବାବୁ ନାଁରେ ପ୍ରଭାତ । ତାଙ୍କର ବୁଲିବାର ଆଉ ଗଳ୍ପ କରିବାର ସମୟ ଦିନ ଦିପହର ନୋହିଲେ ରାତି ଦିପହର । ବୟସ ଚଉସ୍ତରି ହୋଇଛି । ଶରୀର ଶୀର୍ଣ୍ଣ ହୋଇଯାଇଛି । କିନ୍ତୁ ମନକୁ ଜୀର୍ଣ୍ଣ ହେବାକୁ ଦେଇନାହାନ୍ତି । ବସ୍ ଟ୍ରାମ୍‌ରେ ସ୍ୱଚ୍ଛନ୍ଦରେ ଚଲାବୁଲା କରନ୍ତି । ଖୁବ୍ ସାମାଜିକ ମଣିଷ, ପସନ୍ଦ ମୁତାବକ ସଭାସମିତିରେ ଯାଇ ହାଜର ହୁଅନ୍ତି । ପୁରୁଣା ବନ୍ଧୁବାନ୍ଧବମାନଙ୍କର ଖୋଜଖବର ନିଅନ୍ତି । ଆହୁରି ନୂତନ ବନ୍ଧୁ ଆହରଣରେ ମଧ୍ୟ ବିରାମ ନାହିଁ । ପୁଅର ବୟସୀ ନାତିର ବୟସୀ ସମସ୍ତଙ୍କର ସେ ସମବୟସୀ । ତାଙ୍କର ନିଜର ଅବଶ୍ୟ ପୁଅ ନାହିଁ କି ନାତି ନାହିଁ । ପ୍ରଭାତବାବୁ ଅକୃତଦାର ।

ଟିକିଏ ଏକଥା ସେକଥା ପରେ ମୁଁ କହିଲି, "ଭଲକଥା ପ୍ରଭାତବାବୁ ! ପଅରଦିନ ରାତିରେ ତ ଆପଣ ଆସିଲେ ନାହିଁ, ମୁଁ ଜଣେ ଦି'ଜଣ ବନ୍ଧୁଙ୍କୁ କହି ରଖିଥିଲି । ସେମାନେ ଆସିଥିଲେ ଆପଣଙ୍କ ସଙ୍ଗେ ଗଳ୍ପ କରିବା ପାଇଁ । ଆମେ ଅନେକ ସମୟ ଅପେକ୍ଷା କରିଥିଲୁଁ ।"

ପ୍ରଭାତ ବାବୁ ଟିକିଏ ଜିଭକାଟି ଲଜ୍ଜିତ ଭାବେ କହିଲେ, ଭୁଲି ଯାଇଥିଲି କଲ୍ୟାଣବାବୁ, ଏକାବେଳକେ ଭୁଲି ଯାଇଥିଲି । ପଅରଦିନ ରାତିରେ ମୁଁ ଥିଲି ଆଲିପୁରରେ, ଜଣେ ବନ୍ଧୁଙ୍କ ଘରେ । ସେଠି ଏକ ଯାମିନୀଭରସାରୀ ଆମେ ଉଦ୍‌ଯାପନ କଲୁଁ ।

କହିଲି, "ଆପଣଙ୍କ ବନ୍ଧୁର ବାର୍ଥ ଯ୍ୟାମିନୀଭରସାରୀ ବୋଧହୁଏ ?"

ପ୍ରଭାତବାବୁ ମୁଣ୍ଡ ହଲାଇ କହିଲେ, ନା ମହାଶୟ, ସେସବୁ କିଛି ନୁହେଁ । ଜନ୍ମଦିନ ଟନ୍ମଦିନ ସେ କୌଣସି ଦିନ ପାଳନ କରେନା । ଏହା ଆଗରୁ ପୂଜା-ପାର୍ବଣ କୌଣସି ଅନୁଷ୍ଠାନ ହିଁ ତାକୁ ପାଳନ କରିବାର ଦେଖିନାହିଁ । ନା ସାମାଜିକଭାବେ ନା ବ୍ୟକ୍ତିଗତ ଭାବେ । ସନ୍ଧ୍ୟା-ଆହ୍ନିକ,

ଢପ-ଚପ, ଆସନ ଟାସନ କିଛି ନାହିଁ । ବରଂ ମୁଁ ଇ ତାଙ୍କୁ ମଝିରେ ମଝିରେ କହିଛି, ଶୈଳେନ, even the devil has his rituals' । ତୁ କଣ ଭେଭିଲ୍‌ଠୁ ବି ବଡ଼ ଦେଭ୍ଲ ? ତାପରେ କିଛିକାଳ ଧରି ଦେଖୁଚି ଗୋଟିଏ ଅନୁଷ୍ଠାନ ପରମ ନିଷ୍ଠାର ସହିତ ସେ ପାଳନ କରେ । ବର୍ଷକେ ଗୋଟିଏ ମାତ୍ର ଦିନ । ସେ ଅନୁଷ୍ଠାନକୁ ଜଣେ ମାତ୍ର ବ୍ୟକ୍ତିକୁ ସେ ନିମନ୍ତ୍ରଣ କରେ ।"

କହିଲି, "ସେ ବ୍ୟକ୍ତିଟି କଣ ଆପଣ ?"

ପ୍ରଭାତବାବୁ ସ୍ମିତ ମୁଖରେ ସେ କଥାଟି ସ୍ୱୀକାର କଲେ ।

ଚା ଆସିଗଲା । ପ୍ରଭାତବାବୁଁ ଚା କପ୍‌ରେ ଓଠ ଛୁଆଇଁ ପକେଟ୍‌ରୁ ପ୍ୟାକେଟ୍ ବାହାର କରି ସିଗାରେଟ ଲଗାଇଲେ । ଶସ୍ତା ସିଗାରେଟହିଁ ଖାଆନ୍ତି ପ୍ରଭାତବାବୁ ।

ମୁଁ ଖାଏନା ଜାଣି ମଧ୍ୟ ସକୌତୁକେ ଗୋଟିଏ ଅଫର କରି କହିଲେ, ଚଳିବ ନା କି ।"

ମୋର ମୁଣ୍ଡ ହଲ ଦେଖି କହିଲେ, ବେଶ୍ ଅଛନ୍ତି । ମୁଁ ଯେ କେବେଠ ସିଗାରେଟ ଖାଇବା ଆରଂଭ କରିଛି ମନେ ନାହିଁ । ବୋଧହୁଏ ସ୍ତନ୍ୟପାନ ଛାଡ଼ି ଦେଇହିଁ ଧୂମପାନ କରିଛି ।'

ମୁଁ କହିଲି, କେଉଁ ଅନୁଷ୍ଠାନ କଥା କହୁଥିଲେ ? ଗଳ୍ପ ନ ଲେଖିଲେ ବି ଗଳ୍ପର ରୀତି-ନୀତି ଅଳ୍ପ ବହୁତ ଜାଣେ । ବାହା ନ ହେଲେ ମଧ୍ୟ ବରଯାତ୍ରୀ ହୋଇ ହଜାର ବାର ଯାଇଛି । ସସପେନସ ନଷ୍ଟ କରିବା ଭଳି ଆହାମ୍ମକ (ବୋକା) ମୁଁ ଜମା ନୁହେଁ । କଥାର ମଥାଟା ଯଦି ଆଗରୁ ଭାଙ୍ଗିଦିଏ ତେବେ ଆପଣ ମୋ ଗଳ୍ପରେ କାନ ଦେବେ କାହିଁକି ?"

"ଗଳ୍ପ ଅବଶ୍ୟ ମୋର ନୁହେଁ । ମୋର ସେଇ ବଂଧୁର । ଆପଣଙ୍କୁ କିଛି କହିବାକୁ ଭୟ ହୁଏ । ଆପଣଙ୍କର ପେଟରେ କିଛି ରହେ ନାହିଁ । ଗୋପନରେ ଯାହା ଆପଣଙ୍କୁ କହିବି ସଂଗୋପନରେ ଦଶ ଜଣଙ୍କ କାନରେ ତାହା ପକାଇଦେଇ ଯାଇ ଆପଣଙ୍କର ନିବୃତ୍ତି । କିନ୍ତୁ ଏ ଗଳ୍ପ ଲେଖି ଆପଣଙ୍କର ସୁବିଧା ହେବ ନାହିଁ, କଲ୍ୟାଣବାବୁ । ଏ ଗଳ୍ପର ଆପଣ ଶ୍ରୋତା ପାଇବେ ନାହିଁ । ବଡ଼ ପୁରୁଣା ଅମଳର ଗଳ୍ପ । ଖାଲି ପୁରୁଣା ଦିନ ନୁହେଁ, ପୁରୁଣା ପରିବେଶ ନୁହେଁ, Old Value ଗଳ୍ପ । ପୁରଣା ଦିନ । କିନ୍ତୁ

ଆମମାନଙ୍କ ପକ୍ଷରେ ତ ନୂତନ ଥିଲା । ଆମର ସବୁ ସେତେବେଳେ ଯୌବନକାଳ । କେତେଦିନ ନ ଆଗେ ? ଧରନ୍ତୁ, ପ୍ରାୟ ଅର୍ଦ୍ଧ ଶତାବ୍ଦୀ । ତଥାପି ମଝିରେ ମଝିରେ ଯେପରି ମନେପଡ଼େ ସେ ଦିନର କଥା । ବେଳେବେଳେ । ପୁଣି କେବେ ମନେହୁଏ କେତେ ସୁଦୂର ସେ ଦିନଗୁଡ଼ିକ । Deep Past ନିଜର ଅତୀତକୁ ମନେ ହୁଏ ଯେପରି ଐତିହାସିକ କିମ୍ବା ପ୍ରାଗୈତିହାସିକ ଅମଳ !

"ସେଇ ଅମଳରେ ପଶ୍ଚିମ ସୀମାନ୍ତର ଏକ ଅଞ୍ଚଳକୁ ବଦଳି ହେଲି କଲିକତାରୁ । ମୋର ତ ଘରକରଣା ନାହିଁ । ତଥାପି ମନ ଗୁହୁଁ ନଥିଲା । କଲିକତାରେ ପ୍ରଚୁର ବନ୍ଧୁ ବାନ୍ଧବ । ଅଫିସ ସମୟ ଟିକକ ଛଡ଼ା ଆଡ୍ଡା ଦେଇ ଦିନ କଟେ, ରାତି ଭୋର ହୁଏ । ସେ ଆଡ୍‌ଡ଼ାରେ ସାହିତ୍ୟ ଅଛି, ସଂଗୀତ ଅଛି, ଥିଏଟର ଅଛି । କିନ୍ତୁ ଯେଉଁଠିକି ଯାଉଛି ସେଠି ଗୁକିରି ଛଡ଼ା ଆଉ କଣ ଥିବ ? ସେ ଗୁକିରି ବି ପୁଣି କି ଧରଣର ଶୁଣନ୍ତୁ । ସେନାବାହିନୀର ଖିଆ ପିଆ ଖରଚ, ପୋଷାକ ବାବଦରେ ଯେଉଁ ଲକ୍ଷ ଲକ୍ଷ ଟଙ୍କା ବ୍ୟୟ ହୁଏ ବସି ବସି ତାର କଡ଼ାକ୍ରାନ୍ତି ମିଲାଇବା । ମୋର ଯେଉଁ ଜୀବନ ସେଥିରେ ଏଇ ହିସାବ ପତ୍ର କାମରେ ମୋର ଆଦୌ ମନ ନ ଥିଲା । ତଥାପି ଗୁକିରି ହେଲା ଗୁକିରି । ସ୍ୱାମୀକୁ ଭଲ ନ ପାଇଲେ ମଧ୍ୟ ସତୀ ନାରୀର ତାର ଘରକରିବା ଛଡ଼ା ଉପାୟ କଣ ?

ସେଇ ସହରରେ ମୁଁ ଗୋଟାଏ ମଧ୍ୟଭଳିଆ ମେସ୍‌ରେ ଯାଇ ଆସ୍ଥାନ ଜମାଇଲି । ଯେତେଟା ନିବାନ୍ଧବ ନିଜକୁ ଭବିଥିଲି ଦେଖିଲି ତା ନୁହେଁ ମୋ ମେସଘରେ ଛୋଟିଆ ମୋଟିଆ ବେଶ୍ ଗୋଟିଏ ଆଡ୍‌ଡ଼ା ଜମି ଉଠିଛି । ଗୀତ ଗଳ୍ପ ହସଥଟ୍ଟା, ତାସ୍ ପଶା ସବୁଇ ଗୁଲେ । ଯେଉଁମାନଙ୍କର ଅନ୍ୟ ରକମର ନିଶା ଅଛି, ସେମାନେ ମଧ୍ୟ ତାର ବ୍ୟବସ୍ଥା କରି ନିଅନ୍ତି । ସେଇ ଆଡ୍‌ଡ଼ାକୁ ଆମର ଶୈଳେନ ସେନ୍ ମଧ୍ୟ ଆସିବାକୁ ଲାଗିଲେ । ଶୈଳେନ୍ ମୋର କଲିଗ । ଗୋଟିଏ ସେକ୍‌ସେନ୍‌ରେ ଆମେ କାମ କରୁଥାଉଁ । ଶୈଳେନ ମୋ ପରି ନୁହେଁ । ମନ ଦେଇ କାମଦାମ କରେ । ବେଶ୍ ଗୁଣବାନ୍ ଥିଲା । କିନ୍ତୁ ଗୁଣ ଅପେକ୍ଷା ବେଶୀ ଆଖିରେ ପଡେ ଯାର ରୂପ । ମୋର ବନ୍ଧୁ ହେଲେ ବଣ ହେବ ମୋ ପରି କଳା–କୁତ୍ସିତ ନୁହେଁ । ଉଚ୍ଚରେ ମୋଠୁ ଇଂଚିଏ ଅଧେ କିମ୍ବା ଦେଢଇଂଚି ଛୋଟ । ମୁଁ ତ ପ୍ରାୟ ଛଫୁଟ । ଶୈଳେନ ଏତେ ଡେଙ୍ଗା ନୁହେଁ ।

କିନ୍ତୁ ତାର କେଉଁଠି କିଛି ଖୁଣିବାର ନାହିଁ ; ଗୋରା ତକତକ ରଂଗ, ଟଣାଟଣା ଆଖି, ମୁଣ୍ଡଭରି କଳା କୁଞ୍ଚୁକୁଂଚିଆ ବାଳ । ସୁନ୍ଦର ଗଢ଼ଣ । ଶୈଳେନ ଅବଶ୍ୟ ସ୍ପୋର୍ଟସମ୍ୟାନ୍ କିଂବା ଜିମନ୍ୟାଷ୍ଟ ନଥିଲା । ତଥାପି ଯାର ରୂପ ସ୍ତ୍ରୀସୁଲଭ ନୁହେଁ, ପୁରୁଷୋଚିତ ରୂପ । ସେଇ ପୌରୁଷ ଯାର ଗାମ୍ଭୀର୍ଯ ଏବଂ ଧୈର୍ଯରେ ଫୁଟି ଉଠୁଥିଲା । ଯେତେଦୂର ମନେହୁଏ ଆମର ପ୍ରଥମ ବନ୍ଧୁତ୍ୱ ଅସବର୍ଣ ବନ୍ଧୁତ୍ୱ । ଯାର ବ୍ୟକ୍ତିତ୍ୱ ଭିତରେ ଏପରି କିଛି ଅଛି ଯାହା ମୋଠାରେ ନାହିଁ । ଆଉ ମୋ ଭିତରେ ବି ଏପରି କିଛି ଥିଲା ଯାହାର ଅଭାବ ସେ ନିଜ ମନେ ମନେ ଅନୁଭବ କରୁଥିଲା । ଆମର ପ୍ରଥମ ଆକର୍ଷଣ ସେଇ ବିସଦୃଶତାର ଆକର୍ଷଣ ।

ଶୈଳେନ ଆମ ଆଡ୍ଡାରେ ଆସି ଚୁପ୍‌ଚାପ ବସିରହେ । କେବେ-କେବେ ମୋ ର୍ୟାକ୍‌ରୁ ଖଣ୍ଡେ ବହି ଉଠାଇନେଇ ପଢ଼େ, କେବେ ବା ଖାଲି ଚାହିଁ ଚାହିଁ ଦେଖେ ଆଉ ପାଞ୍ଚଜଣଙ୍କର କାଣ୍ଡ କାରଖାନା ଲଜକୁର ମୁହଁଚୋରା ଅଭ୍ୟାସ ଥିଲା ଖୁବ୍ । ଏବେ ଅବଶ୍ୟ ଆଉ ସେମିତି ନାହିଁ ।

ସମସ୍ତେ ଚାଲିଗଲେ ଯଦି ସମୟ ଥାଏ ଶୈଳେନ ଆସି ମୋ କତିରେ ବସେ । ସେତେବେଳେ ସମବୟସୀ ସମରୁଚି ଦୁଇ ବନ୍ଧୁଙ୍କ ଭିତରେ ଯେଉଁ କଥାହେବା କଥା ତାହାହିଁ ଆମର ହୁଏ ।

ସେଦିନ ଶୈଳ ନିର୍ଜନ ସ୍ଥାନ କାଳ ବାଛି ମୋତେ କହିଲା, "ତମ ସଙ୍ଗରେ ଗୋଟାଏ କଥା ଅଛି ।"

"ବେଶ୍ ତ କହ ।"

ପ୍ରସ୍ତାବନା ଟିକକ କରି ଶୈଳେନ ଚୁପ୍ ହୋଇଗଲା ।

ମୁଁ କହିଲି, କଣ ହେଲା, କଥା ଥିବାର ଏହାହିଁ କଣ ନମୁନା ?

ଶୈଳେନ କହିଲା, 'ନା ଥାଉ' ।

କହିଲି, ଥିବ କାହିଁକି ? ତୁମେ ଯାହା କହି ପାରୁ ନାହଁ, ମୁଁ ତା କହି ଦେଉଛି ।" ତାପରେ ତାର ଗଳାର ଅନୁକରଣ କରି କହିଲି, "ପ୍ରଭାତ, ମୁଁ ଭାଇ ପ୍ରେମରେ ପଡ଼ିଛି । ପଡ଼ିଛି ମାନେ ପଡ଼ି ଏକାବେଳକେ ଅତଳକୁ ଚାଲି ଯାଇଛି । ଇଲଗେ ତୁ ମୋତେ ଉଦ୍ଧାର କର ।"

ଶୈଳେନ କହିଲା, "କିମିତି ଜାଣିଲ ଏକଥା ମୋରି କଥା ।"

"ବୁଝିବାକୁ କଣ ଆଉ ବାକୀ ଅଛି ? ତମ ଘରକୁ ଯାଇ ହିଁ ମୁଁ ସେଦିନ ସବୁ ଟେର୍ ପାଇଛି ।"

ଶୈଳେନ ଚୁପ୍ କରି ରହିଲା ।

ସେଇ ସହରରେ ମୁଁ ଇ ଖାଲି ମେସର ବାସୀନ୍ଦା ଥିଲି । ଶୈଳେନ ତ ନଥିଲା । ସେତ ତାର ବାବା ବିରାଟ ଏକ ସରକାରୀ କ୍ୱାଟରରେ ରହୁଥିଲେ । ବାବା ମା ଭାଇ ଭଉଣୀ ନେଇ ଏକ ବୃହତ୍ ପରିବାର ।

ଶୈଳେନ ଅଫିସ୍ ଛୁଟି ହେବାପରେ ମଝିରେ ମଝିରେ ମୋତେ ତାଙ୍କ ଘରକୁ ନେଇଯାଉଥିଲା । ତାର ମା'ଆ ପୁଅ ପରି ମୋର ଯତ୍ନ ନେଉଥିଲେ । ନିଜ ହାତରେ ଜଳଖିଆ ତିଆରି କରି ମୋତେ ଖାଇବାକୁ ଦେଉଥିଲେ । ତାର ଭାଇ-ଭଉଣୀମାନେ ବି ମୋତେ ଖୁବ୍ ଭଲ ପାଉଥିଲେ । ଆପଣଙ୍କୁ କହିବାରେ ବାଧା ନାଇଁ ସେ ସମୟର ଆଉ କେତେ ଜଣ ପ୍ରବାସୀ ବଙ୍ଗାଳୀଙ୍କ ଘରର ଦରଜା ମୋ ପାଇଁ ମଧ୍ୟ ଖୋଲିଥିଲା । ତେବେ ଶୈଳେନର ଘରହିଁ ମୋତେ ସବୁଠାରୁ ବେଶୀ ଭଲ ଲାଗୁଥିଲା ।

ସେମାନଙ୍କ ଘରେ ମୁଁ ମାଧୁରୀକୁ ପ୍ରଥମ ଦେଖେଁ । ଝିଅଟିର ରୂପ ଲାବଣ୍ୟ ଦେଖି ମୁଁ ପ୍ରଥମେ ଭାବିଥିଲି ସେ ବୋଧହୁଏ ଶୈଳେନର ଭଉଣୀ । ଏକଇ ପ୍ରକାର ମଜା ରଂଗ । ଝିଅଟିଜ ବୋଲି ଅହୁରି ବେଶୀ ଗୋରା ମନେହୁଏ । ମୁଖଶ୍ରୀ ଭାରୀ ସୁନ୍ଦର । ମୋର ନିଜର ଅବଶ୍ୟ ଟିକିଏ ଲଂବା ଛାଂଚ ପସନ୍ଦ । କିନ୍ତୁ କଣେ ଝିଅର ମୁହଁ ଯେ ପଦ୍ମଫୁଲ ପରି ସୁନ୍ଦର ହୁଏ ତା ମୁଁ ସେଦିନ ପ୍ରଥମ ଦେଖିଲି । ମୁଣ୍ଡରେ ଗୋଛାଏ ବାଳ । ଯେମିତି ଘନ ସେମିତି କଳା ଆଉ ଲଂବା । ଏମିତି ରେଶମ ଭଳି ସୁନ୍ଦର କେଶ ମୁଁ ଆଉ ଦେଖିନି । ମାଧୁରୀ ଯେ ଶୈଳେନର ଭଉଣୀ ନୁହଁ, ଶୈଳେନର ମା'ଙ୍କୁ ମାଉସୀ ମାଉସୀ ଡାକିଲେ ବି ଭଏ ଯେ କେଉଁ ମାଉସୀର ଝିଅ ନୁହଁ, ତାହା ଟିକିଏ ପରେ ବୁଝି ପାରିଲି । ମାଧୁରୀ ଜାତିରେ ବ୍ରାହ୍ମଣ, ପଦବୀରେ ମୁଖାର୍ଜି । ଶୈଳେନ ପ୍ରଭୃତି ଯେଉଁ ମହଲାରେ ଯେଉଁ ରାସ୍ତାରେ ରହନ୍ତି । ମାଧୁରୀ ଓ ତା ପରିବାରର ଲୋକେ ବି ସେଇଠି ରହନ୍ତି ।

ମାତ୍ର କେତେ ଗଜ ବ୍ୟବଧାନ । ଦୁଇ ପରିବାର ମଧ୍ୟରେ ଖୁବ୍ ଘନିଷ୍ଠତା, ଯିବା ଆସିବା, ଖିଆ ପିଆ ସବୁ ଚଳେ । ସେ ଘରର ମା ଏ ଘରର

ପୁଅ ଝିଅଙ୍କର ମାଉସୀ, ଏ ଘରର ମା ସେ ଘରର ପିଲମାନଙ୍କର ମାଉସୀ ।

ଶୈଳେନ କହିଲ, "ତୁମେ କିମିତି ଜାଣିଲ ?"

ମୁଁ କହିଲି, "ବୁଝିଲ ତମ ଦୁହିଁଙ୍କର ଲୁଚାଇ ଲୁଚାଇ ଚାହିଁବାର ଭଂଗି ଦେଖି । ତମ ଟେବୁଲ ଉପରେ ମାଧୁରୀର ନାମ ଲେଖା ବହିଗୁଡ଼ିକ ଦେଖି । ତାର ଗୀତ ଖାତାରେ ତମର ନିଜ ହାତରେ ନାମ ଲେଖା ଦେଖି ।"

ଶୈଳେନ ଧରା ପଡିଯାଇ ହସି ପକାଇଲ । କହିଲ, ଏଇ ଅଳ୍ପ ସମୟ ଭିତରେ ତୁମେ ଏତେ ଦେଖି ପକାଇଲ ? ପ୍ରଭୁ, ତୁମକୁ ଗୋଇନ୍ଦା ବିଭାଗରେ ନେବା ଉଚିତ ଥିଲ ।

ଶୈଳେନ ଆଦର କରି ମୋତେ ପ୍ରଭୁ ବୋଲି ଡାକେ । କେବେ ବା କହେ ଗୁରୁଦେବ । ମୁଁ ଥିଲି ଯାର friend, Philosopher and guide.

ଧରାପଡ଼ି ଯାଇ ଶୈଳେନ ସବୁ କଥା ମୋତେ ଖୋଲିକରି କହିଲ । ସେ ତ କହିବାକୁ ହିଁ ଆସିଥିଲ । ସେମାନଙ୍କର ସେଇ କୈଶୋରର ଭଲ ପାଇବା କଥା, ସମସ୍ତଙ୍କୁ ଲୁଚାଇ ଲୁଚାଇ ମିଳାମିଶାର କଥା, ପ୍ରଥମ ତାରୁଣ୍ୟର ଭରା ଯୌବନର ଏକମାତ୍ର ନିଶାର କଥା ଶୈଳେନ ମୋତେ ସବୁ କିଛି ହିଁ ଖୋଲି କହିଲ । ଦିନ ଥିଲ ଯେତେବେଳେ ଏମାନେ ଲୁଚାଇ ଲୁଚାଇ ଭଲ—ପାଉଥିଲେ । ଘରର ଲୋକମାନଙ୍କଠାରୁ ଲୁଚଉଥିଲେ, ନିଜଠାରୁ ବି ଲୁଚଉଥିଲେ । ଆଜି ସେଦିନ ନାହିଁ । ଭଲଗେ ସେମାନେ ଚାହାନ୍ତି ସେମାନଙ୍କର ଭଲ ପାଇବାକୁ ଦୁଇ ଘରର ଲୋକେ ସ୍ୱୀକାର କରି ନିଅନ୍ତୁ । ଯେଉଁ ମାଧୁରୀ ଏ ଘରର ଝିଅ ପରି ଆଦର ଯତ୍ନ ପାଏ ସେ ବୋହୂ ହୋଇ ଘର ଉଜ୍ଜ୍ୱଳ କରୁ । ଯେଉଁ ଶୈଳେନ ମାଧୁରୀ ଘରେ ସତ୍ ଆଦର୍ଶବାନ ପିଲାର ସମ୍ମାନ ପାଇଥାଏ ସେ ଆଉ ଗୋଟିଏ ମଧୁର ପଦ ଗୌରବ ଲାଭକରୁ । ଜାମାତୃ ପଦ ।

ମୁଁ କହିଲି, " ବାଧା କେଉଁଠି ?"

ଶୈଳେନ କହିଲା, "ବାଧା ଜାତି ନେଇ ।"

ମୁଁ କହିଲି, "ଧୁତ୍ତେରି ତୋର ଜାତି । ଗୋଟାଏ କାମ କରନା, ମାଧୁରୀର ବାବା ଯଦି ସ୍ୱେଚ୍ଛାରେ ସଂପ୍ରଦାନ ନ କରନ୍ତି, ତୁମେ ସୁଭଦ୍ରା ହରଣ

କର । ମୁଁ ତମ ରଥ ଚଳାଇ ନେବି । ସର୍ବ ଧର୍ମ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।”

ଶୈଳେନ କହିଲା, “ନା ଭାଇ, ତା ହୋଇ ପାରିବ ନାଇଁ ।”

“କାହିଁକି ? ମାଧୁରୀ କଣ ଭୟପାଏ ?”

ଶୈଳେନ କହିଲା, ଭୟ ବି ଅଛି, ଦ୍ୱିଧା ବି ଅଛି । ତା ଛଡ଼ା ତାର ସେଇ ଗୋଁଡ଼ା (ରକ୍ଷଣଶୀଳ) ବଦରଗୀ ବାପକୁ ସେ ଖୁବ୍ ଭଲପାଏ । ବାପର ଅମତରେ କିଛି କରିବା କଥା ମାଧୁରୀ ଭାବି ପାରେନା ।

କହିଲି, “ତା’ ହେଲେ ଚାଲ ସେ ଇଂଜିନିୟାର ଭଦ୍ରଲୋକଙ୍କୁ ଆମେ ବୁଝାଇ ସୁଝାଇ ରାଜି କରାଇବା । ମୁଁ ତମ ଓକିଲ ହେବାକୁ ରାଜି ଅଛି ।”

ଶୈଳେନ କହିଲା, “ଆରେ ବାବା ! ତାହେଲେ ସଙ୍ଗେ ସଙ୍ଗେ ଘରର ଦରଜା ଆମ ସାମନାରେ ବନ୍ଦ ହୋଇଯିବ । ମୋ ବାବା କଣ ସେ ଅପମାନ ସହ୍ୟ କରିବେ ? ଗୋଟିଏ ଝରକା ମଧ୍ୟ ସେମାନଙ୍କ ଆଡ଼କୁ ଖୋଲା ରଖିବେ ନାଇଁ ।”

ବ୍ୟାପାରଟା ଜାଣନ୍ତି ସମସ୍ତେ, ବୁଝନ୍ତି ସମସ୍ତେ । କିନ୍ତୁ ମୁହଁ ଖୋଲି ଉଚ୍ଚାରଣ କରନ୍ତି ନାଇଁ । ତାହେଲେ ଏତେ ଦିନର ପୁରୁଣା ବନ୍ଧୁତ୍ୱ ନଷ୍ଟ ହୋଇଯିବ ।”

କହିଲି, “ତମ ବାବା-ମା’ଆଙ୍କର କ’ଣ ମତ ?”

ଶୈଳେନ କହିଲା, “ସେମାନଙ୍କର ବି ମତ ନାହିଁ । ଏଇ ଭଲପାଇବାର ବିବାହକୁ ସେମାନଙ୍କର ବଡ଼ ଭୟ । ସେମାନଙ୍କର ଧାରଣା ଏଇ ଗାନ୍ଧର୍ବ ବିବାହ ପରେ ଆମେ ଅଲଗା ହୋଇଯାଇ ବସା ବାନ୍ଧିବୁଁ । ବାପ-ମା ଭାଇଭଉଣୀଙ୍କୁ ଦେଖିବୁଁ ନାଇଁ ।”

ଶୈଳେନ ନିଜେ ତ ଭୀରୁ । ମୁଁ ଯେ ତା ପାଇଁ କିଛି କରି ଦେଖିବି ତା ବି କରିବାକୁ ଦେଲା ନାଇଁ । ଯାର ଭୟ ସେଥିରେ ସବୁ ନଷ୍ଟ ହୋଇଯିବ । ଯାହା ଟିକିଏ ପାଇଛି ତା ବି ହରାଇବୁ । ଆଉ କିଛି ନହେଲେ, ଦିନାନ୍ତରେ ଦିଜଣଙ୍କ ଦେଖା ତ ହେଉଛି । ଜଣେ ଆଉ ଜଣଙ୍କର କଣ୍ଠସ୍ୱର ତ ଶୁଣି ପାରୁଛି ଲୁଚାଇ ଲୁଚାଇ ଅଳ୍ପ ଅଳ୍ପ ଆଦର—ଆହ୍ଲାଦଟିକ ତ ଚାଲିଚି । ସେଇଟିକକ ବି ଆଉ ରହିବ ନାଇଁ ।

ମୁଁ ହସି କହିଲି, "ଶୈଳେନ, ତମେ ତାହେଲେ ଏଇ ଗଳ୍ପ ନେଇ ଥାଅ ! ବଡ଼ କିଛି ଆଶା ଆଉ କରନା ।"

ତାପରେ ଦୁଇ ଘରେ କିଛିଦିନ ଗୋପନରେ ଘଟକ ଯିବା ଆସିବା ଆରମ୍ଭ ହେଲା । ମାଧୁରୀର ସମ୍ବନ୍ଧ ଦେଖା ଚାଲିଲା । ଶୈଳେନର ଇଛା ବିରୁଦ୍ଧରେ ପାତ୍ରୀର ଖୋଜ ଖବର ନେବା ଚାଲିଲା । ପଣ୍ଡୌତ୍ରିକ ଶହ ସାଲଙ୍କର କନ୍ୟା ଅନେକେ ଯାକୁ ସଂପ୍ରଦାନ କରିବାକୁ ରାଜିଥିଲେ । କିନ୍ତୁ ଶୈଳେନ ଗରରାଜୀ । ଫଳରେ ଘଟକମାନେହିଁ ଖାଲି ଯାଆସ କରନ୍ତି । ଗୋଟିଏ ପ୍ରଜାପତି ବି କେଉଁ ଘରେ ଚଢ଼ି ବସେନା ।

ତାପରେ ମୁଁ ସିମଲାକୁ ବଦଳି ହେଲି । ଚାଲି ଆସିବା ଦିନ ମାଧୁରୀ ତାଙ୍କ ବଗିଚାରୁ ଗୋଟିଏ ବଡ଼ ରକ୍ତଗୋଲାପ ତୋଡ଼ା ମୋତେ ପ୍ରେଜେଣ୍ଟ କରିଥିଲା । ଆଉ ପାଇଥିଲି ଦୁଇଟି ଅମୂଲ୍ୟ ମୁକ୍ତା ବିନ୍ଦୁ ।

ତାର ସେଇ କଳା ଆୟତ ସିକ୍ତ ଦୁଇଟି ଆଖି ଆଡ଼କୁ ଚାହିଁ ମୁଁ କହିଥିଲି, "ମାଧୁ ଏମିତି କରୁଛ କାହିଁକି ?"

ମାଧୁରୀ କହିଥିଲା, "ପ୍ରଭାତଦା, ଆମର ତ ଆଉ କୌଣସି ବଂଧୁ ନାହିଁ । ଆମକୁ ଭୁଲି ଯିବ ନାଇ ।"

ମୁଁ ମୋର ବଂଧୁର ପ୍ରଭୁ, ପ୍ରତିଭୂ । ତାଠୁ ବେଶୀ କିଛି ନୁହଁ । ମୁଁ ସବୁବେଳେ auxiliary verb କେବେ ମୂଳ କ୍ରିୟାପଦ ହୋଇନି କି ହୋଇ ପାରିବି ନାହିଁ । କିନ୍ତୁ ତା ସତ୍ତ୍ୱେ ମନେ ହୁଏନା ଯେ କିଛି କମ ପାଇଛି । ଶୈଳେନକୁ କହିଲେ କଣ ହେବ ? ମୁଁ ନିଜେ ତ ଅଳ୍ପ ନେଇ ହିଁ ଅଛି । ମୁଁ ତ ଅଳ୍ପ ଅଳ୍ପ କ୍ଷୁଦକଣିକାରେ ଭିକ୍ଷାର ଝୁଲି ଭରି ଚୋଳିଛି ।

ପ୍ରଭାତବାବୁ ଘଡ଼ିକୁ ଚାହିଁଲେ । ତାପରେ କହିଲେ, "ଆରେ ବାବା, ଏଥର ସଂକ୍ଷେପରେ ସାରେ । ନୋହିଲେ ଆପଣ ଗିନ୍ନୀଙ୍କ (ଘରଣୀ) ଗାଳି ଖାଇବେ । ମୋର ଏକ କପ୍ ଚା'ର ବରାଦ ବନ୍ଦ ହୋଇଯିବ । ମୁଁ ସିମଲା ବଦଳି ହେବାର କେତେଦିନ ପରେ ଶୈଳେନ ଗଲା ପାଟନାକୁ । ସବୁରି ଭାଗ୍ୟନିୟନ୍ତା ଆମ ଦୁଇ ବନ୍ଧୁଙ୍କୁ ମଝିରେ ମଝିରେ ଅନେକ ଦୂରକୁ ଦୂରକୁ ଠେଲି ଦିଅନ୍ତି । ପୁଣି କେବେ କେବେ ଆମେ ଏକଇ ଷ୍ଟେସନରେ ଛମାସ କି ଏକ ବର୍ଷ ପାଇଁ ମୁହାଁ ମୁହିଁ ହେଉଁ, ଏକଠ ଟେବୁଲରେ ମୁହାଁମୁହିଁ ବସି କାମ

କରୁଁ, ଗଳ୍ପ କରୁ । ଦେଖି ଆନନ୍ଦ ହୁଏ ବୟସ ସଙ୍ଗରେ ଆମର ଚେହେରା ବଦଳୁଛି । ଆମେ ଜୀବନରେ ଏକ ଷ୍ଟେସନରୁ ଆଉ ଏକ ଷ୍ଟେସନକୁ ବଦଳି ହେଉଛୁଁ କିନ୍ତୁ ଗୋଟିଏ ଜାଗାରେ ଆମର କିଛି ବଦଳା ବଦଳି ହୋଇନି, ସେ କ୍ଷେତ୍ରଟି ହେଲା ବନ୍ଧୁତ୍ୱର । ଆମେ ଛ ମାସ ମଧ୍ୟରେ 'ଆପଣ' ରୁ 'ତୁମେ' କୁ ଓହ୍ଲାଇଥିଲୁଁ । 'ତୁମେ' ରୁ 'ତୁ' କୁ ଓହ୍ଲାଇବାକୁ ବି ଦୁଇ ବର୍ଷରୁ ବେଶୀ ଡେରି ହୋଇ ନାହିଁ । ଦୂରରେ ଥିଲେ ମଧ୍ୟ ଆମେ ଜଣେ ଆଉ ଜଣକର ଖବର ରଖୁଥିଲୁଁ । ଚିଠିପତ୍ର ହିଁ ବେଶୀ ଚାଲେ । ଦେଖା-ସାକ୍ଷାତ କେବେ କେବେ । ମାଧୁରୀର ମାଙ୍କର ମୃତ୍ୟୁ ହୋଇଚି । ବାପ ଆହୁରି ବୁଢ଼ା ହୋଇଛନ୍ତି । ସେଇ ଜିଦ୍‌ଖୋର ବାପ ବର୍ତମାନ ଏକବାରେ ଅସହାୟ ଝିଅ ଉପରେ ଏକାନ୍ତ ନିର୍ଭରଶୀଳ । ଏକାଧାରେ ମାଧୁରୀ ଯେପରି ଜାୟା ଜନନୀ ଦୁହିତା । ଶୈଳେନ୍‌ର ବାବା-ମା ଦୁହେଁ ମରି ଯାଇଛନ୍ତି । ଭାଇଭଉଣୀମାନେ ତାକୁ ମନେ କରନ୍ତି 'ତ୍ୱମେବ ପିତ ଚ ମାତା ତ୍ୱମେବ ।' ଶୈଳେନ ସେମାନଙ୍କୁ ବାହା-ଚାହା ଦେଇଚି । ସେମାନେ ଯିଏ ଯାର ଚାକିରି ଜାଗାରେ ସଂସାର ପାତିଛନ୍ତି । ତଥାପି ଚିରକୁମାର ବଡ଼ଦାଦା (ବଡ଼ଭାଇ) ସଂସାରର ବଟବୃକ୍ଷ । ମୁଁ ତାକୁ ଚିଠିପତ୍ର ଲେଖୁଥିଲି । ମାଧୁରୀ ସଙ୍ଗରେ ବି ଚିଠିପତ୍ର ଚାଲୁଥିଲା ।

ତାପରେ ମୁଁ ଓ ଶୈଳେନ ପ୍ରାୟ ଏକା ସାଙ୍ଗରେ ରିଟାୟାର କଲୁଁ । ଶୈଳେନ ଏକ୍ସଟେନସନ ପାଇଥିଲା, ଗୋଟାକେତେ ପ୍ରମୋଶନ ବି ପାଇଥିଲା । ମୁଁ ପାଇନି । ତା ବଦଳରେ ମୁଁ ସାରା ଭାରତ ଘୂରି ବୁଲିଛି । ସୌଖୀନ ରଙ୍ଗମଞ୍ଚରେ ଉଠି ଗାଲରେ ରଂଗ ବୋଳି, ମୁଣ୍ଡରେ ପରଚୁଲା ଲଗାଇ ବୁଢ଼ା ବୟସରେ ବି ହିରୋ ସାଜିଛି, ବେଳବେଳେ ଅଧା-ସାହିତ୍ୟିକ, ଅଧା-ରାଜନୈତିକ ବକ୍ତୃତାମଞ୍ଚରେ ଉଠି ବସିଛି । ବର୍ତ୍ତମାନ ଧର୍ମ ସଭାକୁ ଯାଏ । ଆପଣ ସେଥିପାଇଁ ମନେ ମନେ ହସନ୍ତି ।

ଏବେ ମୋର ଆଉ ଶୈଳେନ୍‌ର ଦେଖାହୁଏ ଡାଲହାଉସୀକୁ ପେନସନ୍ ଟଙ୍କାଟା ଆଣିବାକୁ ଯିବା ସମୟରେ । ଶୈଳେନ ଆଉ ମୁଁ ଦୁଇଜଣଯାକ ରିଟାୟାର କରିବା ପରେ କଲିକତାରେ ହିଁ ଅଛୁଁ । ସେ ଦକ୍ଷିଣ ଏବଂ ମୁଁ ଉତ୍ତରରେ । ଘନଘନ ଦେଖା ସାକ୍ଷାତ୍ ଆଉ ହୁଏନା ଚିଠିପତ୍ର ଲେଖାଲେଖି ମଧ୍ୟ ବନ୍ଦ । ଶୈଳେନ ଥରେ ଲେଖିଥିଲା, "ତୋ ହାତଲେଖା ଏକବାରେ

ଅପାଠ୍ୟ ହୋଇ ଯାଇଛି । କିଛି ବୁଝି ପାରିଲି ନାହିଁ ।" ତାପରଠୁ ମୁଁ ରାଗି କରି ଚିଠି ଲେଖା ଛାଡ଼ି ଦେଇଛି । ଏବେ ଖାଲି ଫୋନ୍‌ରେ କଥା କୁହେ । ଶୈଳେନ ଆଲିପୁରରେ ଏକ ସୁନ୍ଦର ଦୋତାଲା ଘର କରିଛି । ଆଗେ ପୁତୁରା-ଝିଆରୀମାନେ ରହୁଥିଲେ । ଏବେ ନାତୀନାତୁଣୀମାନେ । କେହି ସ୍କୁଲରେ ପଢ଼ନ୍ତି କେହି କଲେଜରେ । ମୋତେ ଘରଦ୍ୱାର କିଛି କରିବାକୁ ହୋଇନି । ପୈତୃକ ଘର ଅଛି । ଦାଦାଙ୍କ ସଙ୍ଗରେ ମୁଁ ତହିଁରେ ଅଂଶୀଦାର । କିନ୍ତୁ ନାମକୁ ମାତ୍ର । ମନେ ମନେ ମୁଁ ଅନେକେତ ଜାଣନ୍ତି ତ । ଘରେ କେତେଟିକେ ସମୟ ବା ମୁଁ ରହେ ? ଆଜିକି ଚାର ବର୍ଷ ତଳର କଥା । ପେନ୍‌ସନ୍ ଟଙ୍କା ଗଣିନେଉଛି କିଏ ଯେପରି ପଛରୁ ଖପ୍ କରି ମୋ ହାତଟାକୁ ଧରି ପକାଇଲା, "ଏ ପରମାର୍ଥୀ, ଅର୍ଥ ଉପରେ ଏତେ ଲୋଭ କାହିଁକି ରେ ?

ଗ୍ରହିଁ ଦେଖେ ଶୈଳେନ । ହସି କହିଲି "ବୁଢ଼ା ବୟସରେ କାମିନୀ ଛାଡ଼ି ପାରେ, କିନ୍ତୁ କାଞ୍ଚନ ଛାଡ଼ିବା ସହଜ ନୁହେଁ । ଫଳମୂଳ କିଣିବାକୁ ତ ପଇସା ଲାଗେ ।"

ଶୈଳେନ ମୋତେ ନେଇ ଆସିଲା ଏକ ଗୁ ଦୋକାନକୁ । କହିଲା, "ତୋ ସଙ୍ଗରେ କଥା ଅଛି ।"

ଗୋଟିଏ ନିରୋଳା ଟେବୁଲ ବାଛି ନେଇ ଦିଜଣ ମୁହାଁମୁହିଁ ବସିଲୁଁ । ଜଗ କାହାର ଧରିଚି ବାଳର ଚଟି ମୁଥ ବସାଇଚି କାହାର ବା ଦାନ୍ତ ମୂଳରେ ଶୈଳେନର ମଣ୍ଡ ଏକବାରେ ସଫା, ମୋର ଦିପାଟିରେ ଦାନ୍ତ ବସା ଯାଇଛି ।

ଶୈଳେନ ବେଶୀ କଥା ନକହି ବୁକୁ ପକେଟରୁ ଖଣ୍ଡେ ଲଫାଫା ଚିଠି ବାହାର କରି ମୋତେ ଦେଖାଇଲା । ଏବେ ବି ଅଙ୍କିତ ମୁକ୍ତାର ଅକ୍ଷର ।

କହିଲି, "ଇଏ ତ ତୋ ଚିଠି ।'

ଶୈଳେନ ଧମକ ଦେଇ କହିଲା, "ଆହା ପଢ଼ନା । ମୋ ଚିଠି ଯେମିତି ତୁ କେଉଁଦିନ ପଢ଼ୁନି !" ଲଫାଫା ଭିତରୁ ଚିଠି ଖଣ୍ଡକ କାଢ଼ି ପଢ଼ିଲି । ପୂରା ମାପର କାଗଜ ଖଣ୍ଡକରେ କେବଳ ଦୁଇ ଲାଇନର ଖଣ୍ଡିଏ

ଚିଠି । "ତମ ସଙ୍ଗେ ବିଶେଷ କଥା ଅଛି । ଅବଶ୍ୟ ଆସ । ଇତି ।

ତମର ମାଧୁରୀ ।"

ହସି କହିଲି, "ମୁଁ ମୋ କଥାଟା amend କରି ନେଉଛି । ଦେଖୁଚି ବୁଢା ବୟସରେ ବି କାହାକୁ କାମିନୀ ଛାଡ଼େ ନାହିଁ । କେଉଁଠି ଅଛି ସେ ?"

ଶୈଳେନ କହିଲା, "ବାରକପୁରରେ, ଭାଇମାନଙ୍କ ନିକଟରେ ।"

ବାବା ମରିଯିବା ପରେ ମାଧୁରୀ ପ୍ରଭୃତି ଲକ୍ଷ୍ନୌରୁ ବସା ଉଠାଇ ନେଇ କଲିକତା ଚାଲି ଆସିଛନ୍ତି ତା ଜାଣିଥିଲି । କିନ୍ତୁ ଠିକ କେଉଁଠ ଅଛି ତା ଜାଣି ନଥିଲି ।

ଶୈଳେନ କହିଲା, "ଭାଇମାନେ ଚାକିରି ବାକିରି କରନ୍ତି । ମାଧୁରୀ ବି ସ୍କୁଲରେ ମାଷ୍ଟରି କରୁଥିଲା । ଶରୀର ଭାଙ୍ଗି ପଡ଼ିବା କାରଣରୁ ବାଧ୍ୟ ହୋଇ ଛାଡ଼ିଦେଇଛି । ଶୁଣିଚି ଯାର ବାବା ବେଶୀ କିଛି ରଖି ଯାଇ ପାରିନାହାନ୍ତି । ହଜାର ତିରିଶ ଟଙ୍କା ଝିଅକୁ ଜୋରକରି ଧରେଇ ଯାଇଛନ୍ତି । ପୁଅମାନେ ବି କିଛି କିଛି ପାଇଛନ୍ତି ।"

ଇଦାନୀଙ୍କାର ଖବର ମୁଁ ଆଉ ରଖିନି । ଚିଠିପତ୍ର ବନ୍ଦ ହୋଇଯାଇ-ଥିଲା ।

ଶୈଳେନ୍ କହିଲା, "ବହୁଦିନ ଧରି ବେମାରିରେ ଭୋଗୁଛି । ଚାଲ ଥରେ ଦେଖି ଆସିବା । ଶୁଣି ଆସିବା ଜରୁରୀ କଥାଟା କଣ ?"

କହିଲି, "ତୁ ଏକାଇ ଯା ମୁଁ ଗଲେ ତ କଥା ବନ୍ଦ ହୋଇଯିବ ।"

"ନା ତୁ ବି ଚାଲ । ଆଜିଇ ଚାଲ ।"

ମୁଁ କହୁଥିଲି, ଆଉ ଦିନେ ଯିବା । କିନ୍ତୁ ଶୈଳେନ ଆଉ ଡେରି କରିବାକୁ ରାଜି ନୁହେଁ । ପୁଣି କେବେ ଦେଖାହେବ କିଏ ଜାଣେ ?

ଆମେ ଦୁ'ଜଣ ଦିହିଙ୍କ ଘରକୁ ଫୋନ୍‌କରି ଦେଇ ଚାଲିଲୁଁ ବାରକ୍‌ପୁର । ଶୈଳେନ ଟ୍ୟାକ୍‌ସି କରିବାକୁ ଚାହିଁଥିଲା । ମୁଁ କହିଲି, "ପେନସନ୍‌ର ଗଣା ଟଙ୍କା ଏତେ ବେହୁସୁଆରୀ ଭାବେ ଖରଚ କରିବୁ ନାହିଁ ସ୍କୁଲ ବସରେ ଯିବା ।"

ଯିବା ସମୟରେ ମୁଁ କ୍ଲେକ୍ଷ୍ଟ୍ରୀଟ ମାର୍କେଟ୍‌ରୁ ଏକ ଓଜନ ବେଶ୍ ତଟକା ବଡ ସାଇଜ୍‌ର ରଜନୀଗନ୍ଧା ନେଇଗଲି ।

ଶୈଳେନ୍ ଥଟ୍ଟା କରି କହିଲା, "ତୋର ଦେଖୁଚି ଏସବୁ ସୌଖ ଖୁବ୍ ଅଛି ।"

ଷ୍ଟେସନ୍ ପାଖରେ ଘରଟା । ଦୋତଲାର ଏକ ଫ୍ଲାଟ୍‌ରେ ସେମାନେ ରହୁଥିଲେ ।

କଡା ବାଡେଇବାରେ ଜଣେ ବୋହୂ ଆସି ଦରଜା ଖୋଲିଦେଲା । ଆମେ ନିଜ ନିଜର ପରିଚୟ ଦେବାରେ ସେ ଆମକୁ ମାଧୁରୀର ରୁମ୍‌କୁ ନେଇଗଲେ ।

ଗୋଟିଏ ଛୋଟ ଖଟ ଉପରେ ମାଧୁରୀ ଶୋଇଚି । ଧୋବ ଫର୍‌ଫର୍ ବିଛଣା । ପରିପାଟୀ କରି ପକା ହୋଇଚି । ଘରଟି ବି ବେଶ୍ ପରିଚ୍ଛନ୍ନ ।

କିନ୍ତୁ ଇଏ କି ଚେହେରା ହୋଇଛି ମାଧୁରୀର । ବିଛଣା ସଙ୍ଗରେ ଲାଗି ଯାଇଛି ଦେହ । ଯାର ଯିମିତି ଉଠି ବସିବାର ଶକ୍ତି ନାହିଁ ।

ତଥାପି ମାଧୁରୀ ଯେମିତି ଆମକୁ ଦେଖି ନୂଆ ଶକ୍ତି ପାଇଲା । ଉତ୍ସାହରେ ରୋଗୀ ବସିଲା ଶଯ୍ୟା ଉପରେ ।

ମୋ ଆଡ଼କୁ ଚାହିଁ ଟିକିଏ ହସି କହିଲା, "ମୁଁ ଜାଣେ, ତୁମେ ବି ଆସିବ ।"

ତା'ପରେ ମାଧୁରୀ କି କାଣ୍ଡ କଲା ଶୁଣନ୍ତୁ । ତାର ଦୁଇ ଭଉଜଙ୍କୁ ଡାକି କହିଲା, "ସେ ଘରେ ଲକ୍ଷ୍ମୀଙ୍କ ଖଟୁଲି ପାଖରେ ଗୋଟିଏ ସିନ୍ଦୂରର ଫରୁଆ ଅଛି । ସେଥିରେ ସିନ୍ଦୂର ଗୋଳି ରଖିଚି, ନେଇ ଆସ ।"

ସାନବୋହୂ ନେଇ ଆସିଲା ସେ ସିନ୍ଦୂର ଫରୁଆଟା । ମାଧୁରୀ ତା ହାତରେ ସେଟାକୁ ଟେକିଦେଲା ଶୈଳେନ ହାତକୁ । କହିଲା, "ସିନ୍ଦୂର ମୋ ସୁନ୍ଥାରେ ଲଗାଇଦିଅ । ମୁଁ ବାଡୁଅ ହୋଇ ମରିବାକୁ ଚାହେଁନା ।"

ମୁଁ ଚାହିଁ ଦେଖିଲି ମାଧୁରୀର ସେଇ ମେଘ ପରି କେଶଗଣି ଆଉ ନାହିଁ । ବୟସରେ ଯେତେଟା ନୁହେଁ, ରୋଗବ୍ୟାଧିରେ ଯାର ବାଳ ଖୁବ୍

ପାତଳା ହୋଇ ଯାଇଛି । ମଝିରେ ମଝିରେ ବୁଢ଼ାଳୀ ରେଖା ବି ଆଖିରେ ପଡ଼ିଲା ।

ଶୈଳେନ ତାକୁ ସିନ୍ଦୂର ଲଗାଇ ଦେଲା । ବୋହୂମାନେ ଶଂଖ ବଜାଇବାକୁ ଯାଉଥିଲେ । କିନ୍ତୁ ମାଧୁରୀ ହାତରେ ଇସାରା କରି ବାରଣ କଲା ।

ମୁଁ କହିଲି, "ମାଧୂ ତୁମେ ପାକଲା ବାଳରେ ସିଂଦୁର ପିଂଧିବ ବୋଲି ଏତେଦିନ ବସିଥିଲ ?"

ପ୍ରତିପଦର ଜହ୍ନ ପରି ମାଧୁରୀ ମୁହଁରେ ଏକ ଗାର ହସର ରେଖା । ମାଧୁରୀ କହିଲା, "ଠିକ୍ ଅଛି । ଫଭତଦା, ଏଥର ତୁମେ ବାକୀ ମନ୍ତ୍ରଟିକ ପଢ଼ି ଦିଅ ।"

ମୁଁ କଣ ବାହ୍ମଣ ଯେ ମନ୍ତ୍ର ପଢ଼ିବି ? ତା ଛଡ଼ା ମୁଁ ନିଜେ ହିଁ ମନ୍ତ୍ରମୁଗ୍ଧ । ତଥାପି ମୁଁ ଧୀରେ ଧୀରେ ଦୁଇଟି ଲାଇନ୍ ଆବୃତ୍ତି କଲି :—
"ଯଦିଦଂ ହୃଦୟଂ ତବ । ତଦିଦଂ ହୃଦୟଂ ମମ ।"

ସେମାନେ ପଢ଼ିଲେ ନାଇଁ । ତଥାପି କାନପାତି ଶୁଣିଲେ ।

"ଜୀବନରେ କେତେ ବାହାଘରରେ ବରଯାତ୍ରୀ ହୋଇ ମୁଁ ନ ଯାଇଛି । କେତେ ଦୂର ଦୁର୍ଗମ ଜାଗାକୁ ଦୁଃସାହସିକ ଅଭିଯାନ । କିନ୍ତୁ ଏଭଳି ବରଯାତ୍ରୀ କେବେ ହୋଇନି କଲ୍ୟାଣବାବୁ, ଏଭଳି ପୌରୋହିତ୍ୟ ବି କେବେ କରିନାହିଁ ।"

ସେଦିନ ସେଇ ରଜନୀଗଂଧାର ଗୁଚ୍ଛ କିଣିନେବା ମୋର ସାର୍ଥକ ହୋଇଥିଲା । ସେଇ ଫୁଲ ମାଧୁରୀର ବିଛଣାର ଗୋଟାଏ ପାଖରେ ରଖିଦେଲି । କିଛି ସମୟ ପାଇଁ ଯାର ରୋଗଶଯ୍ୟା ହୋଇ ଉଠିଲା ଫୁଲଶଯ୍ୟା ।

ମାଧୁରୀ କିନ୍ତୁ ତା ପରେ ବେଶୀଦିନ ବଂଚିଲା ନାଇଁ । ଯାର ଭାଇମାନେ ଖରଚପତ୍ର କରି ଚିକିତ୍ସା କରାଇଥିଲେ । ଶୈଳେନ ବି ଚେଷ୍ଟାରେ ତ୍ରୁଟି କରିନାଇଁ । କଲିକତାକୁ ଆଣି ଶ୍ରେଷ୍ଠ ନର୍ସିଂ ହୋମରେ ରଖିଥିଲେ । କିନ୍ତୁ ଯାର ପେଟର ଅଲସର୍ କୌଣସି ପ୍ରକାରେ ଭଲ ହେଲନି । ଅପରେଶନ୍ ଟେବୁଲରେ ହିଁ ସେ ମରିଗଲା । ମୁଁ ଆଉ ଏକ ଡ଼ଜନ୍ ରଜନୀଗଂଧା ନେଇ ତାକୁ ଦେଖିବାକୁ ଗଲି ।

ମୁଁ ଖାଲି ଦେଖିଥିଲି ଶୈଳେନ୍ । ନିଜ ହାତରୁ ହଜାର ପାଂଚ ଟଂକା ଖରଚକରି ଶ୍ରାଦ୍ଧ ଶାନ୍ତି କଲା । ଲୋକବାକ୍ ଡାକି ଖୁଆଇଲା । କୀର୍ତନୀଆମାନଙ୍କୁ ଡାକିଲା ଘରକୁ । ମୁଁ ତ ଅବାକ୍ । ଯା ଆଗରୁ ଯେ ସବୁ ବ୍ୟାପାରରେ ତାର ବିଶ୍ୱାସ ନ ଥିଲା । ବୁଝି ପାରିଲି ମାଧୁରୀର ଇଛା ।

ସେଇ ମଧୁର ହୃଦୟର ଆଉ ଗୋଟିଏ ନିଦର୍ଶନ ମଧ୍ୟ ଶୈଳେନ୍ ମୋତେ ଦେଖାଇଲା । ଆଗେ ଯେପରି ପ୍ରେମପତ୍ର ଛାତି ପକେଟରେ ନେଇ ବୁଲୁଥିଲା, ସେମିତି ଆଉ ଗୋଟିଏ ମୋଟା ଏନ୍‌ଭେଲପ୍ ତା ପକେଟରେ ବୁଲୁଥିଲା । ମାଧୁରୀ କହି ଯାଇଥିଲା, ମୁଁ ମରିବା ଆଗରୁ ଏ ଚିଠି ଖୋଲିବ ନାହିଁ ।

ଖୋଲିବା ପରେ ଦେଖାଗଲା ଚିଠି ନୁହେଁ । ଗୋଟିଏ ସବୁଜ ରଂଗର ଲଫାଫାରେ ତିରିଶ ହଜାର ଟଙ୍କାର ଖଣ୍ଡିଏ ଚେକ୍ ମାଧୁରୀ ଶୈଳେନ୍ ନାମରେ ଲେଖି ଦେଇଯାଇଛି ।

ଶୈଳେନ କହିଲା, "ମୁଁ ଏ ଟଙ୍କା ନେବି କାହିଁକି ?"

ମୁଁ କହିଲି, "ନେଇଯା । ବାହା ହୋଇକୁ ଯୌତୁକ ତ କିଛି ପାଇନ୍, ପଣ ଟଙ୍କାଟା ଛାଡ଼ିବୁ କାହୁଁକି ?"

ଶୈଳେନ ମାଧୁରୀର ଭଉମାନଙ୍କୁ କିଛି ଦେଲା । ଆଉ ବାକିଟା ଦେଲା ହାସ୍‌ପାତାଲକୁ । ମାଧୁରୀ ନାଁରେ ଗୋଟିଏ ବେଡ୍ ଖୋଲିବାପାଇଁ । ଦୁଃସ୍ଥ ନାରୀମାନଙ୍କର ସେଠି ଚିକିତ୍ସା ହୁଏ ।

ତାପରଠାରୁ ବର୍ଷକରେ ଗୋଟିଏ ଦିନ ମୃତ୍ୟୁତିଥି ପାଳନ କରେ ଶୈଳେନ । ସେ ଅନୁଷ୍ଠାନରେ ମୁଁଇ ଏକମାତ୍ର ଅତିଥି । ଘର କାଂଥରେ ମାଧୁରୀର ମଧ୍ୟମ ସାଇଜର ଖଣ୍ଡେ ଫଟୋ ଟଂଗା । ତାର ଏବେକାର ଫଟୋ ନହେଁ, ସେତେବେଳର ଫଟୋ । ତାର ପ୍ରଥମ ତାରୁଣ୍ୟର ।

ସେଇ ଉଦ୍‌ଭିଦ୍ ଯୌବନାର ଛବି ସାମନାରେ ଆମେ ଦୁଇ ବୁଢ଼ା ଦୁଇଟି ଚେୟାର ପକାଇ ମୁହାମୁହିଁ ବସୁଁ । ଗୁ ଖାଉଁ, ଗଳ୍ପ କରୁଁ କେବେ ପୁଣି ସବୁ କଥା ବନ୍ଦ କରି ଚୁପ୍ କରି ବସି ରହୁଁ ।

ଷୈଳେନ ମୃତ୍ୟୁ ହାତରୁ ଗୋଟିଏ ପ୍ରେମକୁ ରକ୍ଷା କରିଛି । ଆଉ ମୁଁ ଜଣ ହାତରୁ ଗୋଟିଏ ବନ୍ଧୁତ୍ୱକୁ ବଂଚାଇ ଚାଲିଛି ।

ପ୍ରଣତବାବୁ ଉଠି ଠିଆ ହେଲେ । ଛତାଟି ସାମନାରେ ଥିବା ସତ୍ୱେ ବି ସେ ଭୁଲି ଛାଡ଼ି ଯାଉଥିଲେ । ମୁଁ ସେଟିକୁ ତାଙ୍କ ହାତରେ ଟେକି ଦେଲି ।

ସେ ମୃଦୁ ହସି କହିଲେ, "ଥ୍ୟାଙ୍କ୍ ୟୁ ।"

# ମାନନୀୟ ପରୀକ୍ଷକ ମହାଶୟ ସମୀପେଷୁ

## ନାରାୟଣ ଗଙ୍ଗୋପାଧ୍ୟାୟ

ସାର୍,

ମୋର ଏଇ ଖାତା ଶେଷ ପର୍ଯ୍ୟନ୍ତ ଆପଣ ପଢ଼ିବେ କି ନା ଜାଣେନା । କାରଣ ଆପଣ ଦେଖୁଛନ୍ତି ଯେ, ମୁଁ ଗୋଟିଏ ହେଲେ ପ୍ରଶ୍ନର ଉତ୍ତର ଲେଖି ନାହିଁ । ମୂଳରୁ ଶେଷ ଯାଏଁ ଏଇ ଚିଠିଟା ହିଁ ଲେଖୁଚି ଆପଣଙ୍କୁ । ଆପଣ ହୁଏତ ଲଛନ କେତୁଟା ପଢ଼ି ଭ୍ରୂକୁଟି କରିବେ, ଗୋଟିଏ ଜିରୋ ବସାଇ ଦେବେ, ତାପରେ ନନସେନ୍‌ସ ରାଇଟିଂ ଯୋଗୁ ମୋ ନାମରେ ୟୁନିଭରସିଟିକୁ ଗୋଟିଏ ରିପୋର୍ଟ ପଠାଇବେ । ଜିରୋ ଦିଅନ୍ତୁ, ରିପୋର୍ଟ କରନ୍ତୁ ସେଥିପାଇଁ ଭବୁନି । ହୁଏତ ବା ଧୈର୍ଯ୍ୟ ଧରି ଲେଖାଟା ଆପଣ ପଢ଼ିଦେଇ ବି ପାରନ୍ତି, ଏଇ ଆଶାରେ ହିଁ ଆପଣଙ୍କ ପାଖରେ ଏଇ ନିବେଦନ ପେଶ୍ କରୁଚି ।

ଗୋଟିଏ ଦିଟା ପ୍ରଶ୍ନର ଜବାବ ହୁଏତ ଦେଇ ପାରିଥାନ୍ତି । କିନ୍ତୁ ସେଥିରେ ପାଶ୍ ମାର୍କ ପାଇବା ଦୂରେଥାଉ, କୋଡ଼ିଏ ଘରେ ବି ପହଞ୍ଚନ୍ତି ନାହିଁ । ତେଣୁ ସେ ଚେଷ୍ଟା ଆଉ କରିବିନି । ତା ଛଡ଼ା ଆଜି ସଂଧ୍ୟା ପରେ ମୁଁ ତ ପାଶ୍-ଫେଲର ବାହାରି ଗ୍ଲିଯିବି । କଲିକତାର ଆଖପାଖ ଦେଇ ଯେଉଁ ଅସଂଖ୍ୟ ଟ୍ରେନ ଆସେ ଯାଏ, ସେଥିରୁ ଗୋଟିକର ଚକ ତଳେ ଶେଷ ହିସାବ ନିକାଶ କରିଦେଇ ଯିବି । ଏଇ ଖାତା ଯେତେବେଳେ ଆପଣ ଦେଖିବେ ସେତେ ବେଳେ କଟିଯାଇଥିବା ଏକ ଅପରିଚିତ ଯୁବକର ମୃତ୍ୟୁର ଛୋଟ ଆଉ ପୁରୁଣା ସଂବାଦଟି ଆପଣଙ୍କ ସ୍ମୃତିରୁ ମଧ୍ୟ ପୋଛି ହୋଇଯାଇଥିବ ।

ଆପଣଙ୍କର ଅଧ୍ୟାପକ-ବିବେକ ସେଇଠି ଆସି ଛିଡ଼ା ହୋଇଯିବ । କହିବେ, ଛିଃ, ଛିଃ, ପରୀକ୍ଷାରେ ପାସ୍ କରି ନ ପାରି ଆତ୍ମହତ୍ୟା । ଏହାଠାରୁ ବଳି ଅଧମ କାପୁରୁଷତା କଣ କଳ୍ପନା କରଯାଇପାରେ ? ଦେଶର ତରୁଣମାନଙ୍କର ଯଦି ଏତିକି ନୈତିକ ବଳ ନ ଥାଏ-ତାହେଲେ ବଙ୍ଗାଳୀ ଜାତି କେଉଁଠି ଠିଆ ହେବ-ଜାତିର ଭବିଷ୍ୟତ କ'ଣ ?

ବିଶ୍ୱାସ କରନ୍ତୁ ସାର୍, ଏ ସବୁ କଥାହିଁ ମୁଁ ଜାଣେ । ଆହୁରି ବିଶ୍ୱାସ କରନ୍ତୁ, ମୁଁ ମଧ୍ୟ ବଂଚିବାକୁ ଚାହିଁଥିଲି । ଭାବିଥିଲି ମୋର ହାତର ଛୁଆଁରେ ସାଂତାଳ ପ୍ରଗଣାର ବଢ଼ି-ଉଛୁଳା ପାଗଳା ପାହାଡ଼ୀ ନଦୀ ବିଶାଳ କ୍ୟାଚମେଂଟ ଏରିୟା ମଧରେ ଆସି ଥମି ଠିଆ ହେବ । ମୁଁ ସୁଇଚ୍ ଟିପିଲେ ହାଇଡ୍ରୋ-ଇଲେକ୍‌ଟ୍ରିକ୍‌ର ହଜାର ହଜାର ଆଲୁଅରେ ଝଲମଲ କରି ଉଠିବ ବିହାର-ପଶ୍ଚିମ ବଂଗଳାର ଇଣ୍ଡଷ୍ଟ୍ରିଆଲ ବେଲ୍‌ଟ ବ୍ଲାଷ୍ଟ ଫର୍ନେଶର ରକ୍ତିମ ଆଭାରେ ମୁଁ ଗଳିତ ଇସ୍ପାତରେ ଆଗାମୀ ଭାରତବର୍ଷର ଭିତ୍ତି ରଚନା କରିଦେବି । ସାର ଆତ୍ମହତ୍ୟା ମୁଁ କରିବାକୁ ଚାହିଁନି ।

ମୋ ଚାରିପଟେ ପିଲମାନେ ଦ୍ରୁତ ବେଗରେ ପରୀକ୍ଷା ଖାତା ଲେଖିଚାଲିଛନ୍ତି । ସେମାନଙ୍କ ଭିତରୁ ଅନେକେ ଇଲଗେ ମୋରି ପରି ସ୍ୱପ୍ନ ଦେଖୁଛନ୍ତି ଏବଂ କିଛିଦିନ ପରେ କ୍ରଶ ଲିଷ୍ଟରେ ସେମାନଙ୍କ ସ୍ୱପ୍ନ ଖଣ୍ଡ ଖଣ୍ଡ ହୋଇଯିବ । ତଥାପି ଏମାନଙ୍କ ମଧ୍ୟରୁ କେହି କେହି ମଧ୍ୟ ଜୀବନରେ କୃତୀ ହେବେ-ଭବିଷ୍ୟତ ଭାରତର ଆଶାର ମଶାଲ ଜଳାଇ ଧରିବେ ହାତରେ । ଏମାନେ ଭାଗ୍ୟବାନ-ଆଗେଇ ଯାନ୍ତୁ । ମୋ ପରି ଯେ ଅସଂଖ୍ୟ ପିଲ ଏମିତି ହଜିଯିବେ କିମ୍ବା ବଂଚି ମଧ୍ୟ ବଂଚି ରହିବେ ନାଇଁ, ସେମାନଙ୍କ କଥା କେଉଁ ପଂଚବାର୍ଷିକୀ ସାଫଲ୍ୟରେ ଖତିୟାନରେ ଲେଖା ରହିବ ନାଇଁ । ମୁଁ ଆପଣଙ୍କୁ ଚିହ୍ନି ନାଇଁ-ଆପଣଙ୍କୁ ଦେଖି ନାଇଁ, କେବେ ଦେଖିବି ନାଇଁ ମଧ୍ୟ, କିନ୍ତୁ ଏତିକି ଜାଣେ ଯେ, ଆପଣ ଅଧ୍ୟାପକ । ଛାତ୍ରମାନଙ୍କର ପାଖାପାଖି ଆପଣଙ୍କୁ ରହିବାକୁ ପଡ଼େ, ସେମାନଙ୍କର ଜୀବନର ଢେଉ ଆପଣଙ୍କୁ ଛୁଏଁ, ସେମାନଙ୍କୁ ଆପଣ ଭଲ ବି ପାଆନ୍ତି । ତେଣୁ ଶେଷ ପର୍ଯ୍ୟନ୍ତ ଆପଣ ପଢ଼ନ୍ତୁ ବା ନ ପଢ଼ନ୍ତୁ, ଆମ କଥା ଆପଣଙ୍କୁ ନ କହି ଆଉ କାହାକୁ କହିବି ?

ସାର୍, ସ୍ୱପ୍ନ ଯେତେବେଳେ ଦେଖୁଥିଲି ସେତେବେଳେ ଭୁଲି ଯାଉଥିଲି ଯେ ମୁଁ ମେଦିନୀପୁରର ଏକ ଅଖ୍ୟାତ ଗ୍ରାମର ଗରୀବ ଚାଷୀର ପୁଅ । କିନ୍ତୁ

ମୋ ବାବା ଚାଷୀ ହେଲେ ମଧ୍ୟ ଦିଲ୍ଲୀ ଆଲୁଅ କରୁଥିବା ନେତାମାନଙ୍କ ମଧ୍ୟରୁ କାହାରିଠାରୁ ତାଙ୍କର ଦେଶପ୍ରେମ ଟିକିଏ ହେଲେ ଊଣା ନଥିଲା । ମୋର ଜନ୍ମ ହୋଇଥିଲା ଊଣିଶ' ବୟାଳିଶ ସେପଟେମ୍ବରର ମଧ୍ୟଗର୍ଭରେ ଏକ ଜଙ୍ଗଲ ଭିତରେ । କାରଣ, ସେତେବେଳେ ମିଲିଟାରୀ ଆମ ଗାଁ ଜଳାଇ ଦେଉଥିଲା ଆଉ ଜାତୀୟ ପତାକା ଜାବୁଡି ଧରି ବୁଲେଟ୍ ବିଂଧା ବୁକୁ ନେଇ ମୋ ବାବା ଶୋଇ ପଡ଼ିଥିଲେ ଏକ ଧାନକ୍ଷେତ ଭିତରେ ।

ବାବାଙ୍କର ଇଚ୍ଛା ଥିଲା, ପୁଅ ହେଲେ ତାର ନାମ ରଖିବେ ସ୍ୱାଧୀନକୁମାର । ସେଇ ଅଗ୍ନିଦଗ୍ଧ ପ୍ରଳୟ ଗତିରେ ମୁଁ ଜନ୍ମିଥିଲି । କାରଣ, ମିଲିଟାରୀର ସମସ୍ତ ତାଣ୍ଡବ ସତ୍ତ୍ୱେ ଦେଶର ଗୋଟିଏ ହେଲେ ମଣିଷର ମନ ସେଦିନ ପରାଧୀନ ନଥିଲା ।

କିନ୍ତୁ ଏ ସବୁ ଇତିହାସ ଥାଉ ସାର୍ । ଆପଣ ଯଦି ଏତେବେଳ ଯାଏ ପଢିଥାନ୍ତି ତାହେଲେ ଆପଣଙ୍କର ନିଶ୍ଚୟ ଧୈର୍ଯ୍ୟଚ୍ୟୁତି ହେବ —ମୋ ବଂଶ ପରିଚୟ ଜାଣିବାକୁ ଆପଣଙ୍କର କାହିଁକି ମୁଣ୍ଡବ୍ୟଥା ହେବ ?

ତା ଛଡ଼ା ଏମିତି ତ ମୁଁ ତିନି ଘଣ୍ଟାରୁ ବେଶୀ ସମୟ ପାଇବି ନାହିଁ —ଖାତା ଛଡ଼ାଇ ନେବେ । ତେଣୁ ସଂକ୍ଷେପରେ କହିବାକୁ ଚେଷ୍ଟା କରେ ।

ଚାଷୀର ପୁଅ, ଚାଷବାସ କରି କୌଣସମତେ ବଂଚି ପାରିଥାନ୍ତି କିମ୍ବା ଅକାଳ ପଡ଼ିଲେ ଅନେକେ ଯେପରି ନ ଖାଇବା ଅଧପେଟ ଖାଇ ମରନ୍ତି, ସେମିତି ମରି ଯାଇଥାନ୍ତି । କିନ୍ତୁ ମୋର ବରଦ ଖରପ । କକା ମୋତେ ଗାଆଁର ମାଇନର ସ୍କୁଲରେ ଭର୍ତ୍ତି କରିଦେଲେ । ଆଉ ଆପଣ ବିଶ୍ୱାସ କରିବେ ନାହିଁ, ମୁଁ ଗୋଟାଏ ସ୍କଲରସିପ୍ ବି ପାଇଗଲି ।

ଆଉ ସେଇ ସ୍କଲରସିପ୍‌ଟାହିଁ ମୋର କାଳ ହେଲା । ମୁଁ ସ୍ୱପ୍ନ ଦେଖିବାକୁ ଆରମ୍ଭ କଲି । ମା ମୋତେ କୋଳକୁ ଟାଣି ନେଇ ଆଖିର ଲୁହ ଝରାଇବାକୁ ଲାଗଲେ । ବାବାଙ୍କ ପାଇ ମାଙ୍କୁ ଏଇ ପ୍ରଥମ ଥର କାନ୍ଦିବାର ଦେଖିଲି । ତାପରେ ଦୁଇ ଆଖିଭରା ଆଲୋକ ନେଇ କକାଙ୍କ ସଙ୍ଗରେ ବାହାରି ପଡ଼ିଲି ଦୁଇ ମାଇଲ ଦୂର ବଡ଼ଗଂଜ ହାଇସ୍କୁଲରେ ଭର୍ତ୍ତି ହେବାପାଇଁ ।

ହଷ୍ଟେଲରେ ରହିବା ପାଇଁ ପଇସା ନଥିଲା । ସ୍ଥାନ ପାଇଲି ଧାନ-ଗୁଉଳର ଆଡ଼ବଦୀର ସାମନ୍ତଙ୍କ ଘରେ ରହିବା ପାଇଁ । ସାମନ୍ତ ଘର ଦୂର ସଂପର୍କରେ ଆମର ବନ୍ଧୁବାନ୍ଧବ ହେବେ । କିନ୍ତୁ ଗରୀବ ଗୁଷୀ ସଙ୍ଗରେ ସେ ବନ୍ଧୁ-ବାନ୍ଧବ ସଂପର୍କ ସେମାନେ ସ୍ୱୀକାର କରୁ ନ ଥିଲେ । ଅସଲ ସଂପର୍କଟା ଥିଲା ଜମିଦାର ଆଉ ପ୍ରଜାର, ମହାଜନ ଆଉ ଖାତକର । କକାହିଁ ହାତ ଗୋଡ଼ ଧରି ମୋର ତାଙ୍କ ଘରେ ରହିବାର ବ୍ୟବସ୍ଥା କରିଦେଲେ । ହାଇସ୍କୁଲରେ ଭର୍ତି ହେଲି, ଫ୍ରି ବି ପାଇଲି ।

ସାର୍, ସାମନ୍ତମାନଙ୍କ ଘରେ ଲକ୍ଷ୍ମୀ ବଂଧା । ଦୁଇଟା ଲରୀ, ତିନିଟା ମକାମ । କିନ୍ତୁ ବ୍ୟବସାୟ ଯେଉଁମାନେ କରନ୍ତି ସେମାନେ କେଉଁ ଦିନ ପାହି ପଇସା ବି ବାଜେ ଖରଚ ହେବାକୁ ଦିଅନ୍ତି ନାହିଁ । ପାଂଚଶହ ଟଙ୍କା ଦାନ କରି ପଚିଶ ହଜାର ଟଙ୍କାର ଫାଇଦା ଉଠାନ୍ତି । ମୋତେ ଖାଇବାକୁ ଆଉ ରହିବାକୁ ଦିଅନ୍ତି ସତ କିନ୍ତୁ ତାର ଦାମ ବି ଆଦାୟ କରି ନିଅନ୍ତି ।

ଏଇ ଖାତା ଦେଖି ବୁଝି ପାରୁଥିବେ ମୋ ହାତଲେଖା ଖରପ ନୁହେଁ । ତା ଉପରେ ଅଙ୍କ ମୁଁ ଭଲ ପାରୁଥିଲି । ମାଇନର ପରୀକ୍ଷାରେ ଶହେରୁ ଶହେ ପାଇଥିଲି । ସେମାନେ ବି ସୁଯୋଗ ଛାଡ଼ିଲେ ନାହିଁ । ପ୍ରଥମେ ପ୍ରଥମେ ମୋତେ ଦେଇ ଚିଠିପତ୍ର ଲେଖାଉଥିଲେ, ତା'ପରେ ଖାତା ଲେଖାଇଲେ, ତା'ପରେ ହିସାବ ଲେଖିବାକୁ ଦେଲେ । ସକାଳେ ପୂରା ଦୁଇ ଘଣ୍ଟା ଏହା ମୋର ନିଧାର୍ଯ୍ୟ କାମ ହୋଇ ପଡ଼ିଲା ।

ପଢିବାକୁ ସମୟ ପାଉଥିଲି ରାତି ଆଠଟା ପରେ ।

ତା ବି କଣ ଭଲକରି ପଢିବାର ଜୋ ଥିଲା ।

ଆଉତକୁ ଲଗି ଖଣ୍ଡେ ଛୋଟ ବଖରାରେ ମୁଁ ରହୁଥିଲି, ଆଉ ରହୁଥିଲା ସେମାନଙ୍କର ଜଣେ ମୋହରୀର ବୟସ ପଚିଶ ପାର ହୋଇଯାଇଛି । ରୋଗା ଚମଧୁଡ଼ୁଧୁଡ଼ୁ ଚେହେରା । ଦୁଇଟା ଅଦ୍ଭୁତ ବଡ଼ ବଡ଼ ଜଳଜଳ ଆଖି । ମୁଁ ପଢିବାକୁ ବସିଲେହିଁ ସେ ହୁକା ଧରାଇବାକୁ ଆରମ୍ଭ କରେ ।

ମୋର ବୟସ ସେତେବେଳକୁ ଆଉ କେତେ ହେବ ? ବାରରୁ ବେଶି ନୁହେଁ । ଗୁଡ଼ାଖୁ ଟାଣୁ ଟାଣୁ ଜଳ ଜଳ ଆଖି ଦିଟାକୁ ଆହୁରି ଜ୍ୱଳନ୍ତ କରି

ଅନ୍ଧସ୍ତିକର ଫଂସ୍ ଫଂସ୍ ଗଳାରେ ଯେଉଁ ସବୁ ଗଳ୍ପ ଶୁଣାଉଥିଲା ସେ ସବୁର ଅର୍ଥ ମୁଁ ସେତେବେଳେ ବୁଝି ନ ଥିଲି, ପରେ ବୁଝିଲି । ଅକଥ୍ୟ, ଅଶ୍ଳୀଳ ସବୁ ବ୍ୟାପାର । କେତେ ଭବରେ କେତେ ଝିଅଙ୍କର ସର୍ବନାଶ ସେ କରିଛି ତା'ରି ବିବରଣ

ମୋର ଭଲ ମନ୍ଦ କିଛି ବୋଧଗମ୍ୟ ହେଉ ନଥିଲା । ଭରି ବିରକ୍ତି ଲାଗୁଥିଲା ।

—ଚୁପ୍ କରନ୍ତୁ, ମୋତେ ଟିକିଏ ପଢିବାକୁ ଦିଅନ୍ତୁ ।

—ଆରେ ରହ ବାପ, ରହ । ଚଷା ପୁଅ ବିଦ୍ୟାସାଗର ହେବ ହେତ୍ ! ତା ଅପେକ୍ଷା ବରଂ ହୁକାଟା ଧର । • ଗୁଡ଼ାଖୁ ଟାଣିବାଟା ହେଲେ ଶିଖ୍ନେ ।

ମୋହରୀର ଯଦି କ୍ଳାନ୍ତ ହୋଇ ଶୋଇପଡେ ତ ଦପ୍ କରି ଲଣ୍ଠଣଟା ଲିଭିଯାଏ । ସାମନ୍ତଙ୍କ ଘରୁ ଯେଂତଟିକେ କିରସିନୀ ତେଲ ବରଦ ହୋଇଥାଏ ଗତି ନଅଟା ପରେ ଆଉ ବତି ଜଳିବାର କଥା ନୁହେଁ । ସ୍କଲରସିପ୍ ଯେଉଁ ସାମାନ୍ୟ କେତେ ଟଙ୍କା ପାଉଥିଲି ସେଥିରେ ନାନା ଟୁକ୍‌ଟାକ୍ ଖରଚ ଚଳାଇ ଆଉ କିରସିନୀ କିଣିବାକୁ ପଇସା ନଥାଏ ।

ତଥାପି ଯାରି ଭିତରେ ଫାଷ୍ଟ ସେକେଣ୍ଡ ହୋଇ କ୍ଲାସ ଏଇଟ୍ ପର୍ଯନ୍ତ ଯାଇଥିଲି । ତା'ପରେ ଦେଖାଦେଲା ବହିର ସମସ୍ୟା । ଦେଖିଲି, ସ୍କୁଲ ଫାଇନାଲ୍‌ର ବହି କିଣିବା ସତୁରୀ-ଅଶୀ ଟଙ୍କାର ମାମଲା । କକା ଖୋଗକୀର ଧାନ ବିକି କିଛି ଟଙ୍କା ପଠାଇଲେ, ସାମନ୍ତ ଘର ଦଶ ଟଙ୍କା ସାହାଯ୍ୟ କଲେ, ହେଡ୍‌ମାଷ୍ଟର ତିନି ଖଣ୍ଡ ସ୍କୁଲ କପି ଦେଲେ । ତଥାପି ଅଧେ ବହି ବି ହେଇ ନାହିଁ ।

ଆଉ ସାମନ୍ତଙ୍କର ଦଶ ଟଙ୍କାର ଋଣ ଶୁଝିବାକୁ ହେଲା ଖାତା ପରେ ଖାତା ଲେଖି ।

ସାର୍, ମାଇନର ପରୀକ୍ଷାରେ ସ୍କଲରସିପ୍ ପାଇଥିଲି ମୁଁ ତୁଚ୍ଛ ସାଧାରଣ ମଣିଷଙ୍କ ଦଳରେ ନୁହଁ, ମୋ ଭିତରେ ଶକ୍ତି ଅଛି, ତାରି ଜୋରରେ-ମୁଁ ସ୍ୱାଧୀନକୁମାର-ସ୍ୱାଧୀନ ଗୌରବରେ ମୁଣ୍ଡ ଟେକି ଛିଡ଼ା ହେବି । ଯେଉଁ ଭରତବର୍ଷ ପାଇଁ ବାବା ବୁକୁର ରକ୍ତ ଢାଳିଦେଇଥିଲେ, ସେଇ

ଭାରତବର୍ଷରେ ମୁଁ ମୋର ପ୍ରକୃତ କର୍ମକ୍ଷେତ୍ର ଖୋଜି ପାଇବି । କିନ୍ତୁ ନ ପାରିଲି ଭଲ କରି ପଢାଶୁଣା କରି, ନ ହେଲା ଭଲ କରି ପରୀକ୍ଷା ଦିଆ । ରେଜଲ୍ଟ ବାହାରିବା ପରେ ଦେଖାଗଲା, ଥାର୍ଡ ଡ଼ିଭିଜନରେ ପାସ୍ କରିଛି ।

ହେଡ୍ ମାଷ୍ଟରଙ୍କଠାରୁ ଆରମ୍ଭ କରି ସମସ୍ତେ ଏକବାକ୍ୟରେ ଛି-ଛି କରିବାକୁ ଲାଗିଲେ । ସାମନ୍ତଙ୍କର ଯେଉଁ ପୁଅଟା ତିନି ଥର ବି. ଏ. ଫେଲ୍ କରି ଏବେ ହଳଦୀ ନଦୀ କୂଳରେ ବନ୍ଧୁକ କାନ୍ଧରେ ଧରି ଚଢ଼େଇ ଶିକାର କରି ବୁଲେ ସେ କହିଲା, ପାଶ କରିଚି ଏଇ ଯାର ଭାଗ୍ୟ । କେତେ ବ୍ରିଲିୟାଣ୍ଟ୍ ପିଲା ସ୍କୁଲ ଫାଇନାଲ୍‌ରେ ମାଡ ଖାଇ ଯାଆନ୍ତି ।

ଦି'ଦିନ ଘରେ ମୁହଁ ଲୁଚାଇ ପଡି ରହିଲି । ଉଠିଲି ନାହିଁ, ଖାଇଲି ନାହିଁ । ଆଉ ସେତେବେଳେ ମାଙ୍କ ଆଖିର ଲୁହ ଟପ୍‌ଟପ୍ କରି ମୋ ଉପରେ ପଡ଼ିବାକୁ ଲାଗିଲା ।

—ବାପଟା ପଗ ଉଠ୍ । ପୁଣି ମନ ଦେଇ ଲେଖାପଢା କର । ତୁ ଜୀବନରେ ବଡ଼ ହୋଇ ପାରିବୁ । ତୋରିପରି କେତେ ଦୁଃଖୀ ପିଲା ବିଲକୁଲ ପାଶ୍ କରି ପାରିନାହାନ୍ତି ସେମାନଙ୍କ କଥା ଭାବି ଦେଖ୍ ।

ସାଉ୍, ପୁଣି ସାହସ ଧରିଲି । ଏଥର ଗ୍ଲଲି ଆସିଲି କଲିକତା । କଣ କରିବି, ଏଇ ସାମନ୍ତଙ୍କ ଚିଠି ନେଇ ହିଁ ଆସିଲି । ସରକାର ବଂଶ ସାମନ୍ତ ମାନଙ୍କ କୁଟୁମ୍ବ-ବଡ଼ବଜାରରେ ସେମାନେ ଗୁଡ଼ାଖୁଆ ବ୍ୟବସାୟ କରନ୍ତି । ସେଇଠି ଜାଗା ପାଇଲି ।

ପୁଣି ସେଇ କଥା । ଦୋକାନ ବ୍ୟାପାରରେ ସାହାଯ୍ୟ କରିବାକୁ ହେବ । ଦରକାର ହେଲେ ତାଗିଦାରେ ଯବାକୁ ହେବ । ତଥାପି ମନେହେଲା କଲିକତା କଲିକତା । କେତେ ବଡ଼ ଜୀବନ ଏଠାରେ । କେତେ ସୁଯୋଗ । ବଡ଼ ବଡ଼ କଲେଜ, ନାମଜାଦା ସବୁ ଦିକ୍‌ପାଳ ଅଧ୍ୟାପକ । ସେଇ ସବୁ କଲେଜରେ ଥରେ ପାଦ ଦେଲେ ନାମୀ ପ୍ରଫେସରମାନଙ୍କର ଜ୍ଞାନର ସ୍ପର୍ଶ ଥରେ ପାଇଲେ ହିଁ ମୋ ମନରେ ହଜାର ଆଲୁଅ ଝଲମଲ କରି ଉଠିବ । ସାରା ପୃଥିବୀର ପ୍ରାଣର ଢେଉ କଲିକତାରେ ଆସି ଭାଙ୍ଗି ପଡ଼ୁଚି । ତା ସଙ୍ଗରେ ଥରେ ପ୍ରାଣ ମିଳାଇ ପାରିଲେ ମୁଁ ଗଡାଗଡି ଖେଳ ଆକାଶରେ ମୁଣ୍ଡ ଟେକି

ଛିଡ଼ା ହେବି-ପ୍ରଥମ ବର୍ଷା ପାଣି ପାଇ ମଲା ଗଛପତ୍ର ଯେମିତି ନୂଆ ପତ୍ର ନେଇ ବଢ଼ି ଉଠନ୍ତି ।

ଗଲ କଲେଜକୁ-ସଙ୍ଗରେ କେଇଟା ଖୋଗକିର ଧାନବିକା ଟଂକା । ଜାଣେ, ଏଥିପାଇଁ ସଂସାରର ପ୍ରାୟ ସମସ୍ତଙ୍କୁ ଅଧପେଟେ ଖାଇବାକୁ ହେବ । ଉପାସ ବି ରହିବାକୁ ପଡ଼ିପାରେ । କିନ୍ତୁ ଯଦି ଭଲ କରି ପାରେ ପରୀକ୍ଷାରେ, ଯଦି, ମଣିଷ ହୋଇପାରେ ।

ବିରାଟ ପ୍ରାସାଦ କଲେଜର । ସେଠିରେ ପୁଣି ରଥଯାତ୍ରା ପରି ଭିଡ଼ ସେଇ ଭିଡ଼ ଠେଲି ଯଦି ବା ଅଫିସ୍‌ରେ ପହଞ୍ଚି ପାରିଲି, ଶୁଣିଲି, ଥାର୍ଡ଼ ଡ଼ିଭିଜନ୍, ଆଇ-ଏସ୍-ସିରେ ସିଟ୍ ? ହେବ ନାଇଁ ।

ଗୋଟାଏ ଦିଟା ନୁହେଁ ସାର୍ ପ୍ରାୟ ଛଅଟା କଲେଜ ଫେରତ୍ ଦେଲେ । ଶେଷରେ ଯାରି ଭିତରେ ଗୋଟାଏ ଅକୁଳୀନ କଲେଜରେ ଜାଗା ହେଲ । ଭାଇସ୍‌ପ୍ରିନ୍‌ସିପାଲ୍‌ଙ୍କ ସଙ୍ଗେ ଦେଖା କରିବାକୁ ଗଲି । ଯଦି କିଛି କନ୍‌ସେସନ୍ ପାଏଁ !

କନ୍‌ସେସନ ? ଭାଇସ୍-ପ୍ରିନ୍‌ସିପାଲଙ୍କ ଆଖି ଆକାଶକୁ ଟେକି ହୋଇଗଲା; ଥାର୍ଡ଼ ଡ଼ିଭିଜନ୍ ?

—ସାର୍

—ଆଇ.ଏସ୍.ସି.ରେ ଆମେ ଏମିତି ତ କନସେସନ୍ ଦେଉଁନା । ତା ଉପରେ ଥାର୍ଡ଼ ଡ଼ିଭିଜନ୍ ।

—ସାର ଗରିବ ପିଲା ।

—ସବୁ ବଙ୍ଗାଳୀର ପୁଅ ହିଁ ଗରିବ । ସେ ଭାବେ ଦେଖିବାକୁ ଗଲେ ସାରା କଲେଜଟାଯାକର ପିଲାଙ୍କୁ ଫ୍ରି ଷ୍ଟୁଡେଣ୍ଟସିପ୍ ଦେବାକୁ ହେବ ।

—ସାର୍, ଏକବାରେ ଗ୍ରୀବ ଘରର ପିଲା ମୁଁ ।

—ଭାଇସ-ପ୍ରିନ୍‌ସିପାଲ ଅତ୍ୟନ୍ତ ବିରକ୍ତ ହେଲେ, ତାହେଲେ କଲେଜରେ ପଢ଼ିବାକୁ ଆସିଲ କାହିଁକି ? ଗ୍ରୀବାସ ଦେଖିବା ହିଁ ଭଲ ଥିଲା । ହାୟାର ଏଡୁକେଶନ୍ ତମପାଇଁ ସବୁ ନୁହେଁ । ଗୋ-ଗୋ-ଡ଼ୋଣ୍ଟ ଡ଼ିଷ୍ଟର୍ବ ମୀ ।

କନଧେସନ ହେଲା ନାହିଁ । ରାସ୍ତାରେ ଫେରି ଆସିବା ବେଳେ ସାମନ୍ତଙ୍କର ସେଇ ମୋହଭାରର କଥା ମନେ ପଡ଼ିଲା । ଗୁଷା ପିଲ ବିଦ୍ୟାସାଗର ହେବ ହେଁ !

ସାର୍, ସେତିକିବେଳେ ମୋର ଗାଁକୁ ଫେରିଯିବା ଉଚିତ ଥିଲା । ଏକ ପଡ଼ିଆଭର ଖଗ ଭିତରେ, ତା କପାଳ ଦେଇ ଟପଟପ ଝାଳ କଣା ଆସି ପଡ଼ୁଛି-ସେଇଠି ନିଜ କାଗାକୁ ଗଲେ ହିଁ ମୋର ଭଲ ହୋଇଥାନ୍ତା । ସହରର ଏ ଅପମାନର ଗୁବୁକ୍ ଏମିତି ଆସି ଆଉ ଦିହରେ ବାଜନ୍ତା ନାହିଁ । କିନ୍ତୁ ସାର୍, ମୁଁ ଆଶା ଛାଡ଼ିପାରିଲି ନାହିଁ । କେମିତି ଜଦି ହୋଇଗଲା । ମନେହେଲା, ଯାର ଶେଷ ଦେଖି ଛାଡିବି ।

ସରକାର ଘର ଗୁଡାଖୁ ଦୋକାନର ଗୋଟାଏ ମୁଣ୍ଡରେ ମୁଁ ରହୁଥାଏ । ସାମନ୍ତଙ୍କ ଘର ସଙ୍ଗେ କେତେ ଫରକ୍ ! ସେଠି ଏକ ଛୋଟ ଗ୍ଲଳିଆ ଘରେ ଅବଶ୍ୟ ରହିବାକୁ ପଡୁଥିଲା । କିନ୍ତୁ ବାହାରେ ଆକାଶ ଥିଲା, ଗାଧୋଇବା ପାଇଁ ପୋଖରୀର କଜା ଗହନ ଜଳ ଥିଲା । ବତାସରେ କାଠଚମ୍ପା, ଚହୁଳାର ଗନ୍ଧ ଥିଲା । କିନ୍ତୁ ଏଠି ବଡ଼ ବଜାରର ଗଳି । ଦିନ ବାରଟାରେ ସବୁ ଦୋକାନରେ ଧାଡ଼ି ଧାଡ଼ି ଇଲେକ୍‌ଟ୍ରିକ୍ ବତୀ ଜଳୁଛି । ତିନି ହାତ ଗସ୍ତା ଛାଡ଼ି ଆକାଶଛୁଆଁ ସାତତାଲା ସନ୍ତସନ୍ତିଆ କୋଠାମାନ, ବତାସ ନାହିଁ । ଦିହକୁ ଦିହ ଘଷି ହଜାର ଲୋକଙ୍କର ଗତି ଗୋଟାଏ ଦେଢ଼ଟା ପର୍ଯ୍ୟନ୍ତ ଯିବା ଆସିବା । ଗୁଳ୍‌ଗୁଳି ଗରମ, ଲଇନ-ବନ୍ଧା ଦୋକାନରୁ ଧୂଆଁପତ୍ର ଆଉ ଗୁଡ଼ର ଗନ୍ଧ ଆଉ କାନଫଟା କୋଳାହଳ ।

ଏହାରି ଭିତରେ ଗୋଟାଏ କଣରେ ତକ୍ତପୋଷ ଉପରେ ଥାଏ । ସାଗ ଗତି ମୂଷା ଚରୁଥାନ୍ତି, ଦିନ-ଦିପହରେ ଅସରପାଙ୍କର ଉତ୍ପାତ । ସରକାର ଘର କଲେଜର ମାଇନାଟା ଚଳାନ୍ତି–ଆଉ ଦିଅନ୍ତି ପାଞ୍ଚ ଟଙ୍କା ହାତ ଖରଚ । ତା ବଦଳରେ ଖଟିବାକୁ ହୁଏ ସକାଳେ ଉପରବେଳା । ତାଗିଦାରେ ଯିବାକୁ ହୁଏ । ଜୋଗାଡ଼ ଯନ୍ତ କରି ଗୋଟାଏ ଟିଉସନ୍ ଜୁଟାଇ ନେବି, ତାର ମଧ୍ୟ ଜୋ ନଥିଲା । ବହି ? ଆଇ. ଏସ୍. ସିର ବହି କିଣିବାକୁ ହେଲେ କେତେ ଟଙ୍କା ବ୍ୟୟ ହେବ ସେକଥା ମୁଁ ଆଜି ବି ଜାଣନାହିଁ । ସାର, ଆପଣ ବୋଧହୁଏ ଜାଣନ୍ତି ନାହିଁ । ଆପଣଙ୍କ ସମୟରେ ଯେଉଁ ବହିର ଦାମ ପାଞ୍ଚ ଟଙ୍କା ଥିଲା, ବର୍ତ୍ତମାନ ତାର ଦାମ୍ ବାର ଟଙ୍କାରୁ କମ୍ ନୁହେଁ । ଖଣ୍ଡେ ଦିଖଣ୍ଡ ପୁରୁଣା

ଏଡ଼ିସନ୍‌ର ବହି ଫୁଟ୍‌ପାଥରୁ କିଣିଥିଲି—ସେଥିରେ ସିଲାବସ୍‌ର ଅଧେ ବି ପାଇଲି ନାହିଁ ।

ପଢ଼ାଶୁଣା ? ଖାଇବାକୁ ଯିବାକୁ ହୁଏ ସରକାରଙ୍କର ବହୁବଜାର ଘରକୁ । ସେଠୁ ଖାଇ ଫେରୁ ଫେରୁ ଦଶଟା ପୂର୍ବରୁ ନୁହେଁ । ତା'ପରେ ଗୋଟାଏ ହଳଦିଆ ବଲ୍‌ବ ଜାଳି ପଢିବାକୁ ବସେ । ଖାତାର ନୋଟ୍‌ଗୁଡ଼ାକ ଏକାବେଳେକେ ଦୁର୍ବୋଧ୍ୟ ସାଲୁବାଲୁ ମନେହୁଏ । କେତେବେଳେ ଯେ ନିଦ ଲାଗି ଆସୁଥିଲା ଜାଣି ପାରୁନଥିଲି । ସାରା ରାତି ଦେହ ଉପରେ ମୂଷା ଆଉ ଅସରପା ଦୌଡ଼ି ବୁଲୁଥାନ୍ତି ।

ଆଉ କଲେଜ ? ଖୁନ୍ଦାଖୁନ୍ଦି ଭିଡ଼ । ଗୋଟାଏ ଗୋଟାଏ ବେଞ୍ଚରେ ସାତ ଆଠ ଜଣ ଠେଲାଠେଲି କରି ବସିବାକୁ ପଡ଼େ, ଯେଉଁଠି ପାଞ୍ଚ ଜଣଙ୍କ ପାଇଁ ବସିବା ଜାଗା ହେବା ଉଚିତ । ନୋଟ୍ ନେବାକୁ ହେଲେ ଖାତା ରଖିବାକୁ ଜାଗା ନାହିଁ । ଲ୍ୟାବରଟରୀର ଅବସ୍ଥା ଆହୁରି ଚମତ୍କାର । ପନ୍ଦର ଜଣ ପିଲା ଯେଉଁଠି କାମ କରିପାରିବେ ସେଠି ପ୍ରାଏ ପଚାଶ ଜଣଙ୍କୁ କାମ କରିବାକୁ ଦିଆଯାଏ ।

ଭବୀ ବୈଜ୍ଞାନିକ ! ସ୍ୱାଧୀନ ଭାରତର ଇତିହାସ ଯେଉଁମାନେ ଗଢ଼ିବେ—ଏହାହିଁ ହେଉଛି ସେମାନଙ୍କର ଲେଖାପଢ଼ା ଶିଖିବାର ଚେହେରା !

ତଥାପି ସାର୍, ଚେଷ୍ଟାରେ ତ୍ରୁଟି କରିନାହିଁ । ଦିଗ୍ଗିରି ଜଣଙ୍କ କଥା କହୁନି—ଆମ ଭଳିଆ ତୁଚ୍ଛ ସାଧାରଣ ଛାତ୍ର ଯିଏ କଲେଜକୁ ଲେଖାପଢ଼ା ଶିଖିବାକୁ ଆସିଥିଲେ, କାହିଁକି ସେମାନେ ତା ପାରନ୍ତିନାହିଁ, କାହିଁକି ସେମାନେ ଫେଲ୍ କରନ୍ତି— ?

ଗୋଟାଏ ଘଟନା କହେ ସାର୍ । ଆଜି ଏ ଅବସ୍ଥାରେ ମୋତେ ହସମାଡ଼େ କଥାଟା ଭାବିଲେ ।

କଲେଜର ଫାଉଣ୍ଡେସନ ଡେ । ଜାକଜମକରେ ସଭା, ପତାକା ଉତ୍ତୋଳନ ବକ୍ତୃତା ପ୍ରଭୃତି ହେଉଛି । ସବୁଠୁ ଭଲ ବକ୍ତୃତା ଦେଇଥିଲେ ଭାଇସ୍-ପ୍ରିନ୍‌ସିପାଲ୍ । କହୁ କହୁ ତାଙ୍କ ଆଖିରେ ଜଳ ଆସି ଯାଇଥିଲା ।

—ଆମେ ଗୋଟାଏ ଷ୍ଟାଟିସ୍‌ଟିକ୍‌ସ ନେଇ ଦେଖିଛୁ—କଲେଜର ଟେନ୍ ପରସେଣ୍ଟ ପିଲା ମୋଟାମୋଟି ସବୁ ବହି କିଣି ପାରନ୍ତି । ଟ୍ୱେଣ୍ଟି

ପରସେଣ୍ଟ କିଛି କିଛି କିଣି ପାରନ୍ତି, ସେଭେଣ୍ଟି ପରସେଣ୍ଟ ଖଣ୍ଡେ ବି ବହି କିଣି ପାରନ୍ତି ନାହିଁ ! ଏ ଅବସ୍ଥାରେ କଣ ଶିକ୍ଷା ଦେବୁଁ ଆମେ ? କାହାକୁ ବା ଦେବୁଁ ? ଏହାର ଯଦି ପ୍ରତିକାର ନ ହୁଏ, ତାହାହେଲେ ଶେଷ ପର୍ଯ୍ୟନ୍ତ ଦେଶ କେଉଁଠି ଯାଇ ପହଞ୍ଚିବ ?

ପ୍ରତିକାର ଅବଶ୍ୟ ଭାଇସ୍-ପ୍ରିନ୍ସପାଲ ଭାବି ରଖିଥିଲେ । କହିଦେଲେ, କଲେଜ ଏଡୁକେଶନ ଗରିବ ଛାତ୍ରଙ୍କ ପାଇଁ ନୁହେଁ ।

ସାର୍, ସେକେଣ୍ଡ ଘଣ୍ଟାର ବେଲ ପଡ଼ିଲା,. ଆଉ ବେଶୀ ସମୟ ମୁଁ ଲେଖି ପାରିବି ନାହିଁ । ଆପଣ ଯଦି ଏତେ ଦୂର ପର୍ଯ୍ୟନ୍ତ ପଢିଥାନ୍ତି, ତାହେଲେ ଆପଣଙ୍କ ଉଦାରତା ଉପରେ ଆଉ ଉତ୍ପାତ କରିବି ନାହିଁ । କରିବା ଠିକ୍ ହେବ ନାହିଁ । ସଂକ୍ଷେପରେହିଁ ମୋର କଥା ଏଥର ଶେଷ କରିବି ।

ମୋ ମା ଲେଖାପଢ଼ା ଜାଣନ୍ତି ନାହିଁ । ଅଂକାବଂକା ହରଫରେ ତାଙ୍କ ଜବାନୀକୁ କକା ଚିଠିରେ ଲେଖିଦିଅନ୍ତି ।

"ତୁମେ ବଡ଼ ହୁଅ ବାବା-ଦେଶର ଦଶର ଜଣେ ହୁଅ । ତୁମ ବାବା ଯେଉଁ ନାମ ରଖି ଯାଇଛନ୍ତି ସେ ନାମର ସମ୍ମାନ ରଖ ତୁମେ । ସ୍ୱାଧୀନ ଭାରତର କର୍ମୀ ହେବାକୁ ହେବ ତୁମକୁ-ସେ କଥା ତୁମେ ଭୁଲି ଯାଆନା ।"

ଭୁଲି ନାହିଁ । ଦିନକ ପାଇଁ ମଧ୍ୟ ନୁହେଁ । କିନ୍ତୁ ସ୍ୱାଧୀନ ଭାରତ ତ ମୋର ଦାୟିତ୍ୱ ନେଲା ନାହିଁ । ମୋର ଶିକ୍ଷାର ପଥ ଖୋଲି ଦେଲା ନାହିଁ । ସେଇ ଗୁଡ଼ାଖୁ ଦୋକାନରେ ଗ୍ଲକିରି କରି-କ୍ଲାସ୍ ନାଆଁରେ ସେଇ ଅର୍ଥହୀନ ହଟଗୋଳ ଭିତରେ, ଗୁଳୁଗୁଳି ଗରମ ଆଉ କୋଳାହଳଭରା ବଡ଼ବଜାର ଗଳି ଭିତରେ ସେଇ ଘରଟିରେ, ହଳଦିଆ ଇଲେକ୍‌ଟ୍ରିକ୍ ଆଲୁଅରେ ମୋ ଆଖି ଆଗରେ ସବୁ ଝାପସା ହୋଇ ଯାଇଛି । ମୁଣ୍ଡ ଭିତରେ ଗୋଟାଏ ଗୋଟାଏ ରକ୍ତର ଢ଼େଉ ଫାଟି ପଡୁଥିଲା ରହି ରହି । ମନେ ହୋଇଛି ଏଠୁ ଛୁଟି ପଳାଏଁ, ଡେଇଁ ପଡ଼େ କେଉଁ ପୁରୁଣା ପୋଖରୀର କଳା ଗହନ ଜଳରେ, ବୁକୁ ଭରି ଟାଣେ ନିଏଁ କାଠଚଂପା ଯୁଇଫୁଲ-ନାଗେଶ୍ୱରର ଗଂଧ, କେଉଁ ବର୍ଷାର କଜଳ ମେଘକୁ ହାତ ବଢ଼ାଇ ଡାକେ, ଆଉ କହେ ଆ' ବୃଷ୍ଟି ଝାଂପି, ଶୁଭଲ ଦେବି ମାପି— ।

କିନ୍ତୁ କଲିକତାରେ ସେଇ ଦୀଘିର ଥଣ୍ଡା କଳା ଜଳ କେଉଁଠି ନାହିଁ ।

ନାହିଁ ନାଗେଶ୍ୱର ଗଙ୍ଗଶିଉଳି ଫୁଲ ଗଂଧ । ଆମ ଘରେ ଭରପେଟ ଖାଇବାର ଧାନ ନାହିଁ । ମିଣିକ ବୁକୁରେ ନିଆଁ ଜଳୁଚି । ବୁକୁରେ କେଉଁଠି ଏକ ଅସଗ ବର୍ଷା ନାହିଁ ।

କେଉଁଠିକି ଯିବି ? କେଉଁଠିକି ପଳାଇବି ?

ଆଶା ଛାଡ଼ିବି ନାହିଁ । ମୁଁ ବଂଚିବି, ମୁଁ ବଡ ହେବି । ମୁଁ ନ ହେଲେ ନୂଆ ବ୍ଲାଷ୍ଟ ଫର୍ନେଶରେ ନିଆଁ ଜଳିବ ନାହିଁ । ହାଇଡ୍ରୋ–ଇଲେକ୍ଟ୍ରିକ୍‌ର ବିଦ୍ୟୁତ ଛୁଟିବ ନାହିଁ, ଆଟମିକ ରିସର୍ଚର କାମ ବାକୀ ପଡ଼ି ରହିବ, ରିଫାଇନାରୀର ପେଟ୍ରୋଲିୟମ,ପେଟ୍ରୋଲ, କିରସିନୀ, ବ୍ଲୁ ଅୟେଲ, ପାରଫିନ୍‌ର ରୂପ କିଛି ସଂଭବ ହେବନାହିଁ । ସେଇ ମୟଦାନକର ମଂଚ ମୋତେ ଜୋର କରି କାଢି ନେବାକୁ ହେବ । ମୁଁ ଯେ ସ୍ୱାଧୀନ ଭାରତର ବୈଜ୍ଞାନିକ ।

ସାର୍‌, ସବୁ ସ୍ୱପ୍ନ । ବଂଗଦେଶର କଲେଜରେ ମୋ'ପରି ଅସଂଖ୍ୟ ଛାତ୍ର ସ୍ୱପ୍ନ ନେଇହିଁ ବଂଚି ରହନ୍ତି –ସ୍ୱପ୍ନ ଘୋରରେ ଚଲ ବୁଲ କରନ୍ତି । ତାପରେ ଦିନେ ସ୍ୱପ୍ନ ଭାଂଗେ । ଦେଖିବାକୁ ପାଆନ୍ତି—

ସାର୍‌, ପଢା ଶୁଣା କିଛି ହିଁ ହେଲ ନାହିଁ । କେତେବେଳେ ପଢିବି ? କେଉଁଠୁ ବହି ପାଇବି ? ସାମାନ୍ୟ ବହି ବା ନୋଟ୍ ଯୋଗାଡ଼ କରିପାରେ, ହଡଦିଆ ବଲବ୍‌ଟାର ଅସ୍ପଷ୍ଟ ଆଲୁଅରେ ସେ ସବୁର କୌଣସି ଅର୍ଥ ହିଁ ରହେ ନାହିଁ । ଗୋଟିଏ ବଡ଼ ପ୍ରୋକ ପରି ସେଟା ଆଖି ଆଗରେ ବିଲିବିଲି ହୋଇ ହଲୁଥାଏ । ତାପରେ କେତେବେଳେ ସ୍ନାୟୁ ଗୁଡ଼ାକ ଭାଙ୍ଗିପଡ଼େ— ସବୁ ଚେତନା ଅଚଳ ହୋଇଯାଏ । ଧୂଆଁପତ୍ର, ଗୁଡ ଆଉ ମୁଷା–ଅସରପା–ଚଟୋଟିଆ ଗଂଧରେ ଭର ଘରେ ପାହାନ୍ତି ଆଲୁଅରେ ଯେତେବେଳେ ଜାଗିଉଠେ ସେତେବେଳେ ଯେମିତି ମୁଣ୍ଡରେ କୋଡ଼ିଏଟା ମନର ଭାର ଲୁଚି ବସିଛି ତା'ପରେ ଅଠଟା ନ ବାଜୁଣୁ ହିସାବର ଖାତ ।

ଆନୁଆଲର୍ ଖାତା ଦେଖାହୁଏନା ।

କଲେଜ ଫି ଦିଆ ହୋଇଥିଲେ ୧ଟ୍ କରି ପ୍ରମୋଶନ । ପ୍ରିଟେଷ୍ଟ ଦେଲିନି । କିମିତି ଦେଇଥାନ୍ତି ? ତାପରେ ଆଗେଇ ଆସିଲ ଟେଷ୍ଟ ।

ସାର୍‌, ଏଇଠି ନିଜର ଅପରାଧର କଥା କବୁଲ କରେଁ । ଟେଷ୍ଟ

ଯେତେବେଳେ ନିକଟ ହୋଇ ଆସିଲା ସେତେବେଳେ ମନ ଭିତରେ ସବୁବେଳେ ଏକ ଅଲିଭା ଚିତା ଯେମିତି ଜଳିବାକୁ ଲାଗିଲା ମୋର । ବହି—ମାତ୍ର କେତୋଟା ବହି ଯଦି ମୋର ଥାଆନ୍ତା । ତାହେଲେ ଫାର୍ଷ୍ଟ ଡ଼ିଭିଜନ୍ ନ ହେଲା ପଛକେ ଅନ୍ତତଃ ସେକେଣ୍ଡ ଡ଼ିଭିଜନ ମୁଁ ପାଆନ୍ତି ନିଶ୍ଚୟ, ଆଉ ମାଥେମେଟିକ୍ସ୍‌ରେ ଗୋଟାଏ ଲେଟର ।

ଗରିଯିବେ ନାହିଁ ସାର୍, ମୋ ମନର ଅବସ୍ଥା ବୁଝି ଦେଖନ୍ତୁ । ମୁଁ ଯେମିତି ପାଗଳ ହୋଇଗଲି । ତାପରେ —

ତା'ପରେ ମୁଁ କଲେଜରେ କ୍ଲାସମେଟମାନଂକ ବହି ଚୋରି କରିବା ଆରଂଭ କଲି ।

ଆପଣ କଣ ଭାବୁଛନ୍ତି ମୋ ସଂବଂଧରେ ? ଭାବନ୍ତୁ । ମୁଁ କଣ ଏ କଥା ବିଶ୍ୱାସ କରିପାରେ ଯେ ଶେଷରେ ମୁଁ ଚୋର ବନିଗଲି । ମୋ ବାବା ରକ୍ତ ଦେଇ ଦେଶର ସ୍ୱାଧୀନତା ଆଣିଛନ୍ତି, ତାଙ୍କ ପୁଅ ହୋଇ ଶେଷରେ ଚୋରି କଲି ମୁଁ ?

ସାର୍, ଯଦି ପାରନ୍ତି ବିଚାର କରିବା ପୂର୍ବରୁ ଥରେ ଭାବି ଦେଖନ୍ତୁ; ପିଲାମାନେ କାହିଁକି ବହି ଚୋରି କରନ୍ତି, କାହିଁକି ପରୀକ୍ଷାରେ କପି କରନ୍ତି; କେଉଁ ପ୍ରଶ୍ନ କଠିନ ମନେ ହେଲେ କାହିଁକି ଏପରି ହିଂସ୍ର ଅଶୋଭନ ଭାବେ ପରୀକ୍ଷା ହଲ୍‌ରୁ ବାହାରି ଆସନ୍ତି ।' ଏ ଗୁଡ଼ାକ ଅନ୍ୟାୟ, ଅତ୍ୟନ୍ତ ଅନ୍ୟାୟ । ଏ ଜିନିଷ କଦାପି ହେବା ଉଚିତ ନୁହେ । କେହି ଏ ସବୁ ସମର୍ଥନ ମଧ୍ୟ କରିବ ନାହିଁ । ତଥାପି କାହିଁକି ହୁଏ ? କାହିଁକି ଏପରି ପିଲାମାନେ ଭୁଲ ପଥରେ ଗୋଡ଼ ବଢାନ୍ତି, ଏ ପରି ବିକୃତ ଆଚରଣ କରନ୍ତି ? ଗୋଟାଏ ପାଂଶ୍‌—ଫେଇଲର ସେମାନଙ୍କର କେତେଦୂର ଆସେ ଯାଏ, କେବେ କଣ ତାହା ଚିନ୍ତା କରିଛନ୍ତି ?

ଘରର ଅବସ୍ଥା ଖରାପ—କକାଙ୍କ ଚିଠିରୁ ଜାଣିଲି, ଇଆରି ଭିତରେ ପେଟର ଭାତର ଭାବନା ଦେଖା ଦେଇଛି । ନୂଆ ଧାନ ଉଠୁ ନ ଉଠୁଣୁ ମାଉ ଲକ୍ଷ୍ମୀଙ୍କ ପାଖର ଶେଷ ଟଙ୍କାଟା ପର୍ଯ୍ୟନ୍ତ ଯାଇଛି – ହୁଏତ ଗୋରୁ ବିକ୍ରୀ କରି ସାମାନ୍ୟ କିଛି ପଠାଯିବ ।

ଲେଖି ଦେଲି, ଗୋରୁ ବିକିବ ନାହିଁ, ମୁଁ ଯେମିତି ଭାବେ ହେଉ ଯୋଗାଡ଼ କରିବି ।

କିନ୍ତୁ କେଉଁଠୁ ଯୋଗାଡ଼ କରିବି ? ଷ୍ଟୁଡେଂଟସ୍ ଏଡ୍ ଫଣ୍ଡରୁ ପନ୍ଦର ଟଙ୍କା ସାହାଯ୍ୟ ମିଳିଲା । ତା'ପରେ ?

ସରକାର-କର୍ତ୍ତା ମୋତେ ଡ଼ାକି ପଠାଇଲେ । କହିଲେ, ପରୀକ୍ଷା ଫ ପାଇଁ ଭାବନା କଣ ? ମୁଁ ପଚାଶ ଟଙ୍କା ଦେବି ତମକୁ ।

ଏତେ ଦୟା !

ସାର୍, ଏତେଦିନକେ ବୁଝିଛି, ଦୟା ଖାଲି ଦୟା ନୁହେଁ, ଯା ପଛରେ ଏକ ଭୟଙ୍କର ଦାବୀ ଥାଏ । ପୃଥିବୀର ଦୟାର ନାମ ରକ୍ଷିବାକୁ ହୁଏ ସାଂଘାତିକ ଭାବରେ ।

ବିଶ୍ୱାସ କରିବେ ସାର୍ ? ଅଙ୍କ—ଫିଜିକ୍ସ କେମିଷ୍ଟ୍ରୀ—ବଂଗଳା ଇଂରାଜୀ କିଛି ପଢ଼ି ପାରି ନାହିଁ । ପଚାଶ ଟଂକା ବିନିମୟରେ ରାତି ପରେ ରାତି ଅନିଦ୍ରା ହୋଇ ଜଳାପୋଡ଼ା କରୁଥିବା ଆଖି ଆଉ ମଥାରେ କୋଡ଼ିଏ ମହଣ ପଥରର ଭାର ନେଇ ପ୍ରତି ବିନ୍ଦୁ ରକ୍ତ ଦେଇ ମୋତେ ଖାଟିବାକୁ ହୋଇଛି । କର୍ତ୍ତାଙ୍କ ଖାତା ତିଆରି କରିଛି ।

କି ଖାତା ? ଇନ୍‌କମ୍ ଟ୍ୟାକସ ଫାଙ୍କି ଦେବାର ଖାତା । ଗୋପନ ଖାତା । ପଚାଶ ଟଙ୍କାର ଦାୟ ପ୍ରତ୍ୟେକଟି ସ୍ନାୟୁ ଦେଇ, ପ୍ରତି ବିନ୍ଦୁ ରକ୍ତ ଦେଇ ମୋତେ ମିଟାଇବାକୁ ହୋଇଛି ।

ତଥାପି ପରୀକ୍ଷା ଦେବାକୁ ଆସିଥିଲି । ତଥାପି ଆଶା ଛାଡ଼ିନି । ଭାବିଥିଲି. ଗୋଟାଏ ମିରେକଲ ଘଟିଯିବ । ଗ୍ରେରି କରି ହାତ ପାକଳ କରିଛି । କପି କରିବା ପାଇଁ ବହିର ପୃଷ୍ଠା । ଚିରି ବି ଆଣିଥିଲି । କିନ୍ତୁ ମିରେକଲ୍ ତ ଘଟିଲା ନାହିଁ । ଜାମା ତଳୁ ଏତେଟିକେ କାଗଜ ମୁଁ ବାହାର କରି ପାରିଲି ନାହିଁ ଫାଷ୍ଟ ପେପରରେ । ସେକେଣ୍ଡ ପେପର୍, ଥାର୍ଡ ପେପର୍—ମୋ ଆଖି ଆଗରେ ସବୁ ନାଚି ବୁଲିଲେ । ଖାଲି ସରକାର କୋଂପାନୀର ଜାଲ୍ ଖାତା ଘୂରି ବୁଲିବାକୁ ଲାଗିଲା ମୁଣ୍ଡ ଭିତରେ । ପ୍ରତ୍ୟେକ ଛାତ୍ର ଆଉ ଇନଭିଜିଲେଟର-ମାନଙ୍କ ମୁହଁ ଗୋଟାଏ ଗୋଟାଏ ଜମା-ଖରଚର ହିସାବଖାତା ପରି ଦେଖାଗଲା ।

ଏଇ ବଂଗଳାର ଖାତା ମୋର ଚରମ ଖାତା ।

ସାର୍, ଓ୍ୱାର୍ଣିଂ ପଡ଼ିଲା । ଆଉ ପାଂଚ ମିନିଟ୍ ପରେ ହଁ ଖାତା ଛଡ଼ାଇ ନେବେ । ମୋର କଥା ବି ଶେଷ ହୋଇଗଲାଣି । ଆଜି ସଂଧ୍ୟା ପରେ ହଁ

ଯେ କୌଣସି ଗୋଟାଏ ଟ୍ରେନ୍‌ର ଚକ ତଳେ ମୋର ଯେତେ ମନର ଭର ସବୁ ଭଳେଇ ଯିବ ।

ମୁଁ ବଂଚିବାକୁ ଚାହିଁଥିଲି ସାର୍, ମୁଁ ସ୍ୱାଧୀନକୁମାର, ସ୍ୱାଧୀନ ଭାରତବର୍ଷ ପାଇଁ ବଂଚିବାକୁ ଚାହିଁଥିଲି । କାହିଁକି ମୁଁ ବଂଚି ପାରିଲି ନାହିଁ ? ମୋ ପକ୍ଷରୁ ହଜାର ହଜାର ଛାତ୍ରଙ୍କ ପାଇଁ ସେଇ ପ୍ରଶ୍ନ ଆପଣଙ୍କ ଆଗରେ ରଖିଗଲି । ଜବାବଟା ଆପଣ ଭାବି ଦେଖିବେ ।

କାପୁରୁଷ ପରି ଆତ୍ମହତ୍ୟା କରୁଛି ! ନା-ସାର୍-ନା । ଏଇ ମୋର ପରାଜୟ ନୁହେଁ—ମୋର ପ୍ରତିବାଦ । ବୟାଳିଶର ସେପ୍‌ଟେମ୍ବର ମାସରେ ଏକ ପ୍ରଳୟ ରାତିରେ ମୋ ବାବା ଦେଶ ମାଟିରେ ବୁକୁର ରକ୍ତ ଢାଳି ଦେଇଥିଲେ । ମୋର ରକ୍ତ ବି ଦେଶର ଲକ୍ଷ ଲକ୍ଷ ଛାତ୍ରଙ୍କ ପାଇଁ ସେଇପରି ଗୋଟାଏ ଇତିହାସର ସୂଚନା ରଖିଯିବ । ସେ ଇତିହାସ କେବେ ଗଢି ଉଠିବ ମୁଁ ଜାଣେନା । ଆପଣ ଜାଣନ୍ତି ସାର୍ ? ଆପଣ କହି ଦେଇ ପାରିବେ ?

ପ୍ରଣାମ ।

# ଛୋଟ କଥା

## ସନ୍ତୋଷକୁମାର ଘୋଷ

ସେ ମୋ ପିଠି ଉପରେ ନଇଁ ପଡ଼ିଥିଲା । ତା ନିଶ୍ୱାସ ମୋ କାନରେ ଲାଗୁଚି । ମୋ ହାତର ଆଂଗୁଠିଗୁଡ଼ାକ କିମିତି ନିର୍ଜୀବ ହୋଇଗଲା । ତାକୁ କହିବାର ଶୁଣିଲି, "ମିଛଟାରେ ଖାଲି ପୁରୁଣା କାଗଜ ଘାଂଟୁଛ ଧୂଳି ଉଡ଼ାଉଛ । ସରସିଜ, ସେଇ ଗଳ୍ପଟା ତୁମେ କୌଣସି ମତେ ଖୋଜି ପାଇବ ନାଇଁ ।"

ତା ମୁହଁ ମୋ କାନକୁ ଲାଗି । ଅସ୍ୱାଭାବିକ ଗଳା, ଫଁସ୍-ଫସ୍ । ଭୂତ ଭଳି । କଂଠନାଳୀରେ ଛେଦା ଥିଲେ ଏମିତି ଆବାଜ ବାହାରେ ।

କହିଲି, ତା ହେଲ ପଛକେ ଲେଖାଟା ମୋର ଗୁହି ।

—ଗୁହି ଇ ? ସେ ଯେମିତି ଥଟ୍ଟା କରି ଉଠିଲା । କାହିଁକି ଗୁହି ?

ମିଳାଇ ଦେଖନ୍ତି । ଖାଁଟ ସେଇଟା ନା ବିଜୁମାଇଁଙ୍କର ଯେଉଁ ଗଳ୍ପ ତମକୁ କହିଲି ସେଇଟା ।

—ସେ ଗଳ୍ପରେ କଣ ଅଛି ?

—ସବୁ ମନେ ନାଇଁ । ଝଡ଼ିବର୍ଷା ରାତି । ଶୋଁ ଶୋଁ ହାଓ୍ୱା, ଆମ ଘର ବାରଣ୍ଡାରେ ବସି ଭିକାରୀ ଝିଅଟାକୁ ବଗଟାକୁ ଉପରକୁ ମୁହଁ କରାଇ ଚାର୍ଜ ଦେଲା । ବଗଟା ତଥାପି କାନ୍ଦୁଥିଲା ନେଳିଆ ହୋଇ ଯାଉଥିଲା । ଶେଷରେ ଘାଡ଼କୁ ସିଆଡ଼କୁ ଅନାଇ ଝିଅଟା ତା ପିଂଧା ଲୁଗା ଖୋଲି ତିନିଗୁଣି ପରସ୍ତ କରି ଛୁଆଟାକୁ ଘୋଡ଼େଇ ଦେଲା । ଏଇ ଛବିଟା ଖାଲି ମନେ ଅଛି ।

ଶୁଣୁ ଶୁଣୁ ସେ ଖାଲି ଜୋରରେ ହସୁଥିଲା । କଳା ଆଲଖଲାଟା ଫୁଲି ଉଠି ରାତିର ରଂଗ ସଙ୍ଗରେ ମିଳାଇ ଯାଉଥିଲା । ତାକୁ ଆଖିରେ ଆଖି

ମିଳାଇ ଅନାଇବାକୁ ସାହସ ହେଉ ନଥିଲ । କ୍ଷୁବ୍ଧ କଣ୍ଠରେ କହିଲି, ଏ ଗଳ୍ପ କଣ ହସର ?

ସେ କହିଲା, ହାସ୍ୟକର । ତା ତୁମେ ବି ଜାଣ । କେତେ ଦିନ ଆଗର ଲେଖା କହତ ।

—ବର୍ଷ ଗଣି କହି ପାରିବି ନାହିଁ ଯେତେବେଳେ ଏକ ପଇସାର ଚିନାବାଦାମ ନେଇ ପୂରା ଘଣ୍ଟାଏ କଟାଇ ଦିଆଯାଇ ପାରୁଥିଲା । ଚା' ଦୋକାନରେ ଦିପଇସାର ପିଆଲା ନେଇ ଦୁଇ ଘଣ୍ଟା । ଦିଅଣାରେ ବିପହରେ ଧର୍ମତାଲଠାରୁ ଆଲିପୁର ଘୁରି ବାଲିଗଞ୍ଜ ଅବଧି ଯାଇ ପାରୁଥିଲୁଁ । ସେତେବେଳେ—

ହାତ ଟେକି ସେ କହିଲା, ଥାଉ, ଆଉ ଦରକାର ନାହିଁ । ସରସିଜ, ଏ ଗଳ୍ପଟା ତୁମେ ଆଉ ଖୋଜନା ।

—ପାଇବି ନାହିଁ କାହିଁକି ?

—ନାହିଁ ବୋଲି ।

ସେ ଟିକିଏ କାଶିଲା ସେଇ ଅତି ପ୍ରାକୃତ ଢଙ୍ଗରେ । ମୁରୁକି ହସିଲା । ଅସଲ କଥା ଗଳ୍ପଟା ମୋ ପାଖରେ ଅଛି । ଏଇ ଦେଖ ।

କହି ସେ ତାର କଳା ଝୁଲା ଭିତରେ ହାତ ଭୁଗାଇ ଦେଲା । ଗଙ୍ଗ ଗୁଡ଼ିକରେ ଢେଉ ଖେଳିଗଲା ଗର୍ତ୍ତର ଶରୀରରେ ମିଳାଇ ଗଲା । କଣ ଗୋଟାଏ ଜିନିଷ ବାହାର କରି ସେ ମୋ ଆଖି ଆଗରେ ଝୁଲାଇଲା । ମିଟିମିଟି ଆଲୁଅରେ ଦେଖି ପାରୁ ନଥିଲି । ମନେହେଲା, ଗୋଟାଏ ବିଲେଇ ଛୁଆ, ଶୁଖିଲା ଶୁଖିଲା ଆଖି ଦିଇଟା ଛିଟିକି ବାହାରି ଆସିଛି, ମଣି ଦିଇଟା ଦରମଲା ।

ହାତ ବଢ଼ାଇ ଧରି ନେଇ ବି ମୁଁ ହାତ ଟାଣି ନେଲି । ସେ ହସୁଥିଲା ।

—ଦେଖିଲ ତ, ତୁମେ ଆଉ ଏଟାକୁ ନେବାକୁ ଚାହୁଁନ । ଯାହାକୁ ଏତେ ଭୟ ତାକୁ ବଂଚାଇବ କିମିତି ?

ସେ ପୁଣି କିମ୍ଭୂତ ଜୀବଟାକୁ ତା ଆଇଖାଲା ତଳେ ଢୁକାଇଦେଲା ।

—ଏ ମୋ ପାଖରେ ଥାଉ ।

ଏକ ଦୃଷ୍ଟିରେ ଚାହିଁ ଭୟେ ଭୟେ ପଚାରିଲି, ତୁମେ କିଏ ?

ଜବାବ ନଦେଇ ଧୀରେ ଧୀରେ ସେ ପଛେଇଗଲା । ତା ଆଲଖାଲାଟା କଂପି ଉଠିଲା । ତାପରେ ଗତି ମଧ୍ୟରେ ମିଳାଇ ଯାଇ ସ୍ଥିର ହେଲା । ଚାହିଁ ଦେଖେଁ ସେ ବି ନାହିଁ । ସେଠୁ ତାକୁ ଚିହ୍ନିଲି । ଏ ସମୟ । ସେଇ ସମୟ ଯେତେବେଳେ—

ଏକ ପଇସାରେ ଚିନାବାଦାମ, ଇତ୍ୟାଦି । ଯେତେବେଳେ ଗ୍ୟାସ ଲାଇଟ୍‌ର ଖୁଣ୍ଟରେ ବିଜ୍ଞାପନ ଦିଆଯାଉଥିଲା ଘର ଖାଲିଠାରୁ ଚାକିରି ଖାଲି ପର୍ଯ୍ୟନ୍ତ । ପାତ୍ର ପାତ୍ରୀଙ୍କଠାରୁ ଛାତ୍ର ଛାତ୍ରୀଙ୍କ ଖବର ପର୍ଯ୍ୟନ୍ତ । ଯେତେବେଳେ ମମତାମୟୀ ମା ସେଇ ଭିକାରିଣୀ—

ସମୟ ମୋତେ ଏକାକର ଆଲୁଅରେ ଦେଖାଇଲା ବୋଲି ଘଟାନାକୁ ମାଡ଼ ଖାଇ କାନ୍ଦି ଉଠୁଥିବା ବିଲେଇ ଛୁଆ ପରି ଦେଖାଗଲା । ମୋତେ ସିଏ ତାର ଅଙ୍ଗରଖା ଭିତରେ ଭୁଁକି ମାରିବାକୁ ଯଦି ଦେଇଥାନ୍ତା, ଯଦି ସେତେ-ବେଳର ଆଖି ଓ ବୟସ ଫେରାଇ ଦେଇଥାନ୍ତା, ଆଉ ମନ ଆଉ ଆଲୁଅ, ଆଉ ସେତେବେଳର ଗଂଧ ମୋହ ସବୁକିଛି, ତେବେ ଏଇ ସୁନ୍ଦର ନିଲଜ ଭିକାରୀ ଛିଅଟାକୁ ପୁଣି ଜୀବନ୍ତ ଦେଖି ପାରନ୍ତି । ଏଇ ଆଲଖାଲା ଭିତରେ ସବୁ ଜୀଅନ୍ତା, ବାହାରକୁ ଟାଣି ଆଣିଲେ ମଡ଼ା ।

—ତାପରେ କଣ ହେଲା ସରସିଜ ?

—ତାପରେ ବିଲୁମାଇଁ ମୋତେ ଖୁବ୍ ଥଣ୍ଡା ଗଳାରେ କହିଲେ, ଆସ । ଟ୍ୟାକ୍‌ସିର ମିଟର ଦେଖି ଭଡ଼ାଟା ନୁଟେଇ ଦେଇ ମୁଁ ଓହ୍ଲାଇ ପଡ଼ିଲି । କଂଗ୍ରୁ ନର୍ଦ୍ଦମା, ମନେଇବା ଭଳି ଗୋଟାଏ ଡିଆଁ ମାରିଲି । ଶାର୍କସ୍କିନ୍‌ରେ ତଥାପି ଛିଟାଏ କାଦୁଅ ଲାଗିଗଲା ।

ଏ ଗଳ୍ପ ଟା ଯେପରି ଟ୍ୟାକ୍‌ସିଟାର ମାପରେ ତିଆରି । ଡ଼ିଆସିଲୀ ଖୋଳ ଆଉ ବାକ୍‌ସ ପରି ମାପସହି । ତୁକି ମନେହେଲା ମୁଁ ଯେପରି ଚିହ୍ନେ । ଅନ୍ତତ ଏଇ ଗଂଧଟାକୁ । ଆଗରୁ ଏକଦା ରହିଛି । ହଠାତ୍ ପୁରୁଣା ପ୍ରଣୟିନୀର ଘରେ ପଶିଲେ ଯେମିତି ଲାଗେ । ଅଡ଼ୁଆ ଅଡ଼ୁଆ ଲାଗେ । ପୁଣି ଚିହ୍ନା ଚିହ୍ନା । ଠିକ୍ ଆଗେ ଯେଉଁ ବ୍ୟବହାର କରିଛି ଇଲାଗେ ତା କରି ପାରିବି ନାହିଁ ।

ଅସ୍ୱସ୍ତି ହେବ । ମୁହଁ ମୁହିଁ ହେବ, ତଥାପି ମୁହଁ ପାଖକୁ ମୁହଁ ନେବ ନାହିଁ, ଟିକିଏ ଅନ୍ତରାୟ ରହିଯିବ ।

ବାଧା କେଉଁଠି-ମୋର ବୟସ ? ହାଓ୍ୱାଇ ଶାର୍ଟ ପକେଟରେ ଯେଉଁ ନୋଟ୍‌ଗୁଡ଼ାକ ଫୁଲି ବାହାରି ଆସନ୍ତି ସେଗୁଡ଼ାକ ? ଜୂତା ହଳକ ଆଉ ଟିକିଏ କମ ମଶ୍ ମଶ୍ କଲେ ତ ଚଳିଥାନ୍ତା ।

ବିଜୁମାଈ ଗୋଟାଏ ଲଣ୍ଠଣ ନେଇ ଆସିଲେ । କହିଲି, ଦରକାର ନାହିଁ । ମୁଁ ଠିକ୍ ଯାଇ ପାରିବି ।

—ପରିମଳ କେମିତି ଅଛି ମାଈ ?

କହୁ କହୁ ଯେଉଁ ଘର ଭିତରେ ଯାଇ ପହଞ୍ଚିଲି, ଦେହରେ ଜର ଥିଲେ ଝର୍ ଝର୍ କରି ଝାଳ ବୋହି ଜର ଛାଡ଼ିଯିବ । ଦରଜା ଗୋଟାଏ ନିଶ୍ଚୟ ଥିଲା-ନୋହିଲେ ଢୁକିଲି କିପରି; ଝରକା ଭଳି କିଛି ଆଖିରେ ପଡ଼ିଲା ନାହିଁ । —ପରିମଳ କିମିତି ଅଛି ?

ବିଜୁମାଈଙ୍କର ଶୁଖିଲା ମୁହଁ ଦେଖି ହିଁ ବୁଝିବା ଉଚିତ ଥିଲା ଯେ ପ୍ରଶ୍ନଟା ନିରର୍ଥକ ।

ମାଈ ଆଂଗୁଠି ଦେଇ ଭିତରର ଘରଟା ଦେଖାଇଦେଲେ । ଗୋଟାଏ ଟୁଲ୍ ଥିଲା ବସିଲି । ଯଦିଚ ମୋ ପେଟର ଚର୍ବିରେ ଖ୍ୱପ ପଡ଼ିଥିଲା । ଛାତିର ବୋତାମ ଗୁଡ଼ାକ ଖୋଲି ଦେବି କି ନାହିଁ ଭାବୁଥିଲି ଏବଂ ଜୁତା ପିଂଧି ଢୁକିବା ଠିକ୍ ହୋଇଚି କି ନାହିଁ ତାହା ସ୍ଥିର କରିବାପାଇଁ ଘର ଭିତରେ ଅନ୍ୟ କାହାର ଜୁତା-ତା ଛିଣ୍ଡା ପୁରୁଣା ଯାହା ହେଉ ନା କାହିଁକି, ଅଛି କି ନାହିଁ ବୋଲି ଖୋଜୁଥିଲି ।

— ଗ୍ଲ ଆଣେ ।

ସମ୍ବିତ ଫେରିଲା । ଦେଖିଲି ବିଜୁମାଈ ପଗ୍ରୁଛନ୍ତି । କହିଲି, ଆଣନ୍ତୁ । ଘର କୋଣରେ ଗୋଟାଏ କପ୍‌କୁ ପିଂପୁଡ଼ି ଘ୍ୱୁଟୁଥିଲେ ! ଗୋଟାଏ ଦିଟା ଅସରପା ଭିତରୁ ମୁଂଡ଼ ଟେକି ଉଙ୍କି ମାରୁଥିଲେ । କପ୍‌ଟାକୁ ଗୋଟେଇ ନେଇ ବିଜୁମାଈଙ୍କୁ ଗ୍ଲଲିଯିବାର ଦେଖିଲି ।

(ସେରସିଁଜ ତା ପରେ ? କିଛି ଲୁଖ୍ୱଅ ନାହିଁ ।)

—ନା ଲୁଖ୍ୱଛବି ନାହିଁ । ଦେଖ ତୁମେ କିଏ ଜାଣେନା, ହୁଏତ ମୋର

ଆତ୍ମା, କ୍ରୁଏତ ବିବେକ, କିଂବା ଫାଦର କନଫେସର । ସବୁ କହିବି ବୋଲି ହିଁ ତ ତମକୁ ଡ଼ାକିଚି । ତମ ପାଖରେ କବୁଲ କରୁଚି ଗୁ' ମୁଁ ଖାଇ ପାରିନାଇଁ କଣ ହୋଇଥିଲ ଜାଣ ? କପ୍‌ଟା ହାତ ବଢାଇ ନେଉଚି, ହଠାତ୍ ଖସି ପଡ଼ିଲ । ମୋର ଧୋବ ଧଉଳା ସାର୍କସ୍କିନ୍‌ରେ ଆଉ କେତ୍‌ଟା ଛିଟା ଲଗିଲ । ଲଜ୍ଜିତ ବିଜୁମାଇଁ କହିଲେ ଆହା ! ଜଲଦି ଛିଣ୍ଡାକନା ଆଣିବାକୁ ଛୁଟିଲେ । ମୁଁ କହିଲି, ଇସ୍ ।

ହସୁଛ ? ତୁମେ କଣ କହିବ ମୁଁ ଜାଣେ । ଇଚ୍ଛା କରି କପ୍‌ଟା ପକାଇ ଦେଇଚି । କିମ୍ବା ମୋର ପ୍ରକୃତି ପକାଇ ଦେଇଚି । ଟିକିଏ ଆଗରୁ ଏଇ ଏଁଆଲଟାରେ ଅସରପା ଦେଖିଥିଲି । ତା ଛଡ଼ା ଅସନା ମସନା ଘରେ ଚୁଆର ଗଂଧ, ଏଇ ଘରେ ବସି ମୋ ଗଳାରେ କିଛି ଢୁକନ୍ତା ନାଇଁ ।

ଏହା ନେଇ ମୋ ମନରେ ପରେ ଯେଁ ଅନୁତାପ ହୋଇ ନଥିଲ ତା ନୁହେଁ । କାର୍ଯଟା ରୁଚିକର ହୋଇ ନାଇଁ । ବିଶ୍ରୀ-ଛୋଟ ଲୋକଙ୍କ ପରି ହୋଇଥିଲା । ଜାଣେନା, ବିଜୁମାଇଁଙ୍କ ଆଖିରେ ଧରା ପଡ଼ିଥିଲା କି ନାଇଁ କଥାଟା । କଣ କରିବି ? ଆମେ ସମସ୍ତେ ତ ପ୍ରବୃତ୍ତିର ଦାସ । ଯଦି ବାନ୍ତି ବାନ୍ତି ଭବ ଆସିଥାଏ ସେଟା କଣ ମୋର ଦୋଷ ? ଆମେ କଣ ହାକୁଟି ଉଠା ରୋକି ପାରୁଁ ? କି ଛିଙ୍କ ବନ୍ଦ କରି ପାରୁଁ ?

(ତମର ମନେ ପଡ଼ିଲ ନାଇଁ ଯେ ବେଶୀ ନୁହେଁ ମାତ୍ର ଦଶ ବାର ବର୍ଷ ତଳେ ତୁମେ ଯାଠରୁ ବି ତଳ ପାହାଚରେ ଥିଲ ? ଏରକମ ଗନ୍ଧ, ଏଇ ଘର, ତମର ନିଶ୍ୱାସ ପ୍ରଶ୍ୱାସ ପକ୍ଷରେ ସହଜ ଥିଲ ।)

—ଥିଲ, ଏକ୍ଷଣି ନାଇଁ । ଦେଖ, ଆମେ ଏକ ଅଭ୍ୟାସରୁ ଅନ୍ୟ ଅଭ୍ୟାସକୁ ଉତ୍ତୀର୍ଣ୍ଣ ହେଉଁ । ଜନ୍ମାନ୍ତର ପରି । ଦିନେ କୋଟାଏ ଅନ୍ଧକୂପ ସଙ୍ଗେ ଏକ ହୋଇ ମିଶିଥିଲି, ତା ବି ଯେମିତି ଠିକ୍, ସେଥିରୁ ବାହାରି ଆସିଚି ଇଏ ବି ସେମିତି ଠିକ୍ । ବାସ୍ତବ ଅବସ୍ଥା ଅକପଟରେ ସ୍ୱୀକାର କରଯାଇପାରେ । ଦଶବର୍ଷର କାମିଜ କୋଡ଼ିଏ ବର୍ଷରେ ଯଦି ଦେହରେ ନଯାଏ ତେବେ ଦୋଷ କାହାର ? ଯାହାର ଦେହ ତାର ନିଶ୍ଚୟ ନୁହେଁ । ସମୟର ।

ପାଖ ଘରୁ ଘଡ଼ ଘଡ଼ ଶବ୍ଦ ଆସୁଥିଲ । ସେ ଆଡ଼କୁ କାନ ଦେଇ ବିଜୁମାଇଁଙ୍କ ମୁହଁକୁ ଜିଜ୍ଞାସୁ ଆଖି ଟେକି ରହିଲି ।

-ପରିମଳ । ଛାତିରେ କଫ ଜମିଛି । ଶ୍ୱାସକଷ୍ଟ, ତେଣୁ ସବୁବେଳେ

ଏମିତି ଶବ୍ଦ ହୁଏ । ବର୍ତ୍ତମାନ ତ ଟିକିଏ ଶୋଇଛି ଯାହାହେଉ ।

ଚଟାଣଟା ସନ୍ତସନ୍ତିଆ ମନେହୁଏ । ମନେହୁଏ କେତେକାଳରୁ ଜମିଥିବା ଶିଉଳିରେ ତିଆରି । ଘରର ଲେବଲ୍ ଘଣ୍ଟାଠାରୁ କେତେ ହାତ ତଳେ । ଯେମିତି ଗୋଟାଏ ଶୃଙ୍ଖଳ ଚୌବାଚ୍ଚା—

(ସରସିଜ, ଆଉ କୁହ ନାଇଁ । ଏହାପରେ କଣ କଣ କହିବ ଜାଣେ । କଡ଼ିକାଠରେ ଉଇ, ଛିଣ୍ଡା ଶେଯ, ଦରଜା କଣରେ ଅଳନ୍ଧୁ, ଏଇ ସବୁ ତ । ନା, ଭୁଲ ହେବ ନାଇଁ କିନ୍ତୁ ବର୍ଣ୍ଣନାରେ ପ୍ରାଣ ରହିବ ନାହିଁ । ଯେଉଁ ଜୀବନର ତୁମେ କେହି ନୁହଁ, ତାର ଛବି ଆଙ୍କିବାକୁ ଯାଅନା ।)

ନିଭି ନିଭି ଆସୁଥିବା ଲଣ୍ଠନଟା ଠକ୍‌ଠକ୍ କରୁଥିଲା । ସିଆଡକୁ ଅନାଇ ପଚାରିଲି, ପରିମଳର ବେରମ କେତେଦିନର ମାଇଁ ?"

—ଆଜି କି ବାଇଶ ଦିନ ।

—ଡାକ୍ତର କଣ କହୁଛନ୍ତି ?

—ଠିକ୍ ଖବରେ ଡାକ୍ତର ଦେଖାଇ ପାରୁଛି କେଉଁଠି ଯେ କହିବେ । ହତଭଗୀର ହାତରେ କିଛି ନାଇଁ । ଗଳା ଖାଲି ହାତ ଖାଲି । ତା ଆଡକୁ ଅନାଇ ହେବନାଇଁ ସରସିଜ । ବାହା ସମୟରେ ଯେଉଁ ଦିଗୁରି ଭରି ସୁନା ଦେଇଥିଲି ଏଇ କେତେ ବର୍ଷରେ ସବୁ ଯାଇଛି ।

—ଆପଣ କେବେ ଆସିଲେ ମାଇଁ ?

—ବୁଧକୁ ବୁଧ ଆଜିକି ଆଠ ଦିନ । ପେଟର ଝିଅ ତ—ଖବର ପାଇ ଆଉ ରହି ପାରିଲି ନାଇଁ । ସରସିଜ, ତୁମେ ତ ଜାଣ, ଝୁକୁ ମୋର କେତେ ପ୍ରାଣର ।

—ଜାଣେ ମାଇଁ ।

—ହାତରେ ଯାହାଥିଲା ତାକୁଇ ସାଉଁଟି ନେଇ ଛୁଟ ଆସିଲି । ସିଆଡର ହାଲ୍ ତ ସବୁ ଜାଣ ବାପା । ଟୁକୁ ଏଥର ପରୀକ୍ଷା ଦେବ—ଫୀ ଜମା ଦିଆ ହୋଇନି ।

—ବୁଝିଚି ମାଇଁ ।

—ଆଖିରେ ଅଞ୍ଚଳ ଚାପି ବିଜୁ ମାଇଁ ମୋତେ ଅଞ୍ଚଳର ଛିଣ୍ଡା ଦିଗଟା ଦେଖାଇଲେ ।

—ସରସିଜ, ଝିଅମାନଙ୍କର ଫ୍ରକ୍ ସବୁ ଛିଣ୍ଡି ଗଲଣି । ଦି'ମାସର ଘରଭଡ଼ା ବାକୀ । ଛବିଶ ଦ୍ବୁଣେ ବାଆନ ଟଙ୍କା । ବେଳାଏ ଭାତ, ବେଳାଏ ରୁଟି, ସେଥିରେ ବି ମାସର ସବୁ ରେଶନ୍ ଆଣି ପାରେନା । ତଥାପି, ବିଳୁମାଈ କହିଲେ, ତଥାପି ଖବର ପାଇ ଯାହା ହାତରେ ଥିଲ ତାକୁଇ ନେଇ ଗ୍ଭଲି ଆସିବାକୁ ହେଲ । ପରିମଳର ପ୍ରାଣ ତ ଆଗେ । ପରେ ଆଉସବୁ ।

ଅଞ୍ଚଳର ଗଣ୍ଠି ଖୋଲି ବିଳ୍ମାଈ ଗୋଟାଏ ନୋଟ ବାହାର କଲେ —ମୋଡ଼ି ମୋଡ଼ି ହୋଇ ଏକ ପୁରୁଣା ନୋଟ୍ । ଗୋଟିଏ ପାଦ ଆଗେଇ ଆସିଥିଲେ ବିଳ୍ମାଈ ସ୍ଥିର ଦୃଷ୍ଟି, ମୁଁ ପଛେଇ ଯାଉଥିଲି । ଟେର ପାଇଥିଲି କାହିଁକି । ବିଳ୍ମାଈ ନୋଟ୍‌ଟା ମୋ ହାତରେ ଗୁଞ୍ଜି ଦେବେ । ଦେଲେ ମଧ୍ୟ । ତାଙ୍କ ହାତ କମ୍ପୁଥିଲା । ଗଳା ମଧ୍ୟ ।

ମୋ ହାତରେ ଆଉ କିଛି ନାଇଁ ସରସିଜ । ଦେଖ, ଯଦି ପରିମଳର ଇଞ୍ଜେକସନ୍‌ଟା ଏଥିରେ ଆଣି ଦେଇପାର । ଫେରିଯିବା ପାଇଁ ଗାଡ଼ିଭଡ଼ା ଟଙ୍କାଟାହିଁ ଅନେକ କଷ୍ଟରେ ବଞ୍ଚାଇ ରଖିଥିଲି ।

ଟଙ୍କା ମୁଁ ନେଇ ନାଇଁ, ନେଇ ପାରିନାଇଁ । ଗ୍ଭଲି ଆସିଲି । କିନ୍ତୁ ସେଟା ବଡ଼ କଥା ନୁହେଁ । ମୋର ସେଇ ଗଳ୍ପଟାର କଥା ମନେ ପଡ଼ିଲା । 'କ୍ରୋଡ଼ପତ୍ର' । ଭିଖାରୀ ଝିଅଟା କପଡ଼ା ଖୋଲି କୋଳର ପିଲାଟାକୁ ଢାଙ୍କି ଦେଇଥିଲା ।

(ଖୋକୁ ମାନେ ଉଷା ସଙ୍ଗରେ ତମର ସେଦିନ ଦେଖା ହୋଇନି ସରସିଜ ?)

—ହୋଇଥିଲ । ଲଣ୍ଠନ ଧରି ଉଷାହିଁ ପଛେ ପଛେ ଆସିଥିଲ ଗଳିର ଶେଷ ପର୍ଯ୍ୟନ୍ତ ।

ସେଠି ପହଞ୍ଚି ମୁଁ ଛିଡ଼ା ହେଲି । ଲଣ୍ଠନର ଆଲୁଅ ଆଉ କାଳି ତା ଦେହଟାକୁ ଟୁକୁରା ଟୁକୁରା କରି ଭାଗ କରି ନେଇଥିଲେ । —ଇଏ କି ଚେହେରା ହୋଇଚି ତମର ଉଷା ? ଉଷା ହସିଲ । ମୁହଁ ଫେରାଇ ନେଲ । —ବେମାରୀରେ ଭୋଗି ଉଠିଲି ଯେ । ତା ଛଡ଼ା ଯାଙ୍କର ଏଇ ବେଗମ । ରୋଜ ହିଁ ଏକ ରକମ ରାତି ଜାଗିବାକୁ ହୁଏ ।

ମୁଣ୍ଡରେ ଓଢ଼ଣା ନଥିଲ । ଉଷାର ବାଳ ଉଡୁଥିଲା ଲଣ୍ଠନର ଫିତା

କଂପି କଂପି ଯାଚ ଶରୀରରେ, ମୁହଁରେ, କାଂଧରେ, ଗାଲରେ, ଆଖିରେ ଛାଇ ଆଲୁଅ ଆଂକୁଥିଲା ପୁଣି ହସିଲା ଉଷା । କଣ ଦେଖୁଚ, ପେଚୁଣୀକୁ ? ଏଇ କେତେ ବର୍ଷରେ ମୁଁ ଏକବାରେ ପେଚୁଣୀ ହୋଇ ଯାଇଚି ନା ?

କହିବା ଉଚିତ ଥିଲା, ନା, ତୁମେ ସେମିତି ଅଛ । କିନ୍ତୁ ମୁଁ ଚୁପ୍ କରି ରହିଲି ।

ଉଷା ହଠାତ୍ ଥରେ ମୁହଁ ଚିପି ହସିଲା ତମର କିଛି ଚେହେରା ଫେରିଚି ।

'ତୁମେ ଆହୁରି ମୋଟା ହୋଇଚ' ଏଇ କଥାଟାକୁ ଉଷା ଘୁରେଇ କହିଲା,ନା କଣ ତା ସାବ୍ୟସ୍ତକରି ନ ପାରି ମୁଁ ରୁମାଲରେ ମୁହଁ ପୋଛିବାକୁ ଲାଗିଲି । ମୋର ଶାର୍କସ୍କିନ୍, ମୋର ହାଓ୍ୱାଇ ଶାର୍ଟ ସେତେବେଳେ ମୋ ଦିହକୁ ବିଂଧୁଥିଲା ।

ଉଷାକୁ କହିବାର ଶୁଣିଲି, ଆମର ଏଇ ଗଳିରେ କିନ୍ତୁ ଟ୍ୟାକ୍ସ ମିଳେ ନା, ଜାଣ ? ସାଗ ଗତି ଛିଡ଼ା ହେଲେ ବି କିଛି ଲାଭ ନାଇଁ ।

ଅପ୍ରତିଭ ମୁଁ ଇଙ୍ଗିତଟା ବୁଝି ପାରି ଜଲଦି ଜଲଦି ଗସ୍ତାକୁ ବାହାରି ପଡ଼ିଲି । ପୁଣି ଆସିବି ବା କାଲି ଆସିବି ଏଇପରି କିଛି ହୁଏତ ଅସ୍ପଷ୍ଟ ଗଳାରେ କହିଥିବି ।

ସେ କହିଲା, ଖାଇବା ଜିନିସ ଢଙ୍କା ହୋଇ ରହିଲା ସରସିଜ । କିଛି ଛୁଇଁଲ ବି ନାଇଁ

କହିଲି, ନା । ଏଇ ବାରଣ୍ଡାରେ ବସି ମୋତେ ସିଗାରେଟଟା ଶେଷ କରିବାକୁ ଦିଅ ।

ସେ ହସିଲା । ଖୁବ୍ ବିଶ୍ରୀ ଭଙ୍ଗିରେ ମୋତେ ପଛରୁ ଜାକୁଡ଼ି ଧରିଲା । ଅନ୍ଧକାର ରଂଗର ହାତ ମୋ ଗଳାରେ । ଚିପି ଧରିବ ନା କଣ ?

ତାକୁ, ଯାହାର ମୁହଁ ମୁଁ ଦେଖିପାରୁ ନଥିଲି, କିନ୍ତୁ ସେ ଅଛି, ମୋତେ ଜଡ଼େଇ ଧରିଚି । କହିବାର ଶୁଣାଗଲା, କଣ ହେବ ଶେଷ କରି । କିଛିଟା ପାଉଁଶ ହୋଇ ରହିବ, କିଛିଟା ଧୂଆଁ ହୋଇ ଉଡ଼ିଯିବ । ତାଛଡ଼ା ଏଇ ଦୁଇ ଘଂଟାରେ କେତୁଟା ସିଗାରେଟ ଉଡ଼ାଇ ଦେଲଣି, କହ ଦେଖି । ତା'ଠୁ ବରଂ ଖାଇବା ଜିନିସ ଗୁଡ଼ାକର ଢାକୁଣି ଖୋଲି, ପେଟକୁ କିଛି ଯାଉ ।

—କହିଛି ତ ମୋର କ୍ଷୁଧା ନାଇଁ ।

—ନାହିଁ କାହିଁକି ?

—କାହିଁକି ତା ତୁମେ ଜାଣ । ମୋ ମନ ଖରାପ । ଉଷାକୁ ଆଜି ଯେ ଦେଖି ଆସିଲି । ସେ ଘରେ ଢୁକିଲେ ହାଲ୍ ଦେଖି କାନ୍ଦି ପକାଇବ । ଜାଣ, ଉଷାର ସ୍ୱାମୀ ପରିମଳର ଖୁବ୍ ବେରାମ-ବଂଚିବାର ଆଶା ନାଇଁ । ଉଷା ହାତରେ ଟଙ୍କା ନାଇଁ, ହାତରେ ପଟେ ଚୁଡ଼ି ବି ନାଇଁ । ସେ କହିଲ, ଜାଣିଲି । ସରସିଜ, ସେଥିପାଇଁ ତୁମର ମନ ଖରାପ ?

ତାର କହିବା ଭଂଗିଟା କେମିତି ବଂକା ଟଂକା ।

କହିଲି, କହିବାକୁ ମୋତେ ବଡ଼ କଷ୍ଟ ହେଉଥିଲା । ଉଷା ମୋର କିଏ ତମେ ଜାଣନା । ସେଥିପାଇଁ ଏମିତି କହୁଚ । ଗୋଟାଏ ଭୁଲର କେତେ ବଡ଼ ଦାମ ଆଜି ତାକୁ ଦେବାକୁ ହେଉଛି ?

ହୋ ହୋ କରି ସେ ହସି ଉଠିଲା । ସେଇ ହସ ଭଂଗା ଗ୍ଲାସ୍‌ର କାଚ କଣା ପରି ମୋତେ ଫୋଡ଼ିଲା । ହସ ବନ୍ଦ କରି କହିଲା ସେ ଛାତିରେ ହାତ ଦେଇ କହତ ସରସିଜ, ସତରେ ତମ ମନ ଖରାପ କି ନା । ତମକୁ ଠେଲି ଦେଇ ପରିମଳକୁ ଯେ ଉଷା ବାହା ହୋଇଥିଲା, ସେ ଯେ ସୁଖୀ ହୋଇନି ଆଜି ଅନ୍ଧକାର ଘରେ ଢୁକୁଉଛି, ଏଥିରେ ତୁମେ କ'ଣ ଟିକିଏ ହେଲେ ଖୁସି ହୋଇ ନାହଁ ?

କିଛି ଉତ୍ତର ଦେଲି ନାଇଁ । ଦେଇ ଲାଭ ନାଇଁ ଇଯେ ଛତର । ଇଏ ଅବିଶ୍ୱାସୀ । ଉଷାକୁ ଇଏ ବୁଝିନାଇଁ । ବିଜୁମାଇଁଙ୍କ କଥା ଯଦି ଯାକୁ କହେ ତାହେଲେ କଣ ବୁଝିବ ?

ଝିଅ ଉପରେ ବିଜୁମାଇଁଙ୍କର ଅସମ୍ଭବ ଟାଣ । ଶେଷ ଦଶ ଟଙ୍କିଆ ନୋଟ୍‌ଟା କାନି ଗଣ୍ଠିରୁ ଖୋଲି ଦେଲେ-ଏକଥା ଶୁଣି ବି ହୋ ହୋ କରି ହସି ଉଠନ୍ତା ।

ସରସିଜ, ପରଦିନ ସକାଳେ ତ ତୁମେ ପୁଣି ସେଠିକି ଯାଇଥିଲ ?

—ଯାଇଥିଲି । ଟ୍ୟାକ୍ସିଟା ସେଦିନ ଆଉ ଗଳି ଭିତରକୁ ନେଇ ନାଇଁ । ହାତରେ ଔଷଧ, ପକେଟରେ ଫଳ, ଧୋତିର କୁଚ ସଂଗଳି

ଭଷା ଘର ଦରଜାରେ ଯାଇ ଛିଡ଼ା ହେଲି । ଗ୍ରିପଟର ଘରଗୁଡ଼ାକ ସେତେବେଳକୁ କଂଗ୍ର କୋଇଲରେ ନିଆଁ ଧରଉଥାନ୍ତି ।

ଦରଜା ଖୋଲି ଆଜି ବି ଠିଆ ହେଲେ ବିଜୁମାଇଁ ?

—ପରିମଳ କେମିତି ଅଛି ମାଇଁ ।

—ଏକଇ ରକମ । ଆସ ।

ଦିନର ଯେତେ ଟିକିଏ ଆଲୁଅ ଘର ଭିତରେ ଆସିବାକୁ ପରମିଟ୍ ପାଇଥିଲ ସେଥିରେ ଘରର ଦାରିଦ୍ର୍ୟ ଆହୁରି ପ୍ରକଟ, ବର୍ଣ୍ଣନା କରିବାକୁ ଗ୍ରହେଁନା । ପୁରୁଣା ଗାମୁଛା, ଛିଣ୍ଡା ଲୁଙ୍ଗି, କାନ୍ଥରେ ଦାଗ, ମଇଳା ଶେଯ, ମାଛ, ଏ ସବୁ ତ ଥିଲ । ଥିବା କଥା । ଆଗ ଦିନର ମୋଡ଼ାଟାକୁ ଖୋଜି ପାଇଥିଲି । ଦେହରେ ଧୋତି ପଂଜାବୀ । ତେଣୁ ଆଜି ବସିବାରେ ଅସୁବିଧା ହୋଇନି ।

ଔଷଧଟା ବିଜୁମାଇଁଙ୍କ ହାତକୁ ବଢାଇ ଦେଲି । ଫଳର ଠୁଙ୍ଗାଟାକୁ ମଧ୍ୟ । ବିଜୁମାଇଁ ମୁହଁ ଗ୍ରପା ହସରେ ଉଜଳ ହୋଇ ଉଠିଲ । ସେଟାକୁ ସେ ଲୁଗ୍ରଇବାକୁ ମଧ୍ୟ ଚେଷ୍ଟା କରି ନଥିଲେ ।

ପାଖ ଘରରୁ ଘଡ଼ ଘଡ଼ ଉଠୁଥିଲ । ମୋ କାନ କେଉଁ ଆଡ଼କୁ ଅନ୍ଦାଜ କରି ନେଇ ବିଜୁମାଇଁ କହିଲେ-କାଲି ସାଗ ଗତି ଏଇପରି ଭବରେ କଟିଛି ମା ଝିଅ ପାଳି କରି ଗତି ଜାଗିଛୁ । ଝିଅକୁ ଉଠାଇ ଥରେ ମୁଁ ବସିଛି ଆଉ ଭଗବାନଙ୍କୁ ଡାକିଛି-ଏଇ ଗତିଟା କୌଣସି ମତେ ପାର କରି ଦିଅ । ସେ ଘରେ ଝିଅ ମୁଣ୍ଡ ପିଟି ପିଟି ରକ୍ତ ବାହାର କରିଛି । ଏ ଘରେ ରୋଗୀର ଗଅଁ ଗଅଁ ଶବଦ୍ । ସେ କି ବିଭୀଷିକା ତମକୁ ବୁଝାଇ ପାରିବି ନାଇଁ ।

ବିଜୁମାଇଁ ଟିକିଏ ରହିଲେ ।

ମଝିରେ ମଝିରେ ଖୁକୁ ଏ ଘରକୁ ଛଟି ଆସୁଥିଲ । ତା ମୁହଁକୁ ଗ୍ରହିଁ ହେଉ ନଥିଲ । ଆଖି ଦିଟା ଯେମିତି ଜଳୁଚି, କଳା ତ ଦିଶୁଚି । କପାଳଟାରେ ରକ୍ତ ମଖାମଖି କରି ପକାଇଛି । ମୁଁ ଛାତିରେ ହାତ ବୁଲଇଛି ପରିମଳର, ବେଡ୍‌ପ୍ୟାନ ଦେଇଛି । ଖୁକୁକୁ ରୋଗୀ ପାଖରେ ବେଶୀ ରହିବାକୁ ଦେଇନି । ଦେଖୁଛ ତ ଯାର ଦେହର ହାଲ୍-କେତେ ଖଣ୍ଡ ହାଡ଼ ଛଡା ଆଉ କିଛି ନାଇଁ । କପାଳରେ ଯାହା ଅଛି ତାକୁ କେହି ଖଣ୍ଡନ କରି ପାରିବ ନାଇଁ । ତଥାପି ଆଖି ଆଗରେ ଯେତେ ସଦୟ ଅଛି ଟିକିଏ

ଅଟକାଇ ରଖେଁ । ହଜାରେ ହେଲେ ତ ମୁଁ ମା ।

ମୋ ଦେହରେ କଂଟା ଫୋଡ଼ୁଥିଲା । ମାଇଙ୍କ ଆଖି କୋଣରେ ... ' ବାଳଗଢାକ ଖଡ଼ିଗୋଳା ପାଣିରେ ଧୂଆ ହେଲା ପରି କହି ଉଠିଲି ଆପଣଙ୍କ ଦେହ ତ ଭଲ ନୁହେଁ ମାଇଁ । ଏପରି ରାତି ଜାଗିଲେ ଯେ ଆପଣ ପଡ଼ିବେ ।

ବିଜୁମାଇଁ ହସିଲେ । ହସକାନ୍ଦ ମିଶା ଏକ ଜଳଛବିର ଛାପ ଖେଳିଗଲା ତାଙ୍କ ମୁହଁରେ । —ମୋତେ ବାଦ୍ ଦିଅ । ମୁଁ ତ ହିସାବର ବାହାରକୁ ଯାଇଛି । ଡାକରା ଆଜି ବି ଆସିପାରେ, କାଲି ବି ଆସିପାରେ । ତା ନହେଲା ଆଜିଇ ଆସିଲା । ତଥାପି ଜାଣିଯିବି, ଆଉ ଭୟ ନାଇଁ, ହତଭାଗୀକୁ ସର୍ବନାଶରୁ ବଞ୍ଚାଇଛି ।

(ସରସିଜ, ଏଇ ଗୋଟାଏ କଥାରୁ ତୁମେ ବିଜୁମାଇଁଙ୍କୁ ନୂଆ ଆଲୁଅରେ ଦେଖି ପାରିଲ ?)

—ପାଇଲି । ସେଇ ମୁହୂର୍ତ୍ତରେ ବିଜୁମାଇଁଙ୍କୁ ଆଉ ଗରିବ ମନେ ହୋଇନି । ଭାଗ୍ୟର ତାଡ଼ନାରେ ଅଭାବର ଚଣାଓଟରେ ସବୁକିଛି ବିଜୁମାଇଁଙ୍କ ଭଳି ଲୋକମାନେ—ତଥାପି ଯେତିକି ରଖି ପାରିଛନ୍ତି ତାର ଦାମ କିଛି କମ୍ ନୁହେଁ । ଇଏ ଆଉ ଗୋଟାଏ ଜୀବନ—ଏଠି ଜଣେ ଆଉ ଜଣଙ୍କ ଉପରେ ଭର ଦେଇ ଛିଡ଼ା ହୋଇଥାଏ । ଦୁଇଟି ହାଲକା ତାସ୍ ଯେମିତି ପିଠିକୁ ପିଠି ଲଗାଇ ଛିଡ଼ା ହୋଇ ରହନ୍ତି । ରୋଗୀ ପାଇଁ ଭଡ଼ାକରା ନର୍ସ ରଖିବାର ଉପାୟ ଏମାନଙ୍କର ନାହିଁ ସତ, କିନ୍ତୁ ଥିଲେ ବି ରଖନ୍ତେ ନାଇଁ । ଏଇ ଜୀବନକୁ ଦିନେ ମୁଁ ଚିହ୍ନିଥିଲି । ପଣି ଚିହ୍ନିଲି ।

ଘୁପା ଗଳାରେ ପଗ୍ଭରିଲି, ମାଇଁ, ଉଷା ଏଇନା କେଉଁଠ ?

ବିଜୁମାଇଁ କହିଲେ - ଶୋଇଛି । ସାରା ରାତି ଏଘର ସେଘର କରିବା ପରେ ଏଇ ଟିକିଏ ଆଗରୁ ଆଖିପତା ପକାଇ ପାରିଛି । ତାକୁ ଆଉ ଉଠାଇନି । ସବୁ ନିଦ ତ ଜନ୍ମପାଇଁ ଭୁଲିବାକୁ ବସିଚି ।

ବାହାରେ ବୋଧହୁଏ ଗଳି ମୁଣ୍ଡରେ ଗୋଟାଏ କୁକୁର ଅନେକ କ୍ଷଣ ଧରି ସ୍ୱର ମେଲାଇ କାନ୍ଦୁଥିଲା । ଆଙ୍ଗୁଠିରେ ସେ ଆଡ଼କୁ ଇସାରା କରି ବିଜୁମାଇଁ ଫୁସ୍‌ଫୁସ୍ କରି କହିଲେ, ଏଇ ଶୁଣ । ଖେଳ୍ ଡାକେ । ସକାଳେ, ଦିପହରେ, ଉପରବେଳା, ମଝିରାତିରେ ବି । ସେତେବେଳେ ସେଟା ବାହାର

ଦରଜା ଉପରକୁ ଉଠିଆସେ । ଏ ବୋବାଙ୍କି ବଢ଼ ଅଲକ୍ଷଣ । ପରିମଳ ବୋଧହୁଏ ବଂଚିବ ନାଇଁ ବାବା !

କଣ ହେଲ, ଏଇ ଗୋଟାଏ କଥା ମୋତେ ନିଜ ପାଖରେ ବଡ଼ ଅପଦାର୍ଥ, ଅସହାୟ କରିଦେଲ । କଷ୍ଟରେ ଉଠି ଛିଡ଼ାହୋଇ ଗଳାର ସବୁ ଜୋର୍ ମିଳାଇ କହିଲି–ବଂଚିବ ମାଇଁ । ଆମେ ବଂଚିବା ।

କଥାଟାକୁ ଠିକ ଧରି ନପାରି ବିଜୁମାଇଁ ଏକ ଦୃଷ୍ଟିରେ ମୋ ଆଡ଼କୁ ଅନାଇ ରହିଲେ । କହିଲି—ବଂଚିବ ମାଇଁ । ଆମର ଯେତେଟିକେ ସାଧ୍ୟ ଆମେ କରିବା । ମାଇଁ, ଥରେ କାଶି ଗଳାରୁ ସଙ୍କୋଚ କାଢ଼ିଦେଇ କହିଲି–ମାଇଁ କିଛି ମନେ କରିବେ ନାଇଁ । ହାତରେ ବିଶେଷ କିଛି ନାଇଁ । ଜାଣନ୍ତିତ ଆଜିକାଲି ଲକ୍ଷ୍ନୌରେ ରହେ, ଏ କେତେଦିନ ହୋଟେଲରେ ଅନେକ ପଇସା ଖରଚ ହୋଇଯାଇଛି । ତଥାପି ସାମାନ୍ୟ କିଛି ୟାର ଔଷଧ ଫଳ, ଚିକିତ୍ସା ବାବଦ ଦେଇ ଯିବାକୁ ଚାହେଁ ।

ପକେଟରେ ହାତ ଦେବାକୁ ଯାଉଥିଲି । ବିଜୁମାଇଁ ମୋତେ ନିରସ୍ତ କଲେ । ସ୍ପଷ୍ଟତ ସେ ଅଭିଭୂତ । ତାଙ୍କ ଆଖି ଛଳଛଳ କରୁଥିଲ । ହାତ ଟେକି କହିଲେ ବାବା ଟିକିଏ ରହ । ନା ନା ମୋତେ ନୁହେଁ । ଖୁକୁକୁ ଡାକିଆଣେ । ଯା ଦେବାର ତା ତୁମେ ନିଜ ହାତରେ ତାକୁଇ ଦିଅ । ତାହେଲେ ଖୁକୁ ଜାଣିବ, ସେ ଏକବାରେ ଏକା ନୁହେଁ, ତା ପାଖରେ ଛିଡ଼ା ହେବାକୁ ବନ୍ଧୁ ଅଛି ।

ବିଜୁମାଇଁ ଏକରକମ ଛୁଟି ଭିତରକୁ ଯାଉଥିଲେ । ହଠାତ୍ ରହିଗଲେ । ମୁହଁରେ କେତୋଟି ରେଖା ଫୁଟିଲ । ଥରେ ଫେରି ମୋ ଆଡକୁ ଚାହିଁଲେ । ସେ ଛବିଟା ମୁଁ ସ୍ପଷ୍ଟ ଦେଖିବାକୁ ପାଉଛି । କଣ ଯିମିତି କହିବେ ମାଇଁ, କଣ ଗୋଟାଏ କଥା ଯେମିତି ଓଠ ପାଖକୁ ଆସି ଶୁଖି ଯାଉଛି ।

ବିଜୁମାଇଁ ଫେରି ମୋ ପାଖକୁ ଆସିଲେ, ଯେତେଟା ପାଖକୁ ଆସିହେବ । –ସରସିଜ, (ମୋଇଁ ଖୁବ୍ ଆସ୍ତେ କହିବାର ଶୁଣିଲି) ସରସିଜ, କେତେ ?

ପ୍ରଥମେ ମାନେ ବୁଝି ନଥିଲି । ପରେ ଆଉ ଥରେ ଯେତେବେଳେ ଏକଇ ସ୍ୱରରେ ପଚାରିଲେ କେତେ, ସେତେବେଳେ ସଙ୍ଗେ ସଙ୍ଗେ ହିଁ ଅର୍ଥବୋଧ ହେଲ । ସେଇ କୁକୁରଟା ତେବେ ବି ବୋବାଉ ଥିଲ କାନ୍ଦଣା ସ୍ୱରରେ । ଫିନ୍‌ଫେନ୍ ପଂଜାବୀର ଛାତି ପକେଟରୁ ଗୋଟାଏ ନୋଟ ବାହାର କଲି । ·ଶହେ ଟଙ୍କା । କହିଲି, ମାଇଁ, ଆପାତତ–

କଥାଟା ଶେଷ କରିପାରି ପାରିଲି ନାହିଁ

—ଶ—ହେ ! ପଲକରେ ବିଜୁମାଈଙ୍କୁ ବଦଳି ଯିବାର ଦେଖିଲି । ଗଳାର ସ୍ୱର ବି ତାଙ୍କର ବୋଲି ଚିହ୍ନିବା କଠିନ ।

—ଏକ—ଶ—ଟଙ୍କା । ବିଜୁମାଈ ଧରା ଗଳାରେ କହୁଥିଲେ, ସବୁଟା ତାକୁ ଦେବ ବାବା ' ତାଠୁ ବରଂ ଭଙ୍ଗେଇ ଆଣ—ମୁଁ—ମୁଁ—ମୋତେ କିଛି ଦେବନାହିଁ ?

ନିଆଁ ମୁହଁରେ ଧରା କାଗଜ ପରି ବିଜୁମାଈ ଟିକିଏ ଟିକିଏ କରି ଭିତରେ କୁଂଚକୁଂଚ ହୋଇ ଯାଉଥିଲେ । ଶହେ ଟଙ୍କା - ଏଇ ଗୋଟାଏ ଶବ୍ଦ ଯେପରି ଷ୍ଟିମର ପରି ନଇ ବୁକୁରେ ସୁଅକାଟି ଚାଲିଗଲା । ଗୋଟାଏ ଦିଗରେ ଉଷା, ତାର ଅପରିଚ୍ଛନ୍ନ ଛୋଟ ଘର, ମରଣାପନ୍ନ ସ୍ୱାମୀ, ଅଭାବ, ଆସନ୍ନ ବୈଧବ୍ୟ; ଅନ୍ୟ ଦିଗରେ ବିଜୁମାଈଙ୍କ ନିଜର ସଂସାର—ବାକୀ ଘରଭଡ଼ା' ଝିଅମାନଙ୍କ ଫ୍ରକର କପଡା, ରେଶନ—ଯେଉଁ ସଂସାରକୁ—ସ୍ନେହରେ ଅନ୍ଧ ହୋଇ ବିଜୁମାଈ ଭୁଲିଯାଇଥିଲେ । ଦିଟା ସ୍ପଷ୍ଟ ବିଭାଗ ହୋଇଗଲା ।

(—'କ୍ରୋଡ଼ପତ୍ରରେ ଗଳ୍ପଟା, ସେଇ ଭିକାରୁଣୀ ଝିଅଟାର କାହାଣୀ ଖୋଜି ପାଇଲେ ତୁମେ କଣ କରନ୍ତ ?)

—ଛିଣ୍ଡାଇ ପକାନ୍ତି ।

ସେ କହିଲା, ହୁଁ । ଅନେକ ସମୟ ଚୁପ୍‌କରି ରହିଲା । ତା ମୁହଁର ରହସ୍ୟମୟ ହସଟା ମିଳାଇ ଯାଇଥିଲା । ଶେଷରେ ଆସ୍ତେ ଆସ୍ତେ କହିଲା, ସରସିଜ, ତମେ ଖାଲି ବିଜୁମାଈଙ୍କୁ ଦେଖିଲ, ଘରଟା ଆଡକୁ ଅନାଇଲ ନାହିଁ । ଅସଲ ଗ୍ରବିକାଠି ତ ଏଇଘରେ !' ଗୋଟାଏ ଖଟିଆ ପକାଇଲେ ଯେଉଁଘର ଭରିଯାଏ, ସେ ଘରେ କେତେ ବଡ଼ ମାପର ମନ ଧରିବ ?—ଏ ହିସାବ ଯଦି ଜଣା ନଥାଏ ସରସିଜ, ତେବେ ଏ ଗଳ୍ପ ତୁମେ ଲେଖିବାକୁ ଯାଅ ନା ।

# ଗଛ

## ଜ୍ୟୋତିରିନ୍ଦ୍ର ନନ୍ଦୀ

ଗୋଟାଏ ଗଛ । ଅନେକ ଦିନର ଗଛ । ଗଛଟା ସୁନ୍ଦର କି ଅସୁନ୍ଦର କେହି ପ୍ରଶ୍ନ କରେ ନାହିଁ ।

ଗଛ ତା ମନକୁ ଛିଡ଼ା ହୋଇଚି । ଏହାର ପ୍ରୟୋଜନ ଅଛି କି ନାହିଁ କେହି ମୁଣ୍ଡ ଖେଳାନ୍ତି ନାହିଁ ।

ମଣିଷ ଯେମିତି ମୁଣ୍ଡ ଉପରେ ଆକାଶ ଦେଖେ, ମେଘ ଦେଖେ, ଗୋଡ଼ ତଳେ ଘାସ ଦେଖେ, ସେମିତି ସେମାନେ ଆଖି ଆଗରେ ଗୋଟାଏ ଗଛ ଛିଡ଼ା ହୋଇଚି ଦେଖୁଛନ୍ତି । ସନ୍ଧ୍ୟାରେ ଦେଖୁଛନ୍ତି, ଦିପହରେ ଦେଖୁଛନ୍ତି, ସକାଳେ ଦେଖୁଛନ୍ତି । କିନ୍ତୁ କେବଳ ଆଖିରେ, ହୃଦୟ ନେଇ ଅନୁଭୂତି ଦେଇ ଦେଖା ନୁହେଁ ।

ବା ଏଇମିତି ଗୋଟାଏ ଗଛକୁ ବୁଝିବାକୁ ହେବ କେହି କେବେ ମନେ କରନ୍ତି ନାହିଁ ।

ଦିନ ପରେ ଦିନ ଯାଏ, ଋତୁ ପରେ ଋତୁ କଟେ; ବର୍ଷ ପରେ ବର୍ଷ ଯାଏ ଆସେ—ଗଛ ଜାଗାରେ ଗଛ ଛିଡ଼ା ହୋଇ ରହିଛି ।

ବର୍ଷାରେ ପତ୍ର ସବୁ ବଡ଼ହୁଏ, ପୁଷ୍ଟ ହୁଏ, ଶରତରେ ପତ୍ର ଗୁଡ଼ାକ ଭରୀ ହୁଏ, ମୋଟା ହୁଏ, ସବୁଜ ରଙ୍ଗ ଅତିରିକ୍ତ ସବୁଜ ହୋଇ କଳାର ପାଖାପାଖି ଯାଇ ପହଞ୍ଚେ, ହେମନ୍ତରେ ସେଇ ସବୁଜ-କଳା ଗଭୀର ରଙ୍ଗ ଧୂସର ହୋଇ ଉଠେ । ତାପରେ ଶୀତରେ ହଳଦିଆ ଫିକା ନିରକ୍ତ ପ୍ରକୃତିର ପାଣ୍ଡୁର ଚେହେରା ଧରି ପତ୍ର ସବୁ ଝରି ଯାଆନ୍ତି । ଗଛ ବିରକ୍ତ ହୁଏ ।

ସେତେବେଳେ ବି ଗଛ ଗଛ ଥାଏ ।

ଗଛର ଚେହେରା ସେତେବେଳେ ଖାଲି କାଠର ଚେହେରା ହୁଏ ।

ଛୋଟ କାଠ, ବଡ଼ କାଠ, ସରୁ କାଠ, ଲଇ କାଠ, ମଣିଷର ଆଙ୍ଗୁଠି ପରି ଟକୁରା ଅଜସ୍ର କାଠ-କାଠିର ଗୋଟାଏ ଜବରଦସ୍ତ ଫର୍ମା ହୋଇ ଛିଡ଼ା ହୋଇଛି ।

କିନ୍ତୁ ତା ବୋଲି କଣ କେହି ଗଛ ଉପରେ ରାଗ କରେ ? କରେ ନ । କାରଣ ମେଘ ମେଦୁର ଆକାଶ ତଳେ ଅରଣ୍ୟର ଚେହେରା ଧରି ଗଛ ଯେତେବେଳେ ଛିଡ଼ାହୋଇ ରହେ ସେତେବେଳେ ମଣିଷ ତାକୁ ଯେଉଁ ଆଖିରେ ଦେଖେ, ଶୀତର ଶୁଖିଲା ଆକାଶ ତଳେ ସରୁ-ମୋଟା କେତେଗୁଡ଼ାଏ କାଠ-କାଠିହୋଇ ଛିଡ଼ାହୋଇ ରହିଲେ ବି ସେଇ ଆଖିରେ ଦେଖେ । ସେଥିପାଇଁ କହୁଥିଲି ଉପର ଠାଉରିଆ ଭାବେ ଦେଖେ । ମନ ଦେଇ ଦେଖିବା ନୁହେଁ, ବୁଝିବା ନୁହେଁ । ତାହେଲେ ଫାଲଗୁନ ମାସରେ ଲାଲ ସବୁଜ ମିଶା ନୂତନ ପତ୍ରର ସମାରୋହ ଦେଖି ମଣିଷ ନାଚି ଉଠନ୍ତା ଅଥବା ବୈଶାଖରେ ଅଜସ୍ର ମଞ୍ଜରୀ ମଥାରେ ନେଇ ଗଛଟା ଆଶ୍ଚର୍ଯ୍ୟ ଗୋଲାପୀ ଆଭାରେ ଆକାଶ ଆଲୁଅ କରି ପକାଉଛି ଦେଖି ଆନନ୍ଦରେ ଚିତ୍କାର କରି ଉଠନ୍ତା । କିନ୍ତୁ ତା କିଏ କରେ ନାହିଁ, ଏ ପର୍ଯ୍ୟନ୍ତ କରି ନାହିଁ ।

ଦି ତିନିଟା ଘର ମଝିରେ କେତେ ହାତ ପଡ଼ିଆ ଜମି ଉପରେ ଗଛଟା ଡାଳପତ୍ର ମେଲି ଛିଡ଼ା ହୋଇ ରହିଛି ବୋଲି ସେମାନଙ୍କର ଟିକିଏ ସୁବିଧା ହୁଏ, ଏତିକି ଖାଲି ସେମାନେ ଜାଣନ୍ତି । ଏ ଘରର ମଣିଷ ଜାଣେ, ସେ ଘରର ମଣିଷ ଜାଣେ, ଆଖପାଖର ଦୁଇ ତିନିଟା ଘରର ଲୋକେ ଟିକିଏ ଅଧେ ସୁବିଧା ନେବାପାଇଁ ମଧ୍ୟ ଗଛ ପାଖକୁ ଆସନ୍ତି, ଯେମିତିକା ସକାଳ ହେଲେ ଖବରକାଗଜ ହାତରେ ଧରି ଦି ଚାରି ଜଣ ପୌଢ଼ ବୁଢ଼ା ଗଛମୂଳେ ଏକତ୍ର ହୋଇ ରାଜନୀତି-ସମାଜନୀତି-ଅର୍ଥନୀତି ଆଲୋଚନା କରନ୍ତି, ଯେମିତି ଦି'ପହରେ ଏ ଘରର ବୁଢ଼ୀ ସେ ଘରର ବୁଢ଼ୀ, ଏ ଘର ବୋହୂ ସେ ଘର ଝିଅ ଗଛ ତଳେ ସବୁଜ ଗାଲିଚା ପରି ଘାସ ଉପରେ ଗୋଡ଼ ମେଲାଇ ରନ୍ଧାବଢ଼ାର କଥା, ଶିଲାଇର କଥା, ପିଲାହେବା କଥା କୁହାକୁହି ହୋଇ ସମୟ କଟାନ୍ତି । ଆଉ ଉପରବେଳା ଛୁଟି ଆସନ୍ତି ପିଲାମାନେ । ଗଛଟାକୁ ଘେରି ହୋ-ହଲ୍ଲା ଛୁଟାଛୁଟି, ଗଛ ଉପରେ ଚଢି ଡାଳଭଙ୍ଗା, ପତ୍ରଛିଣ୍ଡା, କିମ୍ବା କେଉଁଦିନ ଗଛ ଡାଳରେ ଦୋଳି ବାନ୍ଧି ଝୁଲା ।

କିମ୍ବା ଶୀତଦିନେ ଦିପହରେ ଗଛ ଛାଇରେ ମୁଣ୍ଡ ରଖି ଦେହଟାକୁ ଖରାରେ ମେଲିଦେଇ କାହାର କାହାର ଗଳ୍ପ ବହି ପଢ଼ିବା । ପୁଣି ଗ୍ରୀଷ୍ମ ରାତିରେ ଠିକ ଏଇ ଗଛ ତଳେ ଶୀତଳପଟି ବିଛାଇ ହାରିକେନ୍ ଜାଳି ସାହୀର ପାଞ୍ଚ ସାତ ଜଣ ଗୋଲ ହୋଇ ବସି ତାସ୍ ଖେଳିବା ଦୃଶ୍ୟ ବି ଆଖିରେ ପଡ଼େ ।

ଯେତେବେଳେ ମଣିଷ ନଥାନ୍ତି ସେତେବେଳେ ଗଛ ତଳେ ଛେଳିଟାଏ ଗୋରୁଟାଏ ମୁଣ୍ଡ ଗେଞ୍ଜି ମନ ଖୁସିରେ ଘାସ ଛିଣ୍ଡାଇ ଖାଉଥିବାର ମଧ୍ୟ ଦେଖାଯାଏ ।

ଆଉ ଉପରେ ନାନା ଜାତିର ପକ୍ଷୀଙ୍କର କିଚିରି ମିଚିରି କଳରବ, ଡେଣା ଝାପଟା, ଅଣ୍ଡରେ ଅଣ୍ଡ ଘଷିବା ଶବ୍ଦ ।

ଆଉ ମଝିରେ ମଝିରେ ହାଓ୍ବାରେ ପତ୍ର କମ୍ପେ, ଡାଳ ଦୋହଲେ ।

କିମ୍ବା ଏମିତି ବି ସମୟ ଆସେ ଯେତେବେଳେ ପକ୍ଷୀ ନଥାନ୍ତି ବତାସ ନଥାଏ । ଗଛ ସ୍ଥିର ସ୍ତବ୍ଧ । ପଡ଼ିଆରେ ନିବିଡ଼ ଛାୟା ଟିକକ ପକାଇ ଅନନ୍ତ କାଳର ସାକ୍ଷୀ ହୋଇ ନିଃସଙ୍ଗ ଗଛ ଯୁଗ ଯୁଗ ଧରି ଛିଡ଼ା ହୋଇଚି । କିମ୍ବା ମନେହୁଏ କୌଣସି ଦାର୍ଶନିକ । ନୀରବ ରହି, ଅବିଚଳ ରହି ଜଗତ୍‌ଟାକୁ ଦେଖୁଚି । ସଂସାରର ଉତ୍‌ଥାନ ପତନ ଲକ୍ଷ୍ୟ କରୁଚି । ପାପର ଜୟ ଆଉ ପୁଣ୍ୟର ପରାଜୟ ଦେଖି ବିମୂଢ଼ ବିସ୍ମିତ ହୋଇ ରହିଚି ।

ଚିନ୍ତାଶୀଳ ମଣିଷର ମନର ଅବସ୍ଥା ଯେମିତି ହୁଏ । ଚିନ୍ତାଶୀଳ ମଣିଷ ଚୁପ୍ କରିଥାଏ । ସତରେ ଗଛଟାକୁ ସମୟେ ସମୟେ ଏପରି ଏକ ମଣିଷ ବୋଲି କଳ୍ପନା କରଯାଏ । ସେତେବେଳେ ତା ଚାରିପଟେ ଅନ୍ୟ ମଣିଷ ପଶୁପକ୍ଷୀ; ହାଓ୍ବାର ଉପସ୍ଥିତି କଳ୍ପନା କରିବା କଷ୍ଟ ।

ହୁଏତ ଏଇପରି ଭାବରେ କିଏ ଗଛଟାକୁ ଦେଖୁଥିଲା, ଗଛଟାକୁ ଭାବୁଥିଲା । ଏତେଦିନ ଜଣାଯାଇ ନାହିଁ, ଏତେଦିନ ବୁଝା ପଡୁ ନଥିଲା । କିଏ ଜାଣେ ଗଛଟାର ହୁଏତ ସେ ଅନ୍ତର୍ଦୃଷ୍ଟି ଥିଲା, ଗଛ ବୁଝି ପାରୁଥିଲା ପୂର୍ବଦିଗର ଏକ ଘରେ ସବୁଜ ଝରକା ଉହାଡ଼ରେ ଜଣେ ତାକୁ ଗଭୀର ଭାବରେ ଲକ୍ଷ୍ୟ କରେ । ନା, ଆଗେ ହୁଏତ ସେ ଆଉ ଦଶଜଣ ମଣିଷଙ୍କ ପରି ସାଦା ଆଖିରେ ଗଛର ପତ୍ର ଝଡ଼ିବା ଦେଖୁଥିଲା, ନୂଆପତ୍ର ଗଜେଇବା ଦେଖୁଥିଲା । ବର୍ତ୍ତମାନ

ତା'ର ଆଖି ଆଉ ସାଦା ନାହିଁ । କଜଳ ପିନ୍ଧି ଗଭୀର କଳା ହୋଇଚି । ବର୍ତ୍ତମାନ ସେ ଆଉ ହାଲୁକା' ବେଣୀ ଲମ୍ବାଇ ଫ୍ରକ୍ ଉଡ଼ାଇ ଛଟପଟ କରୁନାହିଁ ଯେ ପଡ଼ିଆ ଭୂଇଁରେ ଘର ଆଗରେ ଗୋଟାଏ ଗଛ ଅଛ କି ବାଉଁଶ ଖୁଣ୍ଟିଆ ହୋଇଚି ତା ଉପରେ ଉପରେ ଦେଖି ଶେଷ କରିବ । ବର୍ତ୍ତମାନ ସେ ଶାନ୍ତ ଗମ୍ଭୀର ମଥାରେ ଦୃଢବଦ୍ଧ ସଂଯତ କଠିନ ଜୁଡ଼ା ଭଳି ତା ମନ ବି ବୋଧେ ସତର୍କ ସୁସମ୍ବଦ୍ଧ ସ୍ଥିର ଓ ନିବିଡ଼ ହୋଇ ଉଠିଛି । ଆଉ ସେଇ ନିବିଡ଼ ମନ ସତର୍କ ଦୃଷ୍ଟି ନେଇ ସବୁବେଳେ ଗଛଟାକୁ ନେଇ ଭାବୁଚି । ସେମିତି ଭାବୁଭାବୁ ତା ମନ କେମିତି ଭୀତ ସଂତ୍ରସ୍ତ ହୋଇ ଉଠିଲା । ଆଖିର କଳା ପଲକ ଗୁଡ଼ିକ ଆଉ ହଲୁ ନାହାନ୍ତି । କଳାମଣି ଦୁଇଟି ପଥର ପରି ସ୍ଥିର କଠିନ ହୋଇ ଉଠିଛି । ଗଛ ବୁଝି ପାରିଲା ଗୋଟାଏ ଭୟଙ୍କର ଭାବନା ତାକୁ ଘାରୁଚି । ଏଇ କଳା ପଲକ ଭରା ଆଖି ଦୁଇଟିର ଚାହିଁବା ଭିତରେ କେବଳ ଭୟ ନୁହେଁ, ବିଦ୍ୱେଷ ବି ଯେମିତି ମିଶି ରହିଛି । ଗଛ ଭୟ ପାଇଲା, ଦେଖିଲା, କେବଳ ଦିନ ଆଲୁଅରେ ନୁହେଁ, ରାତିର ଗଭୀର ଅନ୍ଧକାରରେ ବି ଦୁଇଟି ଆଖି ପହରାରେ ଜାଗିଅଛି । ନିରାକାର ଅସ୍ପଷ୍ଟ ଛାୟାମୂର୍ତ୍ତି ହୋଇ ରାତ୍ରିର ଗାଢ ଅନ୍ଧକାର ମଧ୍ୟରେ ଲୁଚିରହି ମଧ୍ୟ ଗଛ ଯେପରି ଏଇ ଦୃଷ୍ଟିରୁ ନିଜକୁ ରକ୍ଷା କରିପାରୁ ନାହିଁ । ଆତଙ୍କ ସଙ୍ଗରେ ପୁଞ୍ଜ ପୁଞ୍ଜ ଘୃଣା ଫିଙ୍ଗିଚି ଜଣେ ତା ଆଡ଼କୁ ।

ତାପରେ କଥାଟା ଜଣାଜଣି ହୋଇଗଲା । ବୋଧହୁଏ ସବୁଜ ପହରାର ଏଇ ମଣିଷଟି ସମସ୍ତଙ୍କୁ ଜଣାଇ ଦେଲା ।

ଏ ଗଛଟା ଦୁଷ୍ଟ । ଏ ଗଛ ଶୟତାନ । ଯାକୁ ଏଠାରୁ ହଟାଇ ଦିଅ ।

ପଡ଼ିଆ ଜମିର ଆଖପାଖ ମଣିଷମାନେ ସଜାଗ ହୋଇ ଉଠିଲେ ।

ମଣିଷଙ୍କ ଭଳି ଶୟତାନ ହୋଇ ଗୋଟାଏ ଗଛ ମଣିଷଙ୍କ ଭିତରେ ଥାଇପାରେ, ସେମାନେ ଏଇ ପ୍ରଥମ ଶୁଣିଲେ, ଜାଣିଲେ ।

ସତେ ତ, ସମସ୍ତେ ଭାବିବାକୁ ଆରମ୍ଭ କଲେ, ବୁଢ଼ାମାନେ ଗଛମୂଳେ ବସି ପଲିଟିକ୍ସ ଆଲୋଚନା କରି, ବୁଢ଼ୀମାନେ ଯୁବତୀମାନଙ୍କ ସଙ୍ଗରେ ପିଲା ହେବା ନ ହେବ କଥା ଗଳ୍ପ କରି, ପିଲାମାନେ ଗଛ ଛାଇରେ ଖେଳକୁଦ କରି । ଏଭଳି ଗଛଟା ଯଦି ଭଲ ନହୁଏ, ଯଦି ତା ଭିତରେ ଦୁଷ୍ଟବୁଦ୍ଧି ଲୁଚି

ରହିଥାଏ, ତେବେ ତ—

କାଟିଦେବାକୁ ହେବ, ପୋଡ଼ି ପକାଇବାକୁ ହେବ, ମୂଳରୁ ଉପାଡ଼ି ଦେଲେ ସବୁଠୁ ଭଲ ହେବ । ସାଦା ଫୁଲର ମାଳା ପିନ୍ଧିଥିବା ଶ୍ୱେତ ଶକ୍ତ ଜୁଡ଼ା ହଲାଇ ସବୁଜ ଝରକାର୍ ମଣିଷଟ କହିଲା, ଏଇ ଗଛ ନ ଜାଣି କେତେ-ବେଳେ କେଉଁ ବିପଦ ଘଟାଇବ କହିବା ଶକ୍ତ ।

ସମସ୍ତେ ଶୁଣିଲେ, ସମସ୍ତେ ଜାଣିଲେ ।

ପିଲାମାନେ ଖେଳକୁଦ କରନ୍ତି । ଏଇ ଗଛରୁ ଗୋଟାଏ ବଡ଼ ଡାଳ ଛିଣ୍ଡି ସେମାନଙ୍କ ମୁଣ୍ଡରେ ପଡ଼ିପାରେ । ବଜ୍ରପାତ ହୋଇପାରେ ଏଇ ଗଛ ଉପରେ । ଆଉ ତଳେ ସେତେବେଳେ ଯିଏ ଛିଡ଼ା ହୋଇଥିବ ବା ବସିଥିବ, ସଙ୍ଗେସଙ୍ଗେ ତାର ଅବଧାରିତ ମୃତ୍ୟୁ । ଅର୍ଥାତ୍ ଗଛହିଁ ବଜ୍ରକୁ ଡାକିଆଣେ । ଶୟତାନ କଣ ନ ପାରେ ? ଶୁଣି ମଣିଷଗୁଡ଼ାଙ୍କର ଆଖି ବଡ଼ ହୋଇଗଲା ।

କିନ୍ତୁ ସେଇ ସବୁଜ ଝରକାର ମଣିଷଟି ଚୁପ୍‌କରି ରହିଲା ନାଇଁ । ଗଛ ସମ୍ବନ୍ଧରେ ଏତେ ଦିନ ଯେଉଁମାନେ ଉଦାସୀନ ଥିଲେ ସେମାନେ ଆହୁରି ଭୟଙ୍କର କଥା ଶୁଣିଲେ ।

ଖାଲି ବଜ୍ର କାହିଁକି, ଶୟତାନ ଅଧଗତିରେ ଯେ କୌଣସି ମଣିଷକୁ ଡାକି ନିଜ ପାଖକୁ ଟାଣି ନେଇପାରେ ।

ହୁଁ, ସକାଳେ ଉଠି ସମସ୍ତେ ଦେଖିବେ ସେ ମଣିଷଟା ଏଇ ଗଛର କୌଣସି ନା କୌଣସି ଗୋଟାଏ ଡାଳରେ ଝୁଲୁଛି ।

ବେକରେ ଦୌଡ଼ି ଦେବାପାଇଁ ଗଛର ଡାଳ ଯେ ଗୋଟାଏ ଚମତ୍କାର ଅବଲମ୍ବନ, କଥାଟା ନୂଆକରି ସମସ୍ତଙ୍କର ମନେ ପଡ଼ିଗଲା ।

ଏଇ ଗଛକୁ ପୋଡ଼ି ପକାଇବାକୁ ହେବ, କାଟି ପକାଇବାକୁ ହେବ, ସମ୍ଭବ ହେଲେ ଚେର ସୁଦ୍ଧା ।

ହୁଏତ ଗଛକୁ ଜଣା ନଥିଲା, ପୋଡ଼ା ଭୂଇଁର ପଶ୍ଚିମ ଦିଗରେ ଆଉ ଏକ ଘରର ଲାଲ ରଙ୍ଗର ଝରକାରେ ଆଉ ଜଣେ ତାକୁ ଗଭୀର ଭାବରେ ଦେଖୁଥିଲା । ସେଆଡ଼କୁ ଦୃଷ୍ଟି ପଡ଼ିବାରୁ ଗଛ ଚମକି ଉଠିଲା ଏବଂ ଖୁସି ହେଲା । ଲାଲ ରଙ୍ଗର ଝରକାର ଆଖି ଦୁଇଟି ଖୁବ୍ ସୁନ୍ଦର । ସେ ଆଖିରେ

ଭୟ ଆତଙ୍କ ଘୃଣା ବିଦ୍ୱେଷ କିଛି ହିଁ ନାହିଁ । ଅଛି ସ୍ନେହ ପ୍ରେମ ମମତା ସହାନୁଭୂତି । ଦେଖି ଗଛ ବିସ୍ମିତ ହେଲା । କାହିଁକି ନା କିଛିଦିନ ପୂର୍ବେ ମଣିଷଟିର ଦୃଷ୍ଟି ଅଶାନ୍ତ ଥିଲା, ଗ୍ଲାନି ଓ କଥାରେ ରୁକ୍ଷତା ଥିଲା । ହାଫ୍ ପ୍ୟାଣ୍ଟ ପିନ୍ଧି ସମୟ ଅସମୟରେ ତା ପାଖକୁ ଛୁଟିଆସିଛି, ଟେକା ମାରିଛି ଡାଳପତ୍ର ଲକ୍ଷ୍ୟକରି, ପତ୍ର ଆଢୁଆଳରେ ଚଢ଼େଇ ବସା ଖୋଜି ବାହାର କରି ଭାଙ୍ଗି ଦେଇଛି, ଆଉ କେବେ କେବେ ଝୁଲଣା ବାନ୍ଧି ଦୋଳି ଖେଳିଛି । ଆଜି ସେ ମାର୍ଜିତ, ଭଦ୍ର ସ୍ନିଗ୍ଧ ସୁନ୍ଦର । ଆଦ୍ଧି ପଞ୍ଜାବୀର ହାତ ଦୁଇଟା କହୁଣୀ ପର୍ଯ୍ୟନ୍ତ ଗୁଟେଇ ଦି'ହାତ ପାପୁଲିରେ ଚିବୁକ ରଖି ଝିଡ଼ିକି ପାଖ ଟେବୁଲ ପାଖେ ବସି ଗଛ ଆଡ଼କୁ ଗାଢ଼ ଦୃଷ୍ଟି ମେଲାଇ ଚାହିଁଥାଏ । ଭବୁଭବୁ ଟେବୁଲର ଫୁଲଦାନୀରୁ ଗୋଟାଏ ଗୋଲାପ ନାକ ପାଖରେ ଟେକି ଗଂଧ ଶୁଂଘେ, ଯେପରିକି ଗଛଟାକୁ ଯେତେ ଦେଖୁଚି ଯେତେ ଭବୁଚି, ସେତେ ପରିତୃପ୍ତ ହେଉଛି, ଆନନ୍ଦିତ ହେଉଛି । ଯେମିତି ଗଛ କଥା ଭବିବା ସଂଗରେ ଗୋଲାପ ଗଂଧର ଗୋଟାଏ ଆଶ୍ଚର୍ଯ୍ୟ ମେଳ ଅଛି । ବୋଧହୁଏ ଗଛ ତା ପାଖରେ ଗୋଲାପ ପରି ସୁଂଦର ।

ଗଛ ନିଶ୍ଚିନ୍ତ ହେଲା ! ଲାଲ ଝିଡ଼ିକିର ମଣିଷଟି ମୁହଁରେ ସମସ୍ତେ ଅନ୍ୟ କଥା ଶୁଣିଲେ ।

ଏଇ ଗଛ ଈଶ୍ୱରଙ୍କ ଆଶୀର୍ବାଦ ପରି ଆମ ଭିତରେ ଛିଡ଼ା ହେଇଛି । ଯାକୁ ବଂଚାଇ ରଖିବାକୁ ହେବ । ଏଇ ଗଛ ମୂଳରେ ସକାଳେ ସଂଜରେ ମଣିଷମାନେ ଏକତ୍ର ହୁଅନ୍ତି । ଜଣେ ମଣିଷକୁ ଅନ୍ୟ ଏକ ମଣିଷର ମନ ପାଖକୁ ଟାଣି ଆଣୁଚି ଗଛଟା । ତାର ଅର୍ଥ ଆମ ସମସ୍ତଙ୍କୁ ସାମାଜିକ ହେବାକୁ ଶିଖାଉଛି । ଗଛଟା ଅଛି ବୋଲିହିଁ ପିଲମାନେ ଖେଳକୁଦ କରି ପାରୁଛନ୍ତି । ଜାଆ ପରି ଶିଶୁମାନଙ୍କୁ ସ୍ନେହ ଓ ଆନନ୍ଦ ବିତରଣ କରୁଛି ପଡ଼ିଆର ଏଇ ବନସ୍ପତି ।

ସତରେ କେଡ଼େ ସୁନ୍ଦର !

ତାର ଛାୟା ସୁନ୍ଦର, ଡାଳ ସୁନ୍ଦର । ତା ନହେଲେ କଣ ନିରୀହ ସୁନ୍ଦର ପକ୍ଷୀଗୁଡ଼ିକ ତାକୁ ଆଶ୍ରୟ କରି ସବୁବେଳେ କୂଜନଗୁଂଜନ କରନ୍ତେ ? ପ୍ରଜାପତି ଛୁଟି ଆସୁଚି ।

ସାହୀର ଲୋକମାନେ ନୂଆ କରି ଭବିବାକୁ ଆରମ୍ଭ କଲେ ।

ପଶ୍ଚିମର ଲାଲ ଝରକାର ସୁନ୍ଦର ମଣିଷଟି ସେତିକିରେ ଚୁପ୍ ହୋଇ

ରହିଲା ନାହିଁ ।

ଇଟା, ଲୁହା, ସିମେଣ୍ଟ ଭିତରେ ବାସ କରି ଆମେ କ୍ଳାନ୍ତ ହୋଇ ପଡ଼ିଛୁଁ । ଆମ ଆଖି ଆଗରେ ଗୋଟିଏ ସବୁଜ ଗଛ ଅଛି ବୋଲି ପ୍ରକୃତିକୁ ଆମେ ମନେ ରଖି ପାରିଛୁଁ । ଆମେ ଯେ ଏ ପର୍ଯ୍ୟନ୍ତ ପୂରାପୂରି କୃତ୍ରିମ ହୋଇ ଯାଇ ନାହୁଁ ତାହା ଏଇ ଗଛର କଲ୍ୟାଣରୁ । ଏ ଗଛ ରହିବ । ଏ ଗଛ ଆମର କ୍ଳାନ୍ତ ଅବସାଦଗ୍ରସ୍ତ ଜୀବନରେ ଗୋଟାଏ କବିତା ପରି ।

ତେବେ କଣ ଇଇ ଝରକାର ମଣିଷଟି କବି ? ଗଛ ଭାବିଲା । ଘରିରେ ଟେବୁଲ ପାଖରେ ମଣିଷଟି ବସି କାଗଜ କଲମ ନେଇ କଣ ଲେଖେ, ଯେତେବେଳେ ଲେଖେନା, ଚୁପ୍ କରି ଗଛ ଆଡ଼କୁ ଗ୍ରହିଁଥାଏ ।

ମନ୍ଦକଥା ଶୁଣି ମଣିଷ ଯିମିତି ବିଚଳିତ ହୁଏ ସେମିତି ଭଲ କଥା ଶୁଣି ସେମାନେ ନିଶ୍ଚିନ୍ତ ହୁଅନ୍ତି । ଖୁସି ହୁଅନ୍ତି ।

ତେଣୁ ଜଣେ ଗଛଟାକୁ ମନ୍ଦ କହିବାରୁ ଲୋକେ ଯିମିତି କ୍ଷିପ୍ତ ହୋଇ ଉଠିଥିଲେ, ପୁଣି ଜଣେ ଗଛ ସେମାନଙ୍କର ଅନେକ ଉପକାର କରିଛି କହିବା ଶୁଣି ସେମିତି ଶାନ୍ତ ହେଲେ ।

ସେମାନେ ଗଛ ବିଷୟରେ ଆଉ ମୁଣ୍ଡ ଖେଳାଇଲେ ନାହିଁ ।

ଗଛ ମନକୁ ଗଛ ଛିଡ଼ା ହୋଇ ରହିଲା ।

କିନ୍ତୁ ପୂର୍ବ ଦିଗର ଝରକାର ମଣିଷଟି ଚୁପ୍ ରହି ପାରିଲା ନାହିଁ, ଦାନ୍ତରେ ଦାନ୍ତ ଘଷି ସେ ଯେ ପ୍ରତିଜ୍ଞା କରିଛି ଯଦି ଆଉ କେହି ତାକୁ ସାହାଯ୍ୟ ନ କରନ୍ତି ତେବେ ସେ ନିଜେଇ କୁରାଢ଼ି ଚଳାଇ ଗଛଟାକୁ ଶେଷ କରି ଦେବ । ଏଇ ଗଛଟାକୁ ସେ କୌଣସି ପ୍ରକାରେ ସହ୍ୟ କରି ପାରୁ ନାହିଁ । ଶୟତାନକୁ ଆଖି ସାମନାରୁ ସେ କୌଣସି ମତେ ଦୂର କରିବ ।

ଗଛ ଶୁଣି ଦୁଃଖ ପାଇଲା, ପୁଣି ମନେ ମନେ ହସିଲା । ଯେମିତି ପୂର୍ବଦିଗ ଝରକାର ଲୋକଟିକୁ ତାର କହିବାକୁ ଇଚ୍ଛା ହେଲା, ତମ ଜୁଡ଼ାରେ ଫୁଲମାଳା ଶୋଭପାଏ, ତମ ଆଖିର କଜଳ, କପାଳର କୁଙ୍କୁମଟୀକା ଚମତ୍କାର, ତମ ହାତ ଆଙ୍ଗୁଠି ଗୁଡ଼ିକ ଚମ୍ପା କଳି ପରି ସୁନ୍ଦର ଓ ନରମ । ଏ ହାତରେ କୁରାଢ଼ି ଧରି ପାରିବ କି ?

ପଶ୍ଚିମ ଦିଗର ଝରକା ପଟ ଲୋକଟିର କାନକୁ ଯେମିତି କଥାଟା

ଗଲା । ଗଛର ବେଶ୍ ଜଣା ଅଛି ଏଇ ହାତ, ହାତର ଆଙ୍ଗୁଠି ଦରକାର ହେଲେ ଇସ୍ପାତ ପରି ବେଶ୍ ଦୃଢ଼, ଦୃପ୍ତ ହୋଇପାରେ । ଆଜି ଏହା ନେଇ ସେ କବିତା ଲେଖୁଚି ସତ, ଗୋଲାପଫୁଲକୁ ଆଦର କରୁଚି ସତ, ଦିନେ ଏଇ ହାତରେ ଟେକା ମାରି ସେ ଅନେକ ପକ୍ଷୀଙ୍କ ବସା ଭାଙ୍ଗି ଦେଇଛି । ଗଛର ଡ଼ାଳ ଭାଂଗିଛି, ପତ୍ର ଛିଣ୍ଡାଇଛି, ଆଉ ରୁଦ୍ରଙ୍କ ପରି, ଦାନବଶିଶୁ ପରି କଠିନ ହାତରେ ଝୁଲଣା ବାନ୍ଧି ଦୋଳି ଖେଳିଛି । ସେଥିପାଇଁ ବୋଧହୁଏ ବଜ୍ରମୁଷ୍ଟି ଆଜି ଶୂନ୍ୟକୁ ଉଠାଇ ସେ ପ୍ରତିଜ୍ଞା କଲା, ଏଇ ଗଛକୁ ଯେ କୌଣସି ପ୍ରକାରେ ସେ ରକ୍ଷା କରିବ । ଯଦି କେହି ଏ ଗଛ ନଷ୍ଟ କରିବାକୁ ଆସେ ତାକୁ କ୍ଷମା କରିବ ନାହିଁ । ଜୀବନରୁ କବିତାକୁ ନିର୍ବାସନ କରିବା ସଂଭବ ନୁହେଁ । ଯଦି କେହି ଗଛ ଦେହରେ ହାତ ଦେବାକୁ ଆସେ ଶରୀରର ଶେଷ ରକ୍ତବିନ୍ଦୁ ଦେଇ ସେ ତାକୁ ପ୍ରତିହତ କରିବ । ଗଛ ଦେହରେ ଆଂଚୁଡ଼ା ଟାଏ ମଧ୍ୟ ପଡ଼ିବାକୁ ଦେବ ନାହିଁ ।

ଗଛ ନୂଆ କରି ଭୟ ପାଇଲା ! ତାକୁ କେଂଦ୍ର କରି ପୂର୍ବ ଓ ପଶ୍ଚିମ ପରକାର ଦୁଇ ଜଣ ମଣିଷଙ୍କ ମଧ୍ୟରେ ସଂଘର୍ଷ ଘଟିବ ନାହିଁ ତ '

ସେଦିନ ଦିପହର ଗଡ଼ିଗଲା । ଦୁଇଟା ଛୁଆଙ୍କୁ ଧରି ଗୋଟାଏ ଛାଗଳ ଗଛତଳ ଛାଇରେ ଘୂରି ଘୂରି ଘାସ ଖାଉଥାଏ । ଉପରବେଳା ହେଉ ନ ହେଉଣୁ ପିଲାମାନେ ଆସି ଛୁଟାଛୁଟି କଲେ । ଅଗଣନ୍ତି ପକ୍ଷୀ କିଚିରି ମିଚିରି କରି ଉଠି ତାପରେ ଚୁପ୍ ହୋଇଯାନ୍ତି । ରାତ୍ରି ହେଲା । ନିର୍ମେଘ କଳା ଆକାଶରେ ଅସଂଖ୍ୟ ତାର ଫୁଟିଲେ । ହାଓ୍ବା ଥିଲା । ଗଛର ପତ୍ର ଫାଙ୍କରେ ସର୍-ସର୍ ଶବ୍ଦ ହେଉଥିଲା । ଗେଳ ଯିମିତି ହୁଏ । ପଡ଼ିଆ ଚାରିପାଖ ଘର ଗୁଡ଼ିକରେ ନାନା ରକମ ଶବ୍ଦ ହେଉଥିଲା, ଆଲୁଅ ଜଳୁଥିଲା । କ୍ରମେ ରାତି ଯେତେ ବଢ଼ିବାକୁ ଲାଗିଲା ଗୋଟିଏ ଗୋଟିଏ ଘର ଚୁପ ହୋଇ ଯିବାକୁ ଲାଗଲା ଆଲୁଅ ଲିଭିଗଲା । ତା'ପରେ ଚାରିଆଡ଼େ ନିଃସୀମ ଅଂଧକାରରେ ଛାଇଗଲା । ଅନ୍ଧକାର ଆଉ ଅମେୟ ସ୍ତବ୍ଧତା । ମଥା ଉପରେ କୋଟ କୋଟି ନକ୍ଷତ୍ର ନେଇ ଗଛ ଚୁପ୍ କରି ଛିଡ଼ା ହୋଇ ରହିଲା । ଏକ ସମୟରେ ହାଓ୍ବା ବି ବନ୍ଦ ହୋଇଗଲା ।

ଏପରି ସମୟରେ !

ନିରନ୍ଧ୍ର ଅନ୍ଧକାରରେ ଦିନ ଆଲୁଅପରି ଗଛ ସବୁ ଦେଖିପାରେ । ଗଛ ଦେଖିଲା ପୂର୍ବ ଦିଗ ଆଡ଼ୁ ସେ ଆସୁଛି । କାନିଟା ଶକ୍ତ କରି କୋମରରେ

ବାଂଧିଛି । ମାଳା ଟା କୁଢ଼ାକୁ ଫିଙ୍ଗି ଦେଇଛି । ଯେପରି ଯୁଦ୍ଧ କରିବାକୁ ଆସୁଛି । ହାତରେ ଧାରୁଆ କୁଠାର । ଗଛ ଶିହରି ଉଠିଲ ।

କିନ୍ତୁ ସଂଗେ ସଂଗେ ଅନ୍ୟ ଦିଗରେ ମଣଷର ପାଦ ଶବ୍ଦ ହେଲ । ଗଛ ସେ ଦିଗକୁ ଆଖି ଫେରାଇଲା । ଏଥର ଗଛ ନିଶ୍ଚିନ୍ତ ହେଲା । ପଶ୍ଚିମ ଖିଡ଼ିକିର ସେ ମଣିଷଟି ଆସି ଯାଇଛି । ତା ହାତରେ ଏକ୍ଷଣି କଲମ ନାହିଁ । ଗୋଟାଏ ଲାଠି । ଦେହରେ ଆବି ପଂଜାବୀ ନାହିଁ । ହାତକଟା ଗେଂଜି । ତାର ଗୁଲି ଶକ୍ତ । ଦୃଷ୍ଟି ନିର୍ମମ । ଯେମିତି ସେ ଲଲାଗେ ବଜ୍ରର ହୁଙ୍କାର ଛାଡ଼ିବ ।

ଗଛ କାନ ପାତି ରହିଲା ।

ବିଷର୍ଣ୍ଣ ସ୍ତବ୍ଧତା । ଅନିଶ୍ଚିତ ମୁହୂର୍ତ୍ତ ।

ଗଛ ଉପରେ ଗୋଟାଏ ପକ୍ଷୀ ଶାବକ କିଚମିଚ୍ ଶବ୍ଦ କରି ଉଠିଲା . ଯେମିତି କେଉଁ ଦିଗରୁ ଗୋଟାଏ ଅଜଣା ଫୁଲର ଗଂଧ ଭସି ଆସି ଆକାଶର ଏକ ପ୍ରାନ୍ତର ଗୋଟାଏ ତାର ପାଖକୁ ଛୁଟିଗଲା । ଟିକିଏ ପବନ ବହିଲା ନା କଣ । ନରମ ଶାଖା ଗୁଡ଼ିକ ହଲିବାକୁ ଲାଗିଲା ।

ଯେମିତି ଭିତରେ ଭିତରେ ଗଛ ଏହା ହିଁ ଆଶା କରିଥିଲ । ତେଣୁ ଖୁବ୍ ବେଶୀ ଅବାକ୍ ହେଲ ନାହିଁ ।

ଶାଢ଼ୀ-ପିଂଧା ମଣିଷଟି ମୁହଁରେ ହସ ଫୁଟିଛି ।

ପଶ୍ଚିମ ଆଡ଼ ଝରକାର ମଣିଷଟିର ଶକ୍ତ ଗ୍ରହାଣୀ ନରମ ହୋଇଛି ।

ଜଣେ ଅନ୍ୟ ଜଣଙ୍କ ଆଡ଼କୁ ଅନାଇ ରହିଚି । ଦିଜଣଙ୍କ ମଝିରେ ବ୍ୟବଧାନ ଏତେ କମ ଯେ ସେମାନେ ଯେପରି ପରସ୍ପରର ମୁହଁ ପରିସ୍କାର ଦେଖି ପାରୁଛନ୍ତି । ଯେମତି ଜଣେ ଆଉ ଜଣଙ୍କର ଶ୍ୱାସ ପ୍ରଶ୍ୱାସର ଶବ୍ଦ ଶୁଣି ପାରୁଛି ।

'ହାତରେ କୁରର୍ଢ଼ି କାହିଁକି ?'

'ଗଛଟାକୁ କାଟିବି ।'

'ଭଲ କଣ ?'

'ଗଛଟା ଶୟତାନ ।'

'ଗଛଟା ଦେବତା ।'

'ଶୟତାନକୁ ଯେ ଦେବତା ମନେ କରେ ସେ ମୂର୍ଖ ।'

'ଦେବତାକୁ ଯେ ଶୟତାନ ଭଳି ଦେଖେ ସେ ପାପୀ । ତା ମନରେ ପାପ, ହୃଦୟରେ ହିଂସା । ତେଣୁ ସାଦାକୁ କଳା ଦେଖେ । ଆଲୁଅ ଥିଲେ ବି ତା ଆଖିରେ ସବୁ କିଛି ଅନ୍ଧକାର ।'

'ତା ହେଲେ କ'ଣ ପୃଥିବୀରେ ଅଂଧକାର ବୋଲି କିଛି ନାହିଁ ?

'ନାଇ ।'

'ଇଏ କେମିତିକା ସଂଭବ ? ହାତରୁ କୁରଢିଟି ଖସି ପଡ଼ିଲା ତାର । ଭାବିବାକୁ ଲାଗିଲା । ଗଛ ଖୁସି ହେଲା । ଗଛ ଦେଖିଲା, ଜଣେ କୁରଢି ଫିଙ୍ଗିଦେଲା, ଅନ୍ୟ ଜଣକ ହାତର ଲଠି ଫିଙ୍ଗି ଦେଲା । "ଇୟେ କିମିତି ହେଲା ?" ଭାବୁ ଭାବୁ ପୂର୍ବଦିଗ ଝରକାର ମଣିଷଟି ମୁହଁ ଟେକି ଗଛ ପତ୍ର ଫାଙ୍କରେ ତାରାର ଝିଲିମିଲି ଦେଖିବାକୁ ଲାଗିଲା । ତା'ପରେ ଏକ ସମୟରେ ବିଡ଼ବିଡ଼ କରି କହିଲା, 'ସବୁ ଆଲୁଅ, ସବୁ ସୁଂଦରକିଛି କଳା ନାଇଁ, କେଉଁଠି ଅଂଧକାର ନାଇଁ—ଏମିତି କେବେ ହୁଏ ?'

'ନିଜ ଭିତରେ ଯେତେବେଳେ ଆଲୁଅ ଜାଗିଉଠେ ।'

'ସେ ଆଲୁଅ କଣ ?'

'ପ୍ରେମ ।'

ଝିଅଟିର ଆଖି ପତା କଂପି ଉଠିଲା । ଗାଢ଼ ନିଶ୍ୱାସ ପକାଇଲା । ତାର କଂଠସ୍ୱର କରୁଣ ହୋଇଗଲା ।

'ମୋ ଭିତରେ କଣ ପ୍ରେମ ଜାଗିବ ନାଇଁ ?'

'ଅଭ୍ୟାସ କରିବାକୁ ହେବ, ଚର୍ଚ୍ଚା କରିବାକୁ ହେବ । ପୁଅଟି ସୁଂଦର କରି ହସିଲା । 'ଭଲ ପାଇବାକୁ ଶିଖିବାକୁ ହେବ ।

'ତୁମେ ମୋତେ ଶିଖାଇ ଦିଅ ।'

ଗଛ ଆଖି ବୁଜିଲା । ତାକୁ ନିଦ ମାଡ଼ୁଛି । ଗଛ ବି ଶୁଏ । କେତେ

ଗର୍ଭ ଦୁଶ୍ଚିନ୍ତାରେ ସେ ଶୋଇ ପାରିନି । ଅଥବା ନିଜେ ଇଚ୍ଛା କରି ବା ସେ ତଳକୁ ମୋଟେ ଗ୍ରହିଲା ନାହିଁ । ମଣିଷ ଯେମିତି ଗଛ ସଂପର୍କରେ ଉଦାସୀନ ରହେ, ଗଛକୁ ବି ସମୟେ ସମୟେ ମଣିଷ ସଂପର୍କରେ ଉଦାସୀନ ରହିବାକୁ ହୁଏ, ଅଭିଜ୍ଞ ଗଛକୁ ତାହା କହିବାକୁ ହେଲା ନାହିଁ ।

# ପ୍ରାଣ—ପିପାସା

## ସମରେଶ ବସୁ

ଏକ କୃଷ୍ଣପକ୍ଷର ଦୁର୍ଯୋଗମୟୀ ରାତିର କଥା କହୁଛି ।

ଦୁର୍ଯୋଗଟା ହଠାତ୍ ମେଘ ଉଠାଇ ଡକା ଛାଡ଼ି ବିଜୁଳି ଚମକାଇ ଦୁଇ ଅସର ବର୍ଷା ହୋଇଯିବା ଭଳି ନୁହେଁ । ଏକା ପ୍ରକାରର ସ୍ତ୍ରୀଗ୍ରସ୍ତ ରକ୍ତର କାନ୍ଦଣା ପରି କେତେଦିନ ଧରି ଅବିରାମ ଝରଝର ବର୍ଷା ପଡ଼ୁଛି, ତା ସଂଗରେ ପୂର୍ବ ବତାସର ଅବିଶ୍ରାନ୍ତ ଝଡ଼ । ସହରତଳିର ବଡ଼ ସଡ଼କଟି ଛଡ଼ା ଆଉ ସବୁ କଂକ୍ରି ଗଳିପଥ ଗୁଡ଼ାକ ସୁଦୀର୍ଘ ପଙ୍କଭରା ନର୍ଦମା ହୋଇ ଉଠିଛି, ଦୁର୍ଗନ୍ଧ ଆଉ ଆବର୍ଜନାରେ ଭରି ଯାଇଛି । ଅସଂଖ୍ୟ ଘରର ଭିଡ଼, ଠେଲାଠେଲି, ଘୋପାଘୋପି ।

ବାଟ ଚାଲୁଥିଲି ରେଲ-ଲାଇନ୍ ଧାର ଦେଇ ପଡ଼ିଆ ମଝିରେ । କିନ୍ତୁ ଭିଜା ଭିଜା ଶରୀରର ଉତ୍ତାପଟିକ ଆଉ ରହିବ ନାହିଁ । ହାଓ୍ୱାଟା ସିଧା ସଳଖ ପଡ଼ିଆ ଉପର ଦେଇ କଂପାଇ ଦେଇ ଯାଉଥିଲା ଦେହକୁ । ରୀତିମତ ଦାନ୍ତରେ ଦାନ୍ତ ବାଜୁଚି । ଅବସ୍ଥା ଅସମ୍ଭାଳ ଦେଖି ବାଆଁ ମୋଡ ଦେଇ ସହର ଭିତରେ ଢୁକି ପଡ଼ିଲି । ଅନ୍ତତ ପବନର ଝାପଟା କମ ଲାଗବ ବୋଲି ।

ଗୋଟାଏ ନିସ୍ତବ୍ଧ ତନ୍ଦ୍ରାଳୁ ପଡ଼ିବା ଭାବ ଚଟକାଇ ସହରଟାର । ଯେପରିକି କାମ ଆଉ ଚାଞ୍ଚଲ୍ୟ ସବୁକିଛିକୁ ଏଇ ବୃଷ୍ଟି ଶିଥିଳ କରି ଦେଇଛି । କୁକୁର ଗୁଡାକ ଅନ୍ୟ ଦିନ ହେଲେ ବୋଧହୁଏ ତଡ଼ି ଆସନ୍ତେ ଘେଉ-ଘେଉ କରି । ଆଜି ଖାଲି ଦାୟ ମିଟାଇବା ପାଇଁ ଥରେ ଅଧେ ଗର୍ ର ଗର୍ ର କରି ଦିହରୁ ପାଣି ଝାଡ଼ିବାରେ ଲାଗିଛନ୍ତି । ଗୃହସ୍ଥ ମାନଙ୍କର ତ କୌଣସି ପତ୍ତା ହିଁ ନାହିଁ । ଝରକା-ଦରଜାରେ ଟିକିଏ ଆଲୁଅ ବି ନଜରରେ ପଡ଼େ ନାହିଁ ।

ରସ୍ତାର ଆଲୁଅ ଗୁଡ଼ାକ ଯେମିତି ଽକେଉ ଜାନୋୟାରର ସ୍ତିମିତ ଚକ୍ଷୁ ଭଳି ଅନାଇ ରହିଛନ୍ତି । କିନ୍ତୁ ଅନ୍ଧକାର ସେଥିରେ କମ ନାଇ ଟିକିଏ ହେଲେ ।

ରସ୍ତାଟା ଠିକ୍ ଠଉରାଇ ପାରୁ ନାଇଁ, ତେବେ ଉତ୍ତର ଦିଗକୁ ଗ୍ଲଲିଛି ତାହା ବୁଝି ପାରୁଛି । ଗୋଟାଏ ପାଖ ମାଡ଼ି ଗ୍ଲଲିଛି ରସ୍ତାରେ । ନୁଆଣିଆ ରସ୍ତା, ସେଥିରେ ପୁଣି ପାଣି ଜମିଛି । କେଉଁ ବାରଣ୍ଡାରେ ଯେ ଉଠି ରାତିଟା କଟାଇ ଦେବି ତାର କୌଣସି ଉପାୟ ନାଇଁ । କାରଣ ବାରାଣ୍ଡା କହିଲେ ଯାହା ବୁଝାଏ ଏଠି ସେଭଳି କିଛି ଆଖିରେ ପଡ଼ୁ ନାଇଁ ଆଉ ବସ୍ତିଗୁଡ଼ାକର ଅବସ୍ଥା ଦେଖି ମନେ ହେଉଛି ଘରଗୁଡ଼ାକ ଭିତର ବି ଶୁଖିଲା ନାଇଁ । ତା ଛଡ଼ା ଅବସ୍ଥାଟା ତ ନୂତନ ନୁହେଁ । ଜଣା ଥିଲା ସେଠି ଶୋଇ ପଡ଼ିଲେ ଲୋକେ ନାନା କଥା ବି କହି ପାରନ୍ତି । ପୁଲିଶର ହାଙ୍ଗାମା ତ ଅଛି ତା ଉପରେ ।

ଯିବାକୁ ହେବ ନୈହାଟି ରେଲ-କଲୋନୀର ଜଣେ ବଂଧୁଙ୍କ ପାଖକୁ । ଅନ୍ତତ କେତୁଟା ଦିନର ଖୋରାକ, ଶୁଖିଲା ଲୁଗା ଆଉ ଏପରି ଅଲକ୍ଷଣା ପଚପଚିଆ ରାତିଟି ପାଇଁ ଟିକିଏ ମୁଂଡ଼ଗୁଂଜିବାର ସ୍ଥାନ ତ ମିଳିବ । କିନ୍ତୁ ବର୍ତ୍ତମାନ ଦେଖୁଚି ଆଡ଼୍ଡା ଛାଡ଼ି ବାହାରିବା ଭଲ ହୋଇ ନାଇଁ । ତେବେ ଉପାୟ ନ ଥିଲା ବିଶେଷ କିଛି, କେତେଦିନ ତଳେ ଆମ ଆଡ଼୍ଡାର ଜଣେ ବଂଧୁ ମରିଗଲେ । ସେଇ ଦିନଠୁ ବାହାରି ପଡ଼ିବି ବୋଲି ଭବିଥିଲି । ବନ୍ଧୁଟିର ମରିବା ହୁଏତ ଭଲଇ ହୋଇଚି । ତା ଛଡ଼ା ଆଉ କଣ ହୋଇ ପାରନ୍ତା ମୁଁ କିଛି ବୁଝି ପାରୁ ନାଇଁ । ବଂଚିବା ପାଇଁ ଯାହା ଦରକାର ତା ତ କିଛି ନ ଥିଲା, ତଥାପି ଛାତି ଭିତରେ ଥାଉ । ଏଟା ଗୋଟାଏ କଥା ନୁହେଁ । କିନ୍ତୁ ସେ ମୋତେ ଗୋଟାଏ ଜିନିଷ ଦେଇ ଯାଇଛି । ଛୋଟ ଜିନିଷ, ମାତ୍ର ମନେ ହୁଏ ପର୍ବତ ପ୍ରମାଣ ତାର ଭରା ଆଉ କଷ୍ଟକର । ବୋଝଟା ହେଲା......

ଆରେ ବାପରେ, ପବନଟା ଯେମତି ମୁଣ୍ଡ ଭିତର ଶିରାଗୁଡ଼ାକୁ ବି ଥରାଇ ଦେଇ ଯାଉଛି । ବର୍ଷା ମଧ୍ୟ ବଢ଼ି ଗଲା ହଠାତ୍ । ଏତେବେଳକୁ ଘଡ଼ଘଡ଼ି ବି ଶୁଣାଗଲାଣି । ଏଥର ଆଉ ଦାନ୍ତ ନୁହଁ, ରୀତିମତ ହାଡ଼ଗୁଡ଼ାକ ବି ବାଡ଼େଇ ହେଲେଣି । ଗଛର ମଲା ଡାଳ ପରି ଭିଜି ଏକାବେଳେକେ ଫୁଲି ଗଲିଣି । ପହଞ୍ଚିଲି ଗୋଟାଏ ଚୌମୁହାଣି ରାସ୍ତାର ମୋଡରେ ଚଟକଳର ମାଲ ଗ୍ଲଲାନ କରିବା ରେଲ-ସାଇଡ଼ିଂ ପାଖରେ । ଜାଗାଟା ଟିକିଏ ଫାଙ୍କା । ଗୋଟାଏ ମଇଁଷି ଗୁହାଳ ଦେଖୁ ଭିତରେ ଢୁକିବି କି ନାଇଁ ଭବୁ ଭବୁ ଏକ

ପାଦ ଭିତରେ ଢ଼ୁକିବି କି ନାହିଁ ହଠାତ ଡାକ ଶୁଣି ପାରିଲି, ଏଇ ଯେ। ଇଆଡ଼କୁ।

ନା, ଅଶରୀରୀ କିଛି ବିଶ୍ୱାସ ନକଲେ ମଧ୍ୟ ଚମକି ପଡ଼ିଲି। ମୋତେ ଡାକିଲା ନା କଣ ।ଣି ଧାର ଭେଦ କରି ଗଳାଟ ସ୍ୱରର ମାଲିକକୁ ଖୋଜିବାରେ ଲାଗିଲି। ଡାହାଣ ଦିଗରେ ଗୋଟାଏ ମିଟିମିଟି ଆଲୁଅର ରେଖା ଆଖିରେ ପଡ଼ିଲା ଆଉ ଦରଭିଜା ଦରଜାରେ ଗୋଟାଏ ମୂର୍ତି। ହଁ, ମାଇପିଟାଏ। ତାହେଲେ ମୋତେ ନୁହେଁ। ଆଗଭଟି। ପୁଣି କଣ ଗୋ, ଆସନା

ଛିଡ଼ା ହୋଇ ପଡ଼ିଲି। ପଗ୍ଭରିଲି, ମୋତେ ? ଜବାବ ଆସିଲା, ତା ଛଡ଼ା ଆଉ କିଏ ଅଛି ରସ୍ତାରେ ?

କଥାର ରକମ ଶୁଣି ଚମକି ଉଠିଲି। ଓ ! ଏତେବେଳକେ ଠଉରଇଲି, ବାଟଟା ଖରପ। ଠିକ୍ ବେଶ୍ୟାପଲ୍ଲୀ ନୁହେ, ତେବେ ସେଇ ରକମ ମଜୁରିଆ ବସ୍ତି ବି ଅଛି ଆଖ ପାଖରେ ଲଗାଲଗି ହୋଇ।

ମୁଁ ମନେ ମନେ ହସିଲି। ଖୁବ୍ ଭଲ ଗ୍ରାହକକୁ ଡାକୁଛି ମାଇକିନାଟା ! କଣ ଭବିଚି ସିଏ। କିନ୍ତୁ ସତରେ, ଏତେବେଳେ ଯଦି ଟିକେ ଠିଆ ହୋଇଯାଏ ତା ଦୁଆରେ। ତଥାପି ମୋତେ ଯିବାର ନ ଦେଖି ସ୍ତ୍ରୀ ଲୋକଟା କହିଲ, କୀରେ ବାବା, ଲୋକଟା କଣା ନା କଣ ?

ମନେ ମନେ ହସି ଭବିଲି, ଯାଏ ନା ଥରେ। ବ୍ୟାପାର ଦେଖି ନିଜେଇ ଗ୍ଭଲିଯିବାକୁ କହିବ। ଆଉ ବର୍ଷାଟା ଟିକିଏ କମିବା ପର୍ଯ୍ୟନ୍ତ ଟିକିଏ ଆଶ୍ରୟ ପାଇବି ତ। ମନ୍ଦ କଣ ? ଏମିତି ତ ନୈହାଟି ଦୂରର କଥା, ମଇଁଷି ଗୁହାଳଠୁ ବେଶୀ କିଛି ଦୂର ଆଗେଇ ପାରିବି ନାଇଁ। ନିଜେ ବଂଚିଲେ ବାପାର ନାଆଁ।

ଉଠିଗଲି ଝିଅଟାର ଦରଜାକୁ। ଗୋଟାଏ ଗତାନୁଗତିକ ସଂକୋଚ ଯେ ନଥିଲା ତା ନୁହେ। କହିଲି, କାହିଁକି ଡାକିଲ ?

କେଉଁ ଦେଶର ମଣିଷରେ ବାବା ! —ହସ ସଙ୍ଗେ ବିରକ୍ତି ମିଶାଇ କହିଲ ଝିଅଟା। ଭିତରେ ଆସନା।

ମୁଁ ଭିତରେ ଢୁକିବା ମାତ୍ରକେ ସେ ଦରଜାଟା ବନ୍ଦ କରି ଦେଲ।

ବର୍ଷାର ଶବ୍ଦଟା ଗ୍ଲପା ପଡ଼ିଗଲା ଟିକିଏ । ପବନ ଆସିବାର କୌଣସି ବାଟ ନଥିଲା । କିନ୍ତୁ ଦେଖିଲି ... ଘରର ଚଟାଣ ବି ଉପରୁ ଟାଇଲ-ଫାଙ୍କରେ ପାଣି ଗଳି ଭିଜି ଯାଇଛି । ତକ୍ତପୋଷର ବିଛଣାଟା ଭିଜିନି । ଘର ଭିତରେ ଅଛି ଦି-ଗ୍ଲରିଟା ସାମାନ୍ୟ ଜିନିଷ, ଥାଳୀ ଗ୍ଲାସ୍ କଳସୀ ।

କୁଆଡ଼େ ମରିବାକୁ ଯିବା ହେଉଚି ଏ ଦୁର୍ଯୋଗ ମଥାରେ ନେଇ ? ଏପରି ଭାବରେ କହିଲା ଯେ ଯେମିତି ମୁଁ ତାର କେତେକାଳର ପରିଚିତ ।

କହିଲି, ଅନେକ ଦୂର କିନ୍ତୁ—

ବୁଝିଚି । —ମୁହଁ ଗ୍ଲପି ହସିଲା ସିଏ ! ଘରଟାକୁ ତୁମେ ଏକବାରେ କାଦୁଅ କରି ଦେଲ । ଏଗୁଡ଼ାକ ଖୋଲି ପକାଅ ଦେଖି ଜଲଦି ।

ଅଣ୍ଟାରେ ଆଇ ଅସ୍ତନକ ଫିସାଦରେ ମୋ ଦେହ ଜମାଟ ବାଂଧି ଆସୁଥାଏ । କହିଲି, କିନ୍ତୁ ଇଆଡେ—

ସେ କହି ଉଠିଲା, କଣ ଯେ ତୁଳୀ ପାଉଁଶ ପିଂଧିବାକୁ ଦେବି ? ଭିଜା ଜାମାଟା ଖୋଲି ପକାଅ ନା ।

ଖୋଲି ପକାଇଲେ ତ ଭଲ ହୁଏ । କିନ୍ତୁ......ଗଳାରେ ଟିକିଏ ଜୋର ଆଣି କହି ପକାଇଲି, ମିଛରେ ଡାକିଛ; ଇଆଡ଼େ ପକେଟ କଣା ।

ଏଥର ଝିଅଟା ଅମକି ଗଲା । ଯା ଭାବିଚି ସେଇଆ । ହଁ। କରି ସେ ମୁହଁ ଆଡ଼କୁ ଅନାଇ ରହିଲା ବେଶ୍ କିଛିକ୍ଷଣ । ଯେପରିକି ବିଶ୍ୱାସ କରି ପାରୁ ନାଇଁ । ପଗ୍ଲରିଲା, କିଛି ନାଇଁ ?

ତାର ସମସ୍ତ ଆଶା ଯେପରି ଫୁତ୍କାରରେ ଲିଭି ଯାଇଚି, ଏପରି ମୁହଁର ଭାବ ।

କହିଲି, ତାହେଲେ କଣ ଦର୍ଯୋଗ ମଥାରେ ନେଇ ରସ୍ତାରେ ବାହାରିଥାନ୍ତି ?

ଝିଅଟା ଅସହାୟ ଭାବରେ ଚୁପ କରି ରହିଲା । ଏ ତ ମୁଁ ଆଗରୁ ଜାଣେ । କିନ୍ତୁ ଝିଅଟା ଏଠି ବ୍ୟବସାୟ କରିବାକୁ ବସିଚି, ନା, ଭିକ୍ଷା କରିବାକୁ ବସିଚି । ମୁଁ ଦରଜାଟା ଖୋଲିବାକୁ ଗଲି ।

ପଛରୁ ପଗ୍ଭରିଲା, କୁଆଡ଼େ ଯିବ ଏବେ ?

କହିଲି. ଏଇ ମଇଁଷି ଗୁହାଳକୁ । ଦରଜାଟା ଖୋଲି ପକାଇଲି ଇସ୍ । ହାଓ୍ବାଟା ଯେମିତି ମୋତେ ହାଁ କରି ଖାଇବାକୁ ଆସିଲା । ଗୋଡ଼ ବଢ଼ାଇ ଦେଲି ବାହାରେ ।

ଝିଅଟା ହଠାତ୍ ଡାକିଲା ପଛରୁ, କଣ ମ, ଶୁଣ । ରାତିଟା ରହିଯାଅ ଡାକିଚି ଯେତେବେଳେ । ଗୋଟାଏ ନିଶ୍ୱାସ ଛାଡ଼ି କହିଲା, କପାଳଟା ଖରାପ ମୋର ।

କହିଲି, କାହିଁକି କପାଳଟା ଭଲ ହିଁ ଥାଉ ତମର, ମୁଁ ଗୁହାଳକୁ ଯାଉଛି ।

ଯା ତମର ଇଚ୍ଛା । ହତାଶ ଭବରେ ବସି ପଡ଼ିଲା ସେ ତକ୍ତପୋଷରେ ; ଆଜି ତ ଆଉ କୌଣସି ଆଶା ନାଇଁ ।

ଭବିଲି, ମନ୍ଦ କ'ଣ ? ଏ ଦୁର୍ଯୋଗରେ ଏମିତି ଗୋଟାଏ ଆଶ୍ରୟ ଯେତେବେଳେ ମିଳୁଚି, ଛାଡ଼ିବ କିଆଁ ? କିନ୍ତୁ ଝିଅ ପିଲା ସଙ୍ଗେ ରାତି କଟାଇବାଟା ଭରି ବିଶ୍ରୀ ବୋଧ ହେଲା । କାହିଁକି ନା, ଏଟା ଏକବାରେ ନୂଆ ମୋ ପାଖରେ । ଅବଶ୍ୟ ଝିଅମାନଙ୍କ ସଂପର୍କରେ ଆଗ୍ରହଟା ତମ ଦଶ ଜଣଙ୍କଠାରୁ ମୋର ହୁଏତ ଟିକିଏ ବେଶୀ ଅଛି । ତା' ବୋଲି ଏଠାରେ ? ଛି ଛି ! ତଥାପି ଯା ସଙ୍ଗରେ ନ ଶୋଇ ବି ରାତିଟା କଟାଇ ଦିଆଯାଏ । ଢୁକି ଦରଜାଟା ବନ୍ଧ କରିଦେଲି ।

ଲଂବାଳିଆ ଗଢ଼ଣ ଝିଅଟାର । ସଫା ରଙ୍ଗ । ଗାଲ ଦି'ଟା ବସି ଯାଇଚି । ବଡ଼ ବଡ଼ ଆଖି ଦୁଇଟା କଅଁଳ ଘାସ–ସଂଧାନୀ ଗୋରୁର ଆଖି ପରି । ଏଇ ଆଖି ଆଉ ମୁହଁରେ ପୁଣି ରଂଗ, କଜଳ ମଖା ଯାଇଚି । ମୋଟା ଓଠ ଦିଟା ଉପରେ ନାକ ଅଗଟା ଯେପରି ଆକାଶମୁଖୀ ।

ଖୋଜି ଖୋଜି ସେ ମୋତେ ଗୋଟାଏ ପୁରୁଣା ସାୟା ଦେଲା ପିନ୍ଧିବାକୁ, କହିଲା, ଏଇଟା ଛଡ଼ା ଆଉ କିଛି ନାଇଁ ।

ସାୟା ! ହସ ମାଡ଼ିଲା ମୋତେ । ଯା'ହେଉ, କେହି ତ ଦେଖିବାକୁ ଆସୁନାଇଁ ମୋତେ ! କିନ୍ତୁ ... ...

ଧକ୍ କରି ଉଠିଲା ବୁକୁଟା । ସଙ୍ଗେ ସଙ୍ଗେ ପକେଟରେ ହାତ ଦେଲି

ମୁଁ । ମରିବା ସମୟରେ ମୋ ବଂଧୁ ଯେଉଁ ଛୋଟ ଜିନିସଟା ପର୍ବତର ବୋଝ ପରି ଚପେଇ ଦେଇ ଯାଇଛି । ସେଟାକୁ ଦେଖି ନେଲି । ଗୋଟାଏ ରକ୍ତର ଢେଲ, ହଁ, ରକ୍ତର ଢେଲ ତ ? ଭୀଷଣ ସଂଶୟ ହେଲ ମୋ ମନରେ । ତୀକ୍ଷ୍ଣ ଦୃଷ୍ଟିରେ ଝିଅଟା ଆଡ଼କୁ ଦେଖି ନେଲି । ସେ ସେତେବେଳକୁ ପଛ କରି ଜାମା ଭିତରୁ ବଡ଼ିସ୍ ଖୋଲୁଚି । କହିଲି, କିଛି କିନ୍ତୁ ନାଇଁ ମୋ ପାଖରେ, ହଁ ।

କେତେ ଥର ଶୁଣାଇବ ବାପୁ ଏଇ କଥାଟା ? — ସେ ହତାଶ ଭାବରେ କହିଲ ।

ହଁ, ବାବା । କହିଲି, କହି ରଖିବା ଭଲ । ତଥାପି ମୋର କିଛି ଇଚ୍ଛା ନାଇଁ, ସେ ସବୁ । ଖାଲି ମୁସାଫିର୍ ପରି ଗତିଟା କଟାଇ ଦେବି ଯାହା ।

ଝିଅଟା ତାର ଗୋରୁ ପରି ଆଖି ଦିଇଟା ଟେକି ଦେଖିଲ ମୋତେ କିଛି ସମୟ । କହିଲ, କିଏ ତମକୁ ଗଣ ପକାଉଚି ?

ତା ସତ । ମୁଁ ସାୟାଟା ପିନ୍ଧି ନେଲି । କିନ୍ତୁ ଖାଲି ଦେହରେ କଂପଟା ଆହୁରି ବଢିଗଲ । ବାହାରେ ବର୍ଷା ଆଉ ହାଓ୍ବାର ଶବ୍ଦ ଦରଜାରେ ବେଶ୍ ଗୋଟାଏ ଆଲୋଡ଼ନ ସୃଷ୍ଟି କରି ଯାଉଚି ।

ଝିଅଟା ମୋ ଆଡ଼କୁ ଚାହିଁ ମୁହଁରେ ଲୁଗ୍ଣା ଚାପି କିଛିଟା ହସି ଦେଇ ପୁରୁଣା ଗୋଟାଏ ଶାଢୀ ଫିଙ୍ଗି ଦେଲ । ନିଅ, ଦେହରେ ଜଡ଼େଇ ଦେଇ ଶୋଇ ପଡ଼ ।

କହି ମୋ ଜାମା ଲୁଗା ନେଇ ଦୌଡ଼ି ଉପରେ ଫିଙ୍ଗି ଦେଲ । ଶୁଖିଯିବ ଏଇନା ।

ଆଗମ ଜିନିଷଟା ବଡ଼ ମାରାତ୍ମକ, ବିଶେଷ ଏଭଳି ଗୋଟାଏ ଦୁରବସ୍ଥାରେ ମୁଁ ପଡ଼ିନି କେବେ । ପ୍ରାୟ ଭୁଲିଗଲି ଯେ ମୁଁ ଗୋଟାଏ ବଜାରର ସ୍ତ୍ରୀଲୋକ ଘରେ ଅଛି । ପେଟଟା ଏକାବେଳେକେ ଫାଙ୍କା ଦି ଦିନ ଧରି । ସେଥିପାଇଁ ଏମିତି କାବୁ କରିଦେଲ ବର୍ଷାଟା ।

ସେ କୌଣସି ଜବାବ ଦେଲ ନାଇ । ଆଣ୍ଠୁରେ ମଥା ଗୁଞ୍ଜି ବସି ରହିଲ । କହିଲି, ନାହେଲେ ଶୁଆଯାଉ ।

ସେ ମୁହଁ ଟେକିଲ । ମୁହଁଟା ଯନ୍ତ୍ରଣାକାତର, ତାର ସୁସ୍ପଷ୍ଟ ଛାତି ହାଡ଼ ଗୁଡ଼ାକ ନିଃଶ୍ୱାସରେ ଉଠୁଚି ପଡ଼ୁଚି । କହିଲ, ଖାଇବ ? ଭାତ ଚଡ଼ିଚଢ଼ି ଅଛି ।

ଭାତ—ଚଡ଼ଚଡ଼ି ? ସତରେ, ଏହା ଏକବାରେ ଆଶାତୀତ । ଭାତର ଗନ୍ଧରେ ଯାର ଅଧେ ପେଟ ଭରିଯାଏ, ତା ସାମନାରେ ଭାତ ! ଜିଭରୁ ପାଣି ଗଡ଼ିବାକୁ ଲଗିଲ ଆଉ ପେଟଟା ଯେମିତି ଅଲଗା ଗୋଟାଏ ଜୀବ । ଭାତ କଥାଟା ଶୁଣୁ ଶୁଣୁ ଭିତରଟା ହଇଚଲ ଦୋଇ ଉଠିଲ । କିନ୍ତୁ —

ସେ ଯା ଭିତରେ ଏନାମେଲ ଥାଳିରେ ଭାତ ବାଢ଼ିବାକୁ ଆରମ୍ଭ କରିଚି । ଦେଖି ମୋ ମନର ସଂଶୟଟା ପୁଣି ବଢ଼ିଗଲ । ମୁଁ ଦୌଡ଼ି ଉପରୁ ଜାମାଟାକୁ ଉଠାଇ ଆଣିଲି ତରବରରେ । ହାଲଗ୍ଲ ତ ଭଲ ନୁହେଁ ଦେଖୁଚି । ସଂତ୍ରସ୍ତ ଭବରେ କହିଲି, ଭାତର ପଇସା ଟଇସା କିଛି ନାଇଁ ମୋ ପାଖରେ ।

ଗୋରୁ ଭଳି ଆଖି ଦିଟାରେ ଏଥର ବିରକ୍ତି ଦେଖାଗଲ । କହିଲ, ମଇଁଷି ଗୁହାଳରେ ହିଁ ତମର ଜାଗା ଦେଖୁଚି । କେତେଥର ଶୁଣାଇବ କଥାଟା ?

ସୁଖ ଅପେକ୍ଷା ସ୍ବସ୍ତି ଭଲ । ହତଭଗା ମରିବା ବେଳେ ଏମିତି ଗୋଟାଏ ବୋଝ ଦେଇଗଲ, ଯେଉଁ ବୋଝ ବୋହି ଚ୍ଲିବା ମୋ ପକ୍ଷରେ କଷ୍ଟ । ରଖିଲେ ବିଷ ଛାଡ଼ିଲେ ବି ବିଷ । ବାହାରେ ପଡ଼ି ରହିଥିଲେ ଏ ବୋଝଟାର କଥା ହୁଏତ ମନେ ପଡ଼ନ୍ତା ନାଇଁ । ସେ ପୁଣି କହିଲ, ମଣିଷ ସଙ୍ଗରେ ବାସ କରନି କେବେ ?

ଶୁଣିବା କଥା ! ତା ପୁଣି ପଚ୍ରୁଚି କାରଖାନା ବଜାରର ସ୍ଲୀ—ଲେକଟା ? କହିଲି, କରିଛି, ତେବେ ତମମାନଙ୍କ ଭଳି ମଣିଷ ସଙ୍ଗରେ ନୁହେଁ ।

ସେ ନିଷ୍ପଲରେ ଅନାଇ ରହିଲ କିଛିକ୍ଷଣ ମୋ ଆଡ଼କୁ । ତା'ପରେ କହିଲ, ରହିଚି ଯେତେବେଳେ ଖାଇ ନିଅ, ନ ହେଲେ ନଷ୍ଟ ହେବ । ଭବି ଦେଖିଲା, ଆଉ ଆପତ୍ତି କ'ଣ ? ବିନା ପଇସାରେ ଭାତ । ଆଉ ଦେଖୁଚି ବା କିଏ ? ଜାମାଟାର ହାତ ମୋଡ଼ି ନେଇ ଗପ୍ ଗପ୍ କରି ଭାତ ଖାଇ-ନେଲି । ତା'ପରେ ମାଠିଆଏ ପାଣି । ଏ ରକମ ବଢ଼ା ଭାତ ଖିଆ ମୋ ପକ୍ଷରେ ଏକ ବାବୁଗିରି ମନେ ହେଲା । ଆଉ ସେଇଥିପାଇଁ ସଂଶୟଟା ବନ୍ଧା ରହିଲ ମନର ପୁଷ୍ଟା ଭିତରେ ।

ତା ପରେ ଶୁଆ । ସେ ଏକ ଫିସାଦ୍ । ମୁଁ ଶୋଇପଡ଼ି ପଚାରିଲି, ତୁମେ ଶୋଇବ କେଉଁଠି ? ସେ ନିରୁତ୍ତରରେ ମୋ ଆଡକୁ ଘୁଞ୍ଚି ଖସି ଯାଇଥିବା ଓଢ଼ଣାଠା ଟାଣି ଦେଲା । ମୁଁ ବସିଲି ।

ସେ ବିଛଣାର ଗୋଟାଏ ପାଖତଳେ ବସିପଡି କହିଲା, ତୁମେ ଶୁଅ, ମୁଁ ତ ରୋଜ ଶୋଉଚି । ଗୋଟାଏ ରତି ତ ! ଡ଼ାକିଛି ଯେତେବେଳେ....

କହୁ କହୁ ମୋ ହାତ ମୁଠାରେ ଜାମାଟାକୁ ଦେଖି ଦୌଡ଼ି ଆଡ଼କୁ ଘୁଞ୍ଚିଲା । ତାପରେ ମୋ ଆଡ଼କୁ । ମୁଁ ବି ଦେଖିଥିଲି । କହିଲା, ଜମାଟା ଭିଜା ଯେ ?

ହେଉ, ସେଁଥିରେ ତମର କଣ ଯାଏ ଆସେ ?

ଚୁପ୍ କରିଗଲା ସିଏ । ଶରୀରଟା ଆରାମ ପାଇ ମନେହେଲା ଶିଥିଳ ତନ୍ତ୍ରୀଗୁଡ଼ାକ ସ୍ୱାଭାବିକ ସତେଜ ଓ ଗରମ ହୋଇ ଉଠୁଚି । ବାହାରର ଯେଉଁ ପାଣିପବନ ମୋତେ ଏତେ ସମୟ ଧରି କାତ୍ କରି ଦେଇଥିଲା ତାରଇ ଘୃପା ଶବ୍ଦ ଶୁଆଇ ପକାଇବା ଗାନଭଳି ବେଶ୍ ମିଠା ମନେହେଲା । ଆଖିପତା ଭରୀ ହୋଇ ଆସିଲା ବେଶ ।

ତା ଆଡ଼କୁ ଅନାଇ ଦେଖିଲି । ସେମିତି ବସିଅଛି । ଆଖିର ଦୃଷ୍ଟିଟା ଠିକ୍ କେଉଁଆଡେ ବୁଝାଯାଉ ନାହିଁ । ଅତ୍ୟନ୍ତ କ୍ଲାନ୍ତ ଏବଂ ଏକ ଘୃପା ଯନ୍ତ୍ରଣାର ଆଭସ ତା ଆଖିରେ । କିଏ ଜାଣେ ? ଏମାନଙ୍କର ପୁଣି ଢଙ୍ଗର ଅଭାବ ହୁଏନା । ହୁଏତ ଶୋଇ ପଡ଼ିବି ମୁଁ । ସେତେବେଳେ—ନାଃ, ହତଭଗାର ଏ ଜିନିଷଟାର ଗୋଟାଏ ବ୍ୟବସ୍ଥା ମୁଁ କାଲିଇ କରିବି । କଣ ଦରକାର ଥିଲା ମରିବା ସମୟରେ ମୋତେ ଏଇଟା ଦେବା ? ଟଗୋଟାଏ ରକ୍ତର ଦେଲା ! ରକ୍ତର ଡ଼େଲାଇ ତ ! ଝାଳ ଗନ୍ଧରେ ଭରା ଛିଣ୍ଡାକନାର ପୁଟୁଳିଟା । ଗୋଟାଏ ରାକ୍ଷସୀ କ୍ଷୁଧା-କ୍ଷୁଧା ଗନ୍ଧ ବି ଅଛି । ଝୋକଉଟା ମରନ୍ତ ମୁହଁର କଷ ରକ୍ତ ପୋଛିନେଇ କହିଥିଲା, ଏଟା ତୁ ରଖ୍ ।

ଏପରି ଭାବରେ କହିଥିଲା କଥାଟା ଯେ ଆଜି ବି ମନେ ପଡ଼ିଲେ ଛାତି ଭିତରେ—ଯାଉ ସେ କଥା ।

ଝିଅଟା ସେତେବେଳ ଯାଏ ସିମିତି ବସି ରହିଛି ଦେଖି ହଠାତ୍ କହି ପକାଇଲି—ତୁମେ ବି ଶୋଇପଡ଼ ଟିକିଏ ତଫାତ୍ରେ ।

ସେ ମୋ ମୁହଁକୁ କେତେକ୍ଷଣ ଚାହିଁ ରହିଲା । କହିଲା, ସୁର୍ଷିଛଡା ମଣିଷ ବାବା ।

ତା'ପରେ ଶୋଇ ପଡ଼ିଲା ।

ମୋ ଦେହଟା ସେତେବେଳେ ଆରାମରେ ବେଶ ଢିଲା ହୋଇ ଆସିଟି ଆଉ ସ୍ତ୍ରୀଲୋକମାନଙ୍କର ଦେହ ଯେ ଏତେ ଗରମ ତାହା ତା'ଠୁ କିଛିଟା ତଫାତ୍ ଥାଇ ମଧ୍ୟ ବେଶ୍ ବୁଝି ପାରିଲି । କି ଅଦ୍ଭୁତ ଗତି ଆଉ ବିଚିତ୍ର ପରିବେଶ ! ଲୋକେ ଦେଖିଲେ କଣ କହନ୍ତେ ଛି ଛି ! କିନ୍ତୁ ଏତେଟା ଆରାମ, ମୋର ଦୁସ କ୍ଳାନ୍ତ ଦେହରେ, ଏତେଟା ସୁଖବୋଧ ଆଉ କେବେ ପାଇଚି ବୋଲି ମନେ ହେଲା ନାହିଁ ।

ନାଃ, ତା ହେବନାହିଁ । ସେଇ ବନ୍ଧୁଟିର କଥା କହୁଚି । ଲକ୍ଷ୍ମୀଛଡ଼ା ମରିବା ସମୟରେ କହିଗଲା ପୁଟୁଳିଟା ଦେଇ, ମୋର ରକ୍ତ ।

କହିଲି—ରକ୍ତ କାହିଁକି ?

ଆଖିର ଜଳ ଆଉ କଳରୁ ନିଗୁଡୁଥିବା ରକ୍ତ ପୋଛି ଦେଇ କହିଲା, ମୋ ବୁକୁର ।

କହୁ କହୁ ରକ୍ତଶୂନ୍ୟ ଅସ୍ଥିର ଆଙ୍ଗୁଠି ଗୁଡ଼ାକ ଦେଇ ସାଉଁଟ ଲାଗିଲା ପୁଟୁଳିଟାକୁ ।

ମୁଁ ରାଗ ସମ୍ଭାଳି ପାରିଲି ନାହିଁ । କହିଲି, କେଉଁଥିପାଇଁରେ ?

କହିଲା, ଘର ବାନ୍ଧିବା ଆଶାରେ ।

ଏମିତି ଭବେ କହିଥିଲା କଥାଟା ଯେ ଗାଳିମନ୍ଦ ଦେବାକୁ ଯାଇ ମୋ ଗଳା ମଧ୍ୟରେ......।

ଯାଉ ସେ କଥା ।

ଝିଅଟା ଗୋଟାଏ ଯନ୍ତ୍ରଣା କାତର ଶବ୍ଦ କରି ଉଠିଲା ।

ପଚାରିଲି, କଣ ହୋଇଛି ?

ସେ ଅନାଇଲା । ଆଖି ଦିଟା ଯେମିତି ଯନ୍ତ୍ରଣାରେ ଲାଲ ଆଉ କାନ୍ଦିବାର ଆଭାସ ସେଥିରେ । କହିଲା, କିଛି ନାହିଁ ।

ତାର ଗରମ ନିଶ୍ୱାସ ବେଶ୍ ଆରାମ ଲାଗିଲା ମୋ ଦେହରେ । ଥଣ୍ଡା ଦେହରେ ଯେମିତି କିଏ ତାପ ସଞ୍ଚାର କଲା । ମନେ ହେଲା ହଠାତ୍, ଖୁବ୍ ଖରାପ ନୁହେଁ ଦେଖିବାକୁ । ଏଠି ଆଉ ନାକଟା ଯାହା ଟିକିଏ ଖରାପ । ବୁକା ଆଖିପତା ଛାତିରେ ଜଡେଇଥିବା ହାତ ଦୁଇଟା ଆଉ ତାର ନମିତ ବୁକୁ ବିଚିତ୍ର ମାୟା ସୃଷ୍ଟି କଲା । ସେ ପଚାରିଲା ମୋତେ, ନିଦ ଆସୁନି ତମର ?

ମୁଁ ଶୋଇବି ନାହିଁ । –କହିଲି । ମନେ ମନେ ଭାବିଲି, ତାହେଲେ ବଡ ସୁବିଧା ହୁଏ ତମର । ନା ସେକଥା ହେବ ନାଇ ବାବା । କଥା କହିଲେ ତ ସଂଶୟଟା ବଢେ ମୋ ମନରେ । ତା ଅପେକ୍ଷା ଚୁପ୍ କରି ରହୁନା ।

ବାହାରର ତାଣ୍ଡବ ସେତେବେଳେ ପୁରା ଦମରେ ଚାଲିଚି । ଟାଇଲ୍ ଭିତରୁ ପାଣି ଟୋପାର ଶବ୍ଦ ଆସୁଚି ଚଟାଣରୁ । ସଙ୍ଗରେ ଚୁଚୁଂନ୍ଦ୍ରାଙ୍କ କୀର୍ତ୍ତନ ।

ସେ ପୁଣି କୁଁ କୁଁ ରି ଉଠିଲା ।

କଣ ହୋଇଚି ?

ଟିକିଏ ଚୁପ୍ ରହି କହିଲା, ରୋଗ ।

ରୋଗ ! କି ରୋଗ ?

ସେ ନୀରବ ।

କହନା ବାପୁ ।

ତଥାପି ନୀରବ ।

ମୁଁ ହଠାତ୍ ଖେଙ୍କାରି ଉଠିଲି, କୁହନା ରୋଗଟା କଣ ? ଯକ୍ଷ୍ମା କଲେରା ଟଲେରା ହେଲେ ସଙ୍ଗେ ସଙ୍ଗେ ଉଠି ପଡ଼ିବି । ରୋଗ ସଙ୍ଗରେ ପିରୀତି ନାଇ ବାବା ।

ସେ ହଠାତ୍ ରକ୍ଷ ଗଳାରେ କହିଲା, ଆଉ କାହା ସଙ୍ଗରେ ଅଛି ତମର

ପୀରତି, ଶୁଣେ ?

ତା ସତ । ପିରୀତିର କଥା ତ ଉଠେ ନା ଏଠି । କହିଲି, କହନା ରୋଗଟା କଣ ?

ଯାହା ଏ ଲାଇନରେ ରହିଲେ—ସେ କହିଲା ।

ଲାଇନ୍‌ରେ ରହିଲେ ? ସର୍ବନାଶ । ଭୀଷଣ ସିଟକି ଉଠିଛି । ଭୟ ଘୃଣାରେ ପଗ୍ଚରିଲି, ଯା ଉପରେ ସନ୍ଧ୍ୟା ରାତିରେ—

ନିଶ୍ଚୟ । ପାଞ୍ଚଜଣ—ସେ କହିଲା ।

ଇସ କି ସାଂଘାତିକ । କହିଲି, ଚିକିତ୍ସା କରାଉଚ ନା କାହିଁକି ?

ପଇସା ପାଇବି କେଉଁଠୁ ?

କାହିଁକି, ନିଜର ରୋଜଗାର !

ସେ ତ ମୁନିବର ପଇସା ।

ମୁନିବ ? ଏଟା କଣ ଚାକିରି ନା କଣ ?

ନୁହେଁ ତ କଣ ? ମନିବର ବେଉସା, ଘର ଦ୍ୱାର ଲାଗା ଜିନିଷ । ଆମେ ଆସୁଁ ଖଟିବାକୁ ।

ଭୟାନକ ଦବିଗଲି କଥାଗୁଡ଼ାକ ଶୁଣି । ଏମାନେ ଖୁବ୍ ମଜାରେ ନଥାନ୍ତି ତାହେଲେ ? ଇଏ ବି ଚାକିରି ! କହିଲି, ମୁନିବ ଶଳା ବି କିମିତି ? ଚିକିତ୍ସା କରାଏ ନା କାହିଁକି ?

ଯେବେ ମର୍ଜି ହୁଏ । କାରଖାନାର ମଣିଷ ରାତିଦିନ କେତେ ମରୁଛନ୍ତି, କଳର ମାଲିକ କଣ ସେମାନଙ୍କର ଚିକିତ୍ସା କରାଉଛି ?

ଠିକ୍ । ତାର ବେଦନାର୍ତ୍ତ ଶାନ୍ତ ଆଖିର ଦୃଷ୍ଟି ଏଥର ମୋତେ ସତରେ ବିଗହରା କରିଦେଲା । ଯୁଦ୍ଧକ୍ଷେତ୍ରରେ ସୈନିକ ପ୍ରାଣଦିଏ, କିନ୍ତୁ ଜୀବନର ଏ କଣ ପତିରୋଧର ଲଢ଼ାଇ ? କହିଲି ତାହେଲେ—

ସେ କହିଲା, ତାହେଲେ ଆଉ କଣ ? ମାଲିକର ଆଖିରେ ଧୂଳି-ଦେଇ ଯେତେଟା ରୋଜଗାର ହୁଏ ସେଥିରେ ଚିକିତ୍ସା କରାଏ ।

ବଂଚିବାକୁ ?—ହସିବାକୁ ଯାଇ ମୁହଁଟା ବିକୃତ ହୋଇଗଲା ମୋର ।

ସମସ୍ତେ ତ ବଂଚିବାକୁ ------—ସେ କହିଲା ଯନ୍ତ୍ରଣାରେ ମୁହଁ ଚିପି ।

ଠିକ୍ ତ । ପଲ୍ଲୀକୁ ବାଘ ଆସୁଚି ଜାଣି ବି ମଣିଷ ଏଇ ପଲ୍ଲୀରେ ବସା ବାନ୍ଧେ; ଜନପଦ ଗଢ଼େ । ବନ୍ୟା, ଝଡ଼, କ୍ଷୁଧା କଣ ନାଇଁ ? ତଥାପି ଆଉ ସେଇ ଅଭଗା ଗୁହଁଥିଲା ଘର, ବାନ୍ଧିବାକୁ । ହ, ତଥାପି ପୁଟୁଳିର ପ୍ରତିଟି ପଇସା ରକ୍ତର ଟୋପା । ରକ୍ତର ଢ଼େଲା ଗୋଟାଏ—ଏଇ ପୁଟୁଳିଟା ।

ସେ କହିଲା, ଶୋଇବ ନାଇଁ ?

ନା ନିଦ ନାଇ ଆଖିରେ । ଯାର ନିଶ୍ୱାସ ଲାଗୁଛି । ଯନ୍ତ୍ରଣାର ଗରମ ନିଶ୍ୱାସ । ମିଷ୍ଟ ତାପ, ଲିକ୍‌ଲିକ୍ ନିଆଁପରି ମନେହେଲା । ଶକ୍ତକରି ପୁଟୁଳି ସମେତ ଜାମାଟା ଘୃପିଧରି ଉଠି ପଡ଼ିଲି । ବାହାରେ ଝଡ଼ ଜଳର ଦୁର୍ଯୋଗ ସେମିତିଇ । ନିଜର ଜାମା ଲୁଗା ପନ୍ଧି ନେଲି ।

ସେ ଉଠିଲା । ହସିବାକୁ ଗୁହିଁଲା : ଗୁଲିଲ ?

ପକେଟରେ ହାତ ଦେଇ ଶକ୍ତ କରି ପୁଟୁଳିଟାକୁ ଘୃପିଧରି କହିଲି,

ହତଭଗା କଳରୁ ନିଗିଡ଼ୁଥିବା ରକ୍ତଧାର ଗୁଟି ନେଇ କହିଥିଲା ମରୁ ମରୁ, ଏଟା ତୁ ରଖ । କାହିଁକି ? କାହିଁକି ?

ଝିଅଟାର କିମିତି ଆଖି ? ସମସ୍ତ ମୁହଁଟି ଲଞ୍ଛନାର ଦାଗରେ ଭରା, ମୋଟା ଓଠ । କିନ୍ତୁ ଏମିତି ମୁହଁ ତ ଆଉ କେଉଁଠି ଦେଖିନି ।

ଭୀଷଣ ବେଗରେ ତା ଆଡ଼କୁ ଫେରି ପୁଟୁଳିଟା ତା ହାତକୁ ଟେକି ଦେଲି । ତାର ନିଶ୍ୱାସ ଲାଗିଲା ମୋ ଦେହରେ ମୁହୂର୍ତ୍ତକ ପାଇଁ ଆଖି ନୁଆଇଁ ଗୋଟାଏ ଅଶାନ୍ତ କ୍ରୋଧରେ ଦାନ୍ତରେ ଦାନ୍ତ ଘୃପିଲି ପଛରେ ରହି । ହାଓ୍ୱାରେ ଭାସିଗଲା ସେ କଥା । କହିଲି, ପଛରୁ ଡ଼ାକ ନାଇଁ ।

ବୋଝମୁକ୍ତ ମୁଁ ଉତ୍ତର ଆଡ଼କୁ ଗୁଲିଲି । ବାନପ୍ରସ୍ଥ ନୁହେଁ, ବନ୍ଧୁର ଘରକୁ, ପୂର୍ବ ହାଓ୍ୱା ଠେଲି ଦେବାକୁ ଗୁହିଁଲା ପଶ୍ଚିମ ଗଙ୍ଗାର ଘାଟ ଆଡ଼େ ।

# ବନ୍ଧୁ ପାଇଁ ଭୂମିକା

## ବିମଳ କର

ମୋର ବନ୍ଧୁ ସ୍ୱର୍ଗତ ବସୁଧା ମୁଖୋପାଧ୍ୟାୟ ଅଖ୍ୟାତ ଓ ଅଜ୍ଞାତ ଲେଖକ । ପ୍ରାୟ କୋଡ଼ିଏ ବାଇଶ ବର୍ଷ ଆଗେ ତାର ଖଣ୍ଡେ ବହି ଆମେ ତିନି ବନ୍ଧୁ ମିଳି ପ୍ରକାଶ କରିଥିଲୁଁ । ବସୁଧା ସେତେବେଳେ ଆମ ସଙ୍ଗରେ ଥିଲା । ସେଇ ବହି ଯଥାରୀତି ଗୋୟାବାଗାନର ଏକ ଛାପାଖାନାରେ ଦୀର୍ଘ ଦିନ ପଡ଼ି ରହିରହି ନଷ୍ଟ ହୋଇ ଯାଇଚି । ଫୁଟ୍‌ପାଥରେ ଗୁରିପାଞ୍ଚ ଖଣ୍ଡ ବହି ଆମେ ଦି-ଗୁରି ଅଣାରେ ବିକ୍ରି କରି ପାରିଥିଲୁଁ । ସେ ବହି କିଏ କିଣିଛନ୍ତି ବା ପଢ଼ିଛନ୍ତି ବୋଲି ଆମେ ଆଶା କରି ନ ପାରୁଁ ।

ବସୁଧାର ସେ ବହି ଏତେକାଳ ପରେ ପୁଣି ନୂଆହୋଇ ଛପା ହେଉଛି । ଛାପୁଚି ଭୁବନ, ମୋର ଏବଂ ବସୁଧାର ବନ୍ଧୁ । ପ୍ରଥମ ଥର ଛପା ସମୟରେ ମଧ୍ୟ ସେ ଥିଲା ।

'ନରକରୁ ଯାତ୍ରା'—ଏଇ ନାମରେ ହିଁ ପ୍ରଥମ ଥର ବହିଟି ବାହାରି-ଥିଲା । ଏଥର ମଧ୍ୟ ସେଇ ନାମ ରଖା ହେଲା । ପୁରୁଣା ବହିଟିରେ ଥିଲା ତିନୋଟି ଗଳ୍ପ, ଏଥର ଆଉ ଦୁଇଟି ଯୋଗ ହୋଇଛି । ବସୁଧା ମରିଥିଲା ଏପରି ଏକ ହାସପତାଳରେ, ଯେଉଁଠିକି ଯିବା ବା ତାର ଶେଷ କୌଣସି ଲେଖା (ଯେବି ସେ ଲେଖିଥାଏ) ସଂଗ୍ରହ କରିବା ସମ୍ଭବ ନଥିଲା । ଆମେ ଆମର ଜଣା ଲେଖା ସଂଗ୍ରହ କରିହିଁ ବହିଟି ପ୍ରକାଶ କରୁଛୁଁ ।

ପାଠକମାନଙ୍କ ନିକଟରେ ମୋର ପୂର୍ବରୁ ମାର୍ଜନା ଭିକ୍ଷା କରିବା ଉଚିତ । ମୁଁ ଲେଖକ ନୁହେଁ, ଭୂମିକା କେମିତି ଲେଖିବାକୁ ହୁଏ ଜାଣେ ନା । ମୋର ଭଷା ମଧ୍ୟ ଭୂମିକାର ଉପଯୋଗୀ ନୁହଁ । ଭୁବନଇ ମୋତେ ଏ

ଦାୟିତ୍ୱ ଦେଇଛି । ସେ ମନେକରେ ଯୌବନରେ ଯେତେବେଳେ ମୁଁ ବସୁଧା ସଙ୍ଗରେ ଲେଖାଟେଖାର ଚେଷ୍ଟା କରୁଥିଲି ସେତେବେଳେ କାମଟା ମୁଁ କରିବା ଉଚିତ । ଭୁବନ ଆହୁରି ମନେକରେ ବସୁଧାର କଥା ମୁଁ ତା ଅପେକ୍ଷା ବେଶୀ ଜାଣେ । କଥାଟା ହୁଏତ ଠିକ୍ ନୁହେଁ । କଲମ ନ ଧରିଲେ ବି ଭୁବନ ମୋ ଅପେକ୍ଷା ବସୁଧାର କମ ଅନୁରାଗୀ, ଗୁଣମୁଗ୍ଧ ଓ ଘନିଷ୍ଠ ନଥିଲା । ତଥାପି ବସୁଧାର ବହିର ଭୂମିକା ମୋତେ ହିଁ ଲେଖିବାକୁ ଦେଇଛି ।

ଦୀର୍ଘ କୋଡିଏ-ବାଇଶ ବର୍ଷ ପରେ ବସୁଧା ପରି ଅଖ୍ୟାତ ଅଜ୍ଞାତ ଲେଖକର ଅପଠିତ ବିସ୍ମୃତ ଗୋଟିଏ ବହି ପୁଣି କାହିଁକି ଛାପୁଛି ତାର ଗୋଟାଏ କୈଫିୟତ ଥିବା ଦରକାର । ବନ୍ଧୁତ୍ୱ ବିନା ଯାର କୌଣସି କୈଫିୟତ ଥାଇ ନପାରେ । ଅବଶ୍ୟ ମୃତ ବନ୍ଧୁ ପ୍ରତି ଅନୁରାଗ ପ୍ରଦର୍ଶନ କରି ବ୍ୟକ୍ତିଗତ ଭାବରେ ଆମେ କିଛି ସାନ୍ତ୍ୱନା ପାଉଛୁ । ......ଦ୍ୱିତୀୟ କାରଣଟି କିଛି ଅନ୍ୟ ରକମ । ମାସ ଚାରି ପାଞ୍ଚ ଆଗେ ଭୁବନ ଥରେ କାଶୀ ଯାଇଥିଲା । କାଶୀରେ ରାମାପୁରର ଜଣେ ଭଦ୍ରଲୋକଙ୍କ ସଙ୍ଗରେ ତାର ଆଳାପ ହୁଏ । ଭଦ୍ରଲୋକ ବୃଦ୍ଧ । ଦିନେ ତାଙ୍କ ବୈଠକଖାନାରେ ବସି ଗଳ୍ପକରିବା ସମୟରେ, ଜଣେ ପିଲା ଆସି ଭୁବନକୁ ଖଣ୍ଡିଏ ବନ୍ଧା ହୋଇଥିବା ଛବି ଦେଇଗଲା । କିଛିଦିନ ପୂର୍ବରୁ ଘରର ମଇଳା ସଫା କରିବା ସମୟରେ ଛବିଟି ପଡ଼ିଯାଇ ତାର କାଚ ଭାଙ୍ଗିଯାଇଚି ପୁଣି ସେଟି ବନ୍ଧାହୋଇ ଘରକୁ ଆସେ । ସ୍ୱଭାବତ ଛବିଟି ଭୁବନ ଆଖିରେ ପଡ଼ିଥିଲା । ଧୂସର ବିବର୍ଣ୍ଣ ଛବି ଭିତରେ ବସୁଧାକୁ ଭୁବନ ଦେଖିବାକୁ ପାଏ । ତିନୋଟି ମୁଖରୁ ଗୋଟିଏ ବସୁଧା, ଅନ୍ୟ ଜଣେ ବୃଦ୍ଧ ନିଜେ, ଅନ୍ୟ ଜଣକ ତାଙ୍କ ଝିଅ । ଭୁବନ କହିଲା, ଯାକୁ ମୁଁ ଚିହ୍ନେ, ଇଏ ମୋର ବନ୍ଧୁ ବସୁଧା ।' କହି ସେ ବସୁଧାର ଅନ୍ୟ ପରିଚୟ ଦେଲା, 'ସେ ଲେଖକ ଥିଲା ।' ବୃଦ୍ଧ କହିଲେ, 'ମୋ ଝିଅ ବି କହୁଥିଲା' ସେ କୁଆଡ଼େ ଲେଖୁଥିଲା । ମୁଁ କେବେ ଲେଖିବାର ଦେଖିନି । ତେବେ ହରିଦ୍ୱାରକୁ ଯାଇ ସେଥର ଯାକୁ ଏକ କ୍ଷୟ-ରୋଗୀର ସେବା କରିବାର ଦେଖିଛି । ଏଇ ଛବିଟା ହରିଦ୍ୱାରର । ପିଲାଟା ଯେମିତି ସନ୍ନ୍ୟାସୀ ପରି ଥିଲା ।......ତୁମେ ଯାର ଖବର ଜାଣ ?' ଭୁବନ କଣ ଭାବି କେଜାଣି ବସୁଧାର ମୃତ୍ୟୁ ସମ୍ବାଦ ଦେଇନାହିଁ । କହିଥିଲା, 'ନା ମୁଁ କିଛି ଜାଣେନା ।'

କାଶୀରୁ ଫେରି ଭୁବନର ଯେମିତି ଖିଆଲ ଗ୍ରସିଲା, ବସୁଧାର ସେ ବହି ଇଏ ଛାପିବ । ମୁଁ ଅନେକ ଥର ପଗ୍ଭରିଛି କ'ଣ କି ? ଛାପବି, ଛାପିବା ଆମର ଉଚିତ । ବସୁଧାକୁ ମୁଁ ଆଗରୁ କେତେଥର କହିଛି, 'ମୋର ଯଦି ପଇସା ଥାଆନ୍ତା ମୁଁ ତା ବହି ଆଗରୁ ଛାପିଥାନ୍ତି । ମୋର ଅବସ୍ଥା ବର୍ତ୍ତମାନ ଭଲ, ମୁଁ ତା ବହି ପାଇଁ ଟଙ୍କା ଖରଚ କରିବାକୁ ରାଜି ।'

ମୋର ମନେହୁଏ, ଭୁବନ ଆଜି ପ୍ରାୟ ଛୟାଳିଶ, ଷଡ଼ଗ୍ଭଳିଶ ବର୍ଷ ବୟସରେ ମଧ୍ୟ ସେମିତି ଆବେଗପ୍ରବଣ, ଉତ୍ସାହୀ ରହିଛି, ମୁଁ ଯାହା ପାରିନାହିଁ । ମୋର ଏକମାତ୍ର ସାନ୍ତ୍ୱନା, ବସୁଧା ପାଇଁ ମୁଁ ଏ ଭୂମିକାଟିକୁ ଲେଖି ପାରିଛି ? ପାଠକେ ନିଜ ଗୁଣରେ ମୋର ଏ ଅକ୍ଷମତା ମାର୍ଜନା କରିବେ ।

ବସୁଧାର ଜନ୍ମ ବଙ୍ଗଳା ପ୍ରଦେଶରେ, ପଶ୍ଚିମ ବଙ୍ଗରେ । ପ୍ରଥମ ଯୁଦ୍ଧ ବନ୍ଦ ହେବା ବର୍ଷରେ, ଉଣିଶ ଶ' ଅଠର ସାଲରେ ତାର ଜନ୍ମ । ବୋଧହୁଏ ମାର୍ଗଶିର ମାସରେ । ତା ବାବା ଥିଲେ ପୋଷ୍ଟମାଷ୍ଟର । ବଦଳିର ଚାକିରି ବୋଲି ବସୁଧା ପ୍ରଭୃତି ହଜାର ଘାଟରେ ପାଣି ପିଇଛନ୍ତି । ବଙ୍ଗଳା ଓ ବିହାର ମଧ୍ୟରେ ଅବଶ୍ୟ । ବସୁଧାର ମା ଥିଲେ ନମ୍ର ସ୍ୱଭାବ, ଶାନ୍ତ, ଧର୍ମଭୀରୁ । ତାର ଏକ ବଡ଼ ଭଉଣୀ ଥିଲେ, ବସୁଧା କଲେଜରେ ପଢ଼ିବା ସମୟରେ ତା' ଦିଦି ସ୍ୱାମୀ ଗୃହରେ ମରିଯାନ୍ତି । ବସୁଧାର ଅନ୍ୟ କୌଣସି ଆତ୍ମୀୟସ୍ୱଜନଙ୍କ କଥା ଆମେ ଜାଣିନୁ ।

କଲିକତାରେ କଲେଜରେ ପଢ଼ିବାକୁ ଆସିଲା ଯେବେ ବସୁଧା, ସେତେବେଳେ ଆମ ସଙ୍ଗେ ଆଳାପ । ବନ୍ଧୁ ହିସାବରେ ବସୁଧା ଥିଲା ଦୁର୍ଲଭ । ସେ ଯେତେ ପଢ଼ୁନଥିଲା, ତାର ଦଶଗୁଣ ନିଜ ମନକୁ ନାନା କଥା ଭାବୁଥିଲା । ଯେତେବେଳେ ଆମକୁ କିଛି କହୁଥିଲା ବା ବୁଝାଉଥିଲା, ତାର ଲମ୍ବା ଲମ୍ବା ଗଳାର ସ୍ୱର ଆବେଗରେ କେମିତି ଯେପ୍ରରି ଅଦ୍ଭୁତ ସୁନ୍ଦର ହୋଇ ଉଠୁଥିଲା । ବସୁଧାର ଆଖି କହୁଥିଲା, ସେ ବେଶ୍ ଭାବପ୍ରବଣ । ତା' ମୁହଁର ଗଢ଼ଣ ଥିଲା ଲମ୍ବା, ଓଠ ସରୁ ନାକ ବେଶ ପତଳା ଆଉ ଉଚ୍ଚା । କିନ୍ତୁ ଆଖି ଦୁଇଟି ଥିଲା ସାମାନ୍ୟ ଛୋଟ, ଖୁବ ଝକ ଝକ ମୋଟା ମୋଟା ଭୃଲତା । ତାର ରଙ୍ଗ ଥିଲା ଅଧା ଗୋରା ମୁଣ୍ଡର ବାଳଗୁଡ଼ାକ କୁଞ୍ଚୁକୁଞ୍ଚୁଆ । ଚେହେରାରେ ତାର ଏମିତି କିଛି ନ ଥିଲା ଯାହା ଅନ୍ୟକୁ ଆକର୍ଷଣ କରିବ । ସାଧାରଣ ବଙ୍ଗାଳୀ ପିଲାଙ୍କଠାରୁ ସେ କିଛି ମାତ୍ର ଅଲଗା ନଥିଲା । କିନ୍ତୁ ଆମେ

ଯେଉଁମାନେ ବସୁଧାର ଘନିଷ୍ଠ ଥିଲୁ, ସେଇମାନେହିଁ କେବଳ ଜାଣିଥିଲୁ ବସୁଧାର ସ୍ୱଭାବର ଛାଞ୍ଚଟା ଆମ ପରି ନୁହେଁ, କେଉଁଠି ଯେପରି ଗୋଟାଏ ଆକର୍ଷଣ ଅଛି ।

କଲେଜରେ ବି. ଏ. ପଢ଼ିବା ସମୟରେ ବସୁଧା ଲେଖାର ଚର୍ଚ୍ଚା ଆରମ୍ଭ କରେ । ତା' ଆଗରୁ ହୁଏତ ଲେଖିଥିଲା, କିନ୍ତୁ ଆମେ ସେ ଖବର ପାଇ ନାହୁଁ । ବସୁଧାର ପ୍ରଥମ ଲେଖା ଗଳ୍ପ ଆମର ଜଣେ ବନ୍ଧୁଙ୍କ କାଗଜରେ ବାହାରିଥିଲା । ସେଇ କାଗଜ ଓ ସେ ଗଳ୍ପ ହଜି ଯାଇଛି । ସେତେବେଳେ କଲିକତାରେ ବୋମା ପଡ଼ିବା ସମୟରେ, ମଣିଷ ଭୟ ଓ ଆତଙ୍କରେ ପଳାଉଥାନ୍ତି । ଏଇ ରକମ ଅସ୍ଥିରତା ଭିତରେ ସମସ୍ତେ ଯାହା ଲେଖୁଥିଲେ ବସୁଧା ବି ସେଇଭଳି ଏକ ଗଳ୍ପ ଲେଖିଥିଲା । ଏକବାରେ ମାମୁଲି ଗଳ୍ପ; ଏତେ ସାଧାରଣ ଯେ ଆଜି ମୋର କିଛି ମନେନାହିଁ ସେ ଗଳ୍ପଟା ସମ୍ବନ୍ଧରେ ।

ମୋର ବିଶ୍ୱାସ, ବସୁଧା ବି ମନେ କରୁଥିଲା ଯେ ତାର ପ୍ରକୃତ ଲେଖା ଆରମ୍ଭ ହୋଇଥିଲା ଚେୟାଳିଶ ସାଲରୁ । ସେତେବେଳେ ଆମେ ନମସ୍ତେ ଚାକିରିଆ, ବସୁଧା ଚାକିରି କରୁଥିଲା ସିଭିଲ ସପ୍ଲାଇରେ; ମୁଁ ଆଉ ଭୁବନ ଅନ୍ୟତ୍ର । ବଉବଜାରର ଗୋଟାଏ ମେସ୍‌ରେ ରହୁଥିଲା ବସୁଧା, ବନ୍ଧୁ-ବାନ୍ଧବ କହିବାକୁ ଗଲେ ଆମେ ଦିଜଣ । ମେସ୍‌ଘରେ ରୋଜ୍ ଉପରବେଳା ଆମର ଆଡ୍‌ଡ଼ା ଜମୁଥିଲା, ବସୁଧା ତା' ଲେଖାର କଥା କହୁଥିଲା । କିଛି ଯଦି ଲେଖି ରଖିଥାଏ ଆମକୁ ପଢ଼ି ଶୁଣାଉଥିଲା। ତା ମନ ବଡ଼ ଅସ୍ଥିର ଥିଲା, କେବେ ପୂରାକରି କିଛି ଲେଖୁ ନ ଥିଲା, ଗୋଟାଏ କିଛି ଆଜି ଲେଖିଚି ବୋଲି କହେ ତ କାଲି ଆଉ ଲେଖୁ ନ ଥିଲା । ଅନେକ ଲେଖା ଆରମ୍ଭ କରିଚି, ଅଳ୍ପ କିଛି ଲେଖି ଛିଣ୍ଡାଇ ଦେଇଛି । ମାସ ମରେ ମାସ ସେ ଖାଲି ଲେଖା କଥା କହୁଚି ମାତ୍ର ଏକାଅଧ୍ୟାୟ ବି ଲେଖିନାହିଁ ।

ଏଇ ବହିର ଯେଉଁଟି ପ୍ରଥମ ଗଳ୍ପ, "ବିନୋଦିନୀର ଦୁଃଖ"— ସେତେବେଳର ଏକ ମାସିକ ପତ୍ରରେ ଛପା ହୋଇଥିଲା । ଗଳ୍ପଟିରେ ବସୁଧାର ପ୍ରଥମ ଥର ଯେପରି କିଛି ଗୋଟାଏ କହିବାର ଅଛି ବୋଲି ଧରା ପଡ଼ିଲା । ତେର ବର୍ଷ ବୟସରେ ବିବାହ ହୋଇଥିଲା ବିନୋଦିନୀର, ସ୍ୱାମୀର ବୟସ ସେତେବେଳେ ଅଠର । ଲାଲପାଡ଼ର ମୋଟା ଶାଢ଼ୀ ଦେହରେ ରହୁନଥିଲା ବୋଲି ବିନୋଦିନୀ ପୁଟୁଳି ପରି କରି ଅଧେ ଶାଢ଼ୀ ପିଠିରେ ବୋହି

ବୁଲୁଥିଲା । ତାର ସ୍ୱାମୀ ଗଙ୍ଗାପଦ ବୋହୂପାଇଁ ଷ୍ଟିମର ଘାଟ ହାଟରୁ ମାଟି ଲିଷେଇ, କାଚଚୁଡ଼ୀ, ଚିନା ସିନ୍ଦୁର, କଞ୍ଚା ପିଜୁଳି କିଣି ଆଣୁଥିଲା ଲୁଗ୍ଲଇ ଲୁଗ୍ଲଇ । ଆଣି ବୋହୂକୁ ଦେଉଥିଲା, ଗଡିରେ ତକ୍ତପୋଷ ତଳୁ ଲୁଗ୍ଲ ଜିନିଷଗୁଡ଼ାକ ବାହାର କରି ବିନୋଦିନୀ ଖେଳିବାକୁ ବସୁଥିଲା, କିମ୍ବା ଗଡିରେ କଞ୍ଚା ପିଜୁଳିଟା ଲୁଚାଇ ଖାଉଥିଲା । ଗଙ୍ଗାପଦ ଷ୍ଟିମର ଘାଟରେ ଚାକିରି ପାଇବା ଦିନ ବିନୋଦିନୀ ପାଇଁ କିଣି ଆଣିଥିଲା କାଚର ଗୋଟାଏ ଗୌରଙ୍ଗ ଠାକୁର । ବିନୋଦିନୀ ସେଇ ଦିନଠାରୁ ଠାକୁର ଭକ୍ତ । ଏମିତି ଭାବରେ ବିନୋଦିନୀ ଯୁବତୀ ହେଲା, ପ ଲାଝିଲାଙ୍କ ମା ହେଲା, ଶିଗ୍ରୀ ବୋହୂ ହେଲା, ଯୌବନ ଚ୍ଲଲିଗଲା ବୁଢ଼ୀ ହେବା ଉପରେ, ଏମିତି ସମୟରେ ତା ସ୍ୱାମୀ ଗଙ୍ଗାପଦ ମରିଗଲା । ସ୍ୱାମୀ ମରିଯିବା ପରେ ବିନୋଦିନୀ ଏ ସଂସାରରେ ନିଜକୁ କାହା ସହିତ ଖାପ୍ ଖୁଆଇ ପାରିଲା ନାହିଁ । ପଇଁଚ୍ଲିଶ ବର୍ଷ ବୟସରେ ମଧ୍ୟ ସ୍ୱାମୀ ସଙ୍ଗରେ ତା' ଜୀବନ ଏତେ ବେଶୀ ଜଡ଼ିତ ଯେ ସେ ଆଉ ତା ସ୍ୱାମୀ ସେମାନଙ୍କ ସମ୍ପର୍କର ଯେଉଁ ନକ୍ସା (ବା ପ୍ୟାଟର୍ଣ୍ଣ) ତିଆରି କରିଥିଲେ, ସ୍ୱାମୀର ମୃତ୍ୟୁପରେ ତାହା ହଠାତ୍ ନଷ୍ଟ ହୋଇଗଲା । ବିନୋଦିନୀର ଜୀବନ ଲାଗେ ଶୂନ୍ୟ, ଅର୍ଥହୀନ, ଅକାରଣ । ଯେପରି ଯାଉ ଯାଉ ଗୋଟିଏ ନଦୀ ହଠାତ କେଉଁଠି ହଜିଯାଇଛି, ତାର ଆଉ ପ୍ରବାହ ରହିଲା ନାହିଁ । ବିନୋଦିନୀର ମନର ଅବସ୍ଥାର ଗୋଟିଏ ବର୍ଣ୍ଣନା ଏଇ ପ୍ରକାରର; ଯେଉଁ ରେଖା ଆଉ ରଙ୍ଗଦେଇ ବିଧାତା ତା ପାଇଁ ଏଇ ସଂସାରର ଗୋଟିଏ ଅତିକ୍ଷୁଦ୍ର ଚିତ୍ର ଆଙ୍କ ଥିଲେ, ସେଇ ରେଖାଗୁଡ଼ିକରୁ ଅଧେ ଲିଭିଗଲା, ଅନେକ ରଂଗ ଧୋଇଗଲା । ଏବେ ବିନୋଦିନୀ ଆଉ ଚିତ୍ର ନୁହେଁ, ଆଉ କେବେ ତାର ଚିତ୍ର ହେବାର ସମ୍ଭାବନା ନାହିଁ । ବିନୋଦିନୀ ତାର ଶୂନ୍ୟତା ପୂର୍ଣ୍ଣ କରିବାପାଇଁ ପୂଅ କଥା ଭବିଚି, କିନ୍ତୁ ମନ କୌଣସି ସାଡ଼ା ଦେଇନି; ଠାକୁର ଦେବତା ନେଇ ଭୁଲି ପାରିନାହିଁ । ବିନୋଦିନୀର ବଡ଼ ଆଦରର ଥିଲ କାଚର ଶ୍ରୀଗୌରଙ୍ଗ । ପଇଁଚ୍ଲିଶ ବର୍ଷ ଧରି ଗୌରଙ୍ଗଙ୍କୁ ସେ ନିତ୍ୟ ସେବା କରିଚି, ଗଙ୍ଗାପଦର ଅବର୍ତ୍ତମାନରେ ଗୌରଙ୍ଗ ମଧ୍ୟ ଖାଲି କାଚ ହୋଇ ରହିଲେ । ଶେଷରେ ବିନୋଦିନୀ ଦିନେ ହଠାତ୍ ଅନୁଭବ କଲା : ପ୍ରତିମାର ବିସର୍ଜନ ହୁଏ, ତାର ସାଜ-ଶୋଭା, ମାଟି ସବୁ ବଡୁନି ଗଳିଯାଏ କିଛି ହେଲେ ଆଉ ଅବଶିଷ୍ଟ ରହେନା । ମଣିଷ

ଜୀବନରେ ବି ଏଇ ବିସର୍ଜନ ଗୁଡ଼ିକ ଅତି ସତ୍ୟ । ଗଙ୍ଗାପଦ ଓ ବିନୋଦିନୀକୁ ଯେମିତି କିଏ ସବୁ ବିସର୍ଜନର ବାଜଣା ବଜାଇ ନଦୀ ଘାଟରେ ଆଣି ରଖିଛନ୍ତି । ସ୍ୱାମୀ ଯାଇଛନ୍ତି, ବିନୋଦିନୀ ପାଇଁ ନଦୀ ଜଳ ଅପେକ୍ଷା କରି ରହିଛି । ଗୋଟିଏ ନଦୀ ଜଳରେ ଉଭୟ ମୂର୍ତ୍ତି ବୁଡ଼ି ମିଳାଇ ଏକାକାର ହୋଇ ରହିବେ, ବିନୋଦିନୀ ଏହା ଭାବି ଈଶ୍ୱରଙ୍କୁ ଆଜି ପ୍ରଣାମ କଲା ।

'ବିନୋଦିନୀର ଦୁଃଖ' ବସୁଧା ତା ମା'ଙ୍କ କଥା ଭାବି ଲେଖିଥିଲା । ତାର ମା ଆଉ ବିନୋଦିନୀ ତଫାତ୍ ନୁହନ୍ତି ଧର୍ମଭୀରୁ ହେବା ସତ୍ତ୍ୱେ ବି ତାର ମା ସ୍ୱାମୀଙ୍କ ମୃତ୍ୟୁ ପରେ ନା ବସୁଧା ନା ଧର୍ମକୁ ଆଶ୍ରୟ କରି ସାନ୍ତ୍ୱନା ପାଇଥିଲେ । ବସୁଧା କହୁଥିଲା; ମା ପରକାଳରେ ବି ବିଶ୍ୱାସ କରନ୍ତି ନାଇଁ । କେବଳ ମାତ୍ର ମୃତ୍ୟୁକୁ ହିଁ ବିଶ୍ୱାସ କରନ୍ତି । ମୁଁ କିଛି ବୁଝି ପାରେ ନା ।

ବସୁଧାର ମା ମରିଯିବା ପରେ, ବେଶ କିଛିଦିନ ପରେ ସେ ଆଉ ଗୋଟାଏ ଗଳ୍ପ ଲେଖେ । ଗଳ୍ପଟିର ନାମ 'ଦୁଃଖମୋଚନ' । ଏ ବହିର ସେଟି ଦ୍ୱିତୀୟ ଗଳ୍ପ । ଗୋଟିଏ ଅପ୍ରଚଳିତ ପତ୍ରିକାରେ ଗଳ୍ପଟ ଛପା ଯାଇଥିଲା । 'ବିନୋଦିନୀର ଦୁଃଖ' ଲେଖା ହୋଇଥିଲା ସାଧୁ ଭାଷାରେ । ବସୁଧା ପ୍ରଥମେ ପ୍ରଥମେ ସେମିତି ଲେଖୁଥିଲା । 'ଦୁଃଖମୋଚନ' ସେ ଚଳତି ଭାଷାରେ ଲେଖିଚି ।

'ବିନୋଦିନୀର ଦୁଃଖ' ଗଳ୍ପରେ ବିନୋଦିନୀର ଶେଷ ସାନ୍ତ୍ୱନା ଥିଲା ମୃତ୍ୟୁ । ମୃତ୍ୟୁକୁ ବିନୋଦିନୀ ଦୁଃଖମୋଚନର ପରିଣତି ଭାବେ ଦେଖିଥିଲା । କଥାଟା ବୋଧହୁଏ ଠିକ୍ ଭାବେ କୁହା ହେଲ ନାଇଁ । କହିବା ଉଚିତ ଥିଲା, ବିନୋଦିନୀ ମୃତ୍ୟୁ ଭିତରେ ଏକ ରକମର ଆତ୍ମିକ ପୁନର୍ମିଳନ ଆଶା କରିଥିଲା । 'ଦୁଃଖମୋଚନ'ରେ ଏଇ ମୃତ୍ୟୁକୁ ଯେମରି ଆହୁରି ବେଶୀକରି କାମନା କରିବାର ଚେଷ୍ଟା କରିଚି ବସୁଧା ।

ଆଗରୁ କହିଛି, ଗଳ୍ପଟା ବସୁଧା ତା ମା'ଙ୍କ ମୃତ୍ୟୁ ହେବା ପରେ ଲେଖିଥିଲ । ଯାର ମା ମରିବା ପରେ ବସୁଧା ସଙ୍ଗେ ଗୋଟଏ ଝିଅର ପରିଚୟ ଗଢ଼ି ଉଠିଲ । ତାର ନାମ ଏଠି ଗୋପନ ରଖିଲି, ସୁବିଧା ପାଇଁ ଆମେ ତାକୁ ନିରୁ ବା ନିରୁପମା ବୋଲି ଉଲ୍ଲେଖ କରିବୁଁ । ବସୁଧା ତା ମାଙ୍କର ଅସୁସ୍ଥତା'ର ଖବର ପାଇ ଗାଁକୁ ଗ୍ଲଲିଗଲା; ମାଙ୍କ ମୃତ୍ୟୁପରେ ଶ୍ରାଦ୍ଧକର୍ମ ପର୍ଯ୍ୟନ୍ତ ସେ ଗାଁରେ ହିଁ ଥିଲ । ଆମେ–ମୁଁ ଆଉ ଭୁବନ ବସୁଧାର ମା'ଙ୍କ ଶ୍ରାଦ୍ଧ ଦିନ ତା

ଗାଆଁ ଘରଠାରୁ ଯାଇଥିଲୁଁ । ବସୁଧା ସେତେବେଳେ ଆମକୁ ଏକ ଅଦ୍ଭୁତ କଥା କହିଲା । କହିଲା; ଶ୍ମଶାନରେ ଯେତେବେଳେ ନଦୀ କୂଳରେ ମା'ର ଚିତା ଦାଉ ଦାଉ କରି ଜଳୁଚି ସେତେବେଳେ ଏକ ଯାମୁ ଗଛତଳେ ବସି ସେ ପ୍ରାୟ ନିରୁର କଥାହିଁ ଭାବିଛି । ତା'ପରେ ଏଇ ଯେଉଁ କେତେଦିନ—ଶୋକ ଆଉ ଅଶୌଚର ପର୍ବ—ଏଇ କେତେଦିନ ସେ ମାଙ୍କ କଥା ଖୁବ୍ ଅଳ୍ପ ଭାବିଚି, ନିରୁ କଥାହିଁ ଭାବିଚି ବେଶୀ । କାହିଁକି ?

ବସୁଧାର ସବୁ କଥାରେ 'କାହିଁକି'ର ଏକ ଖୋଇଥିଲା । ମାଙ୍କ ଲାଗି ଯେତେଟା ଶୋକ ଅନୁଭବ କରିବା ଉଚିତ ଥିଲା, ବେଦନା ବୋଧ କରିବା କର୍ତ୍ତବ୍ୟ ଥିଲା, ସେତେଟା ଶୋକ ବା ବେଦନା ସେ ଅନୁଭବ କରିନାଇଁ ଉପରନ୍ତୁ ନିରୁର କଥାହିଁ ଭାବିଚି ଖାଲି—ଏଇ ଗ୍ଳାନିରେ ତା ମନ ଅନେକ ଦିନ ବିମର୍ଷ ରହିଲା । ଯେପରି କି ସେ ଏକ ଅପରାଧୀ, କେଡ଼େ ଗୁରୁତର ଅନ୍ୟାୟ ସେ ନ କରିଚି ! ଆମେ ତାକୁ ବୁଝାଇ ପାରିଲୁଁ ନାଇଁ, ଅକାରଣରେ ସେ ନିଜକୁ କଷ୍ଟ ଦେଉଚି ।

କିଛିଦିନ ଏଇ ଭାବରେ, ବିମର୍ଷତା ଓ ଗ୍ଳାନି ମଧ୍ୟରେ କଟିଲା ବସୁଧାର । ନିରୁକୁ ବି ସେ ଅସୁଖୀ ଅପ୍ରସନ୍ନ କରି ରଖିଲା ; ତାପରେ ନିଜ ମନ ଭିତରେ ଏକ ଉତ୍ତର ପାଇ ବସୁଧା 'ଦୁଃଖମୋଚନ' ଗଳ୍ପଟି ଲେଖିଲା ।

'ବିନୋଦିନୀର ଦୁଃଖ' ଗଳ୍ପରେ ବିନୋଦିନୀର ମୃତ୍ୟୁ ମଧ୍ୟରେ ତାର ନିବୃତ୍ତି ହୋଇଥିଲା ଅନୁଭବ କରିଚି । 'ଦୁଃଖମୋଚନ'ରେ ସୁଖେନ୍ଦୁ ଅନୁଭବ କରିଛି ମୃତ୍ୟୁ ନିଷ୍କ୍ରିୟ, ଜଡ଼ ତୁଲ୍ୟ । ଜୀବନ ପ୍ରତିକ୍ରିୟା ସୃଷ୍ଟି କରେ, ମୃତ୍ୟୁ କୌଣସି ପ୍ରତିକ୍ରିୟା ସୃଷ୍ଟି କରେନା । ସରଳ କରି କହିଲେ କଥାଟା ହେଉଛି, ବିନୋଦିନୀ ମୃତ୍ୟୁକୁ ଗ୍ରହଣ କରି ଶାନ୍ତି ପାଇବାକୁ ଚାହିଁଥିଲା, ସୁଖେନ୍ଦୁ ଜୀବିତ ରହି ଏବଂ ସଜୀବତା ମଧ୍ୟରୁ ହିଁ ପାଇବାକୁ ଚାହିଁଲା ।

ସୁଖେନ୍ଦୁ 'ଦୁଃଖମୋଚନ' ଗଳ୍ପର ନାୟକ । ତାର ବୟସ କିଛିଟା ବଢ଼େଇ ଦିଆଯାଇଚି । ଗଳ୍ପର ମୁଖ୍ୟ ବିଷୟ ଆପାତତ ମନେ ହେବ ପ୍ରେମ । କିନ୍ତୁ ମୁଁ ମନେ କରେ ମୃତ ଓ ଜୀବିତ, ଜୀବନ ଓ ମୃତ୍ୟୁ ଭିତରେ ଦ୍ୱନ୍ଦ୍ୱ । ଗଳ୍ପଟିର ଆରମ୍ଭରୁ ଆମେ ଦେଖୁଁ, ସୁଖେନ୍ଦୁ ଗୋଟାଏ ଅଦ୍ଭୁତ ଦ୍ୱିଧା ମଧ୍ୟରେ

ଅତ୍ୟନ୍ତ ଦୁଃଖୀ ହୋଇ ବଂଚିଚି । ସେ ରେଣୁ ବୋଲି ଗୋଟିଏ ଝିଅକୁ ଭଲପାଏ । ଅଥଚ ତାର ମାଙ୍କର ଏକ ସର୍ବଗ୍ରାସୀ ସ୍ମୃତି ତାକୁ ରେଣୁ ସଙ୍ଗରେ ସହଜ ସମ୍ପର୍କ ସ୍ଥାପନ କରିବାକୁ ଦେଉନାହିଁ । ତା ମନନେ ସବୁବେଳେ ଗୋଟାଏ ଅନ୍ୟାୟର ଭୟ, ବିବେକର ଗ୍ଲାନି । ସୁଖେନ୍ଦୁର ମନେହୁଏ, ସେ ଯେପରି ତାର ମାଙ୍କର ନିତ୍ୟ ଅଭିଶାପ ଗୋଟେଇ ବଂଚି ରହିଛି । ଏ ରକମ କାହିଁକି ଯେ ହୁଏ ସେ କିଛି ବୁଝେନା । ଏତିକିମାତ୍ର ସେ ବୁଝେ ଯେ ମାଙ୍କ ପ୍ରତି କର୍ତବ୍ୟ ସେ ପାଳନ କରିନାଇଁ ।

ମନ ଭିତରର ଏଇ ଦ୍ୱନ୍ଦ୍ୱ ଭିତରୁ ସୁଖେନ୍ଦୁକୁ ଉଦ୍ଧାର ପାଇବାର ଦେଖିବୁଁ ବୋଲି ଆମେ ଯେତେବେଳେ ଆଶା କରିନାହୁଁ,—ସେତିକିବେଳେ ଗୋଟିଏ ଘଟନା ଯୋଗୁ ସମସ୍ତ ଦ୍ୱନ୍ଦ୍ୱର ଅବସାନ ଘଟିଛି । ଗଳ୍ପର ଶେଷ ଆଡର ଅଲୌକିକ ଘଟନାଟି କଥା ମୁଁ କହୁଚି । ଶୀତର ଆରମ୍ଭ ହୋଇଚି ସେତେବେଳେ । ରେଣୁ ଘରର ଛାତ ଉପରେ ସେଦିନ ସନ୍ଧ୍ୟାବେଳେ ରେଣୁ ଓ ସୁଖେନ୍ଦୁ ବସି ଗଳ୍ପ କରୁଛନ୍ତି । କଲିକତାର ଗଳି ଧୂଆଁ-କୁହୁଡ଼ି ଆଉ ଗ୍ୟାସ ଆଲୁଅ ଏବଂ ଈଷତ୍ ଜ୍ୟୋତ୍ସ୍ନାରେ କେମିତି ଝାପ୍‌ସା ହୋଇ ଉଠିଛି । ଗଳ୍ପ କରୁ କରୁ ରେଣୁ ହଠାତ୍ ଉଠ ଯାଇଥିଲା । ସୁଖେନ୍ଦୁ ବସିଥିଲା । ସହସା ତାର ମନେହେଲା, କିଏ ଯେମିତି ତା ପାଖରେ ଆସି ବସିଚି । ଝାପସା ଜ୍ୟୋତ୍ସ୍ନା ଓ ଧୂଆଁ-କୁହୁଡ଼ି ଭିତରେ ନିର୍ବାକ ସେଇ ମୂର୍ତ୍ତିକୁ ସେ ପ୍ରଥମେ ଚିହ୍ନି ପାରିଲା ନାଇଁ । ସାଦା ଛାୟାପରି ଲାଗୁଥିଲା ଯେମିତି ସେ ମୂର୍ତ୍ତିକୁ । ସାମାନ୍ୟ ଲକ୍ଷ୍ୟ କରିବା ପରେ ସୁଖେନ୍ଦୁ ଚିହ୍ନିପାରିଲା, ସେ ତା ମା । ପ୍ରଥମେ ଅବାକ୍ ହେଲେ ବି ସୁଖେନ୍ଦୁ ଯେମିତି ବୁଝି ପାରିଲା, ମା କାହିଁକି ଆସିଛନ୍ତି । ମୃତ ମାଙ୍କ ପ୍ରତି ତାର କରୁଣା ଓ ମମତା ହେଉଥିଲା । ଅଦ୍ଭୁତ ଗୋଟିଏ ଉଦାସୀନତାର ଚିନ୍ତାନୁଭୂତି ଆସି ତାକୁ ଗ୍ରାସ କରିଥିଲା । ମାଙ୍କୁ କିଛି କହିବାକୁ ଯାଉଥିଲା ସୁଖେନ୍ଦୁ—ସହସା ସେ କେମିତି ଏକ ସୁନ୍ଦର ଗନ୍ଧ ପାଇଲା । କାର ଗନ୍ଧ ? ଅନ୍ୟମନସ୍କ ଭାବେ ସେ ଛାତି ପକେଟରୁ ଫୁଲର ବାସ୍ନା ପାଇଲା । ମନେ ପଡ଼ିଲା, ଅଳ୍ପ ଆଗରୁ ରେଣୁ ତାର ଜୁଡ଼ାରୁ ଗୋଟିଏ ମାତ୍ର ଗୋଲାପ ଫୁଲ ଆଣି ସୁଖେନ୍ଦୁର ଛାତି ପକେଟରେ ରଖିଥିଲା । ସେଇ ଫୁଲର ଗନ୍ଧ କେଡ଼େ ଜୀବନ୍ତ, ମନୋରମ, ସ୍ପର୍ଶଯୋଗ୍ୟ । ରେଣୁର ଶରୀର ମନ ଭଲପାଇବାରେ ପୂର୍ଣ୍ଣ । ସବୁ ଯେପରି ସେଇ ମୁହୂର୍ତରେ ବିଶାଳ ଏକ ଢେଉପରି ଆସି ତାକୁ ଭସାଇ

ନେଇଗଲା । ସୁଖେନ୍ଦୁ ସେଇ ଅବସ୍ଥାରେ କୌଣସି ପ୍ରକାରେ ତା ମାଙ୍କୁ କହିଲା : ତୁମେ ଆଉ ଆସିବ ନାହିଁ ମା ।

ବସୁଧା ନିଜେ ଯେଉଁ ଗ୍ଲାନି ଅନୁଭବ କରିଚି, ସୁଖେନ୍ଦୁ ଭିତରେ ସେଇ ଗ୍ଲାନି କଟାଇ ଉଠିଛି । ମୃତ ମାଙ୍କ ପାଇଁ ତାର ଭୀଷଣ ଶୋକ ବା ବେଦନା ହୋଇନି,-ଅଥଚ ନିଜର ଚିନ୍ତାରେ ତନ୍ମୟ ହୋଇଥିଲା—ଏଇ ଗ୍ଲାନି-ବୋଧ ପାଇଁ ତାର ଯେଉଁ ଦୁଃଖ ହେଉଥିଲା, ସେଇ ଦୁଃଖ ତାର ମୋଚନ ହେଲା ଏତେ ଦିନକେ । ନିଜ୍ଜ ଜୀବିତ ବୋଲି ହିଁ ତାର ଆକର୍ଷଣ ବେଶି, ନିଜ୍ଜ ଜୀବିତ ବୋଲି ହିଁ ସେ ପ୍ରୟୋଜନୀୟ । ପ୍ରେମରେ ହିଁ ଜୀବନ ।

'ଦୁଃଖ ମୋଚନ' ଠିକ୍ ପ୍ରେମର ଗଳ୍ପ ନୁହେଁ । ପ୍ରେମ ଏଇ ଗଳ୍ପରେ ଉପଜୀବ୍ୟ ବିଷୟ ନୁହେଁ । ମଣିଷ ମାତ୍ରକେ ଜୀବନ ପ୍ରତି ଆସକ୍ତି ଭିନ୍ନ କୌଣସି ଜୀବ ଜୀବିତ ହୋଇ ନ ପାରେ । ବସୁଧା ଯେପରି ଏଇ କଥାହିଁ କହିବାକୁ ଚାହିଁନି '

ବ୍ୟକ୍ତ ... ଭବରେ ମୋର ମନେହୁଏ, ବସୁଧାର ଏଇ ଗଳ୍ପଟି ତା ନିଜ ପକ୍ଷରେ କଲ୍ୟାଣକର ହୋଇଥିଲା । ସୁଖେନ୍ଦୁ ନିମିତ ମାତ୍ର ।

ଏଇ ବହିର ତୃତୀୟ ଗଳ୍ପ "ନରକରୁ ଯାତ୍ରା ।' ମୁଁ ଆଗରୁ କହିଛି ଏବଂ ବର୍ତ୍ତମାନ ମଧ୍ୟ ସ୍ମରଣ କରଇ ଦେଉଛି ଯେ ଏଇ ଗଳ୍ପଟି ନାମରେହିଁ ପ୍ରଥମ ଥର ତା ବହି ଆମେ ଛାପିଥିଲୁ । ଏଥର ବି ସେଇ ନାମ ରଖା-ଯାଇଛି ।

'ଦୁଃଖମୋଚନ' ଗଳ୍ପଟି ଲେଖିବାର ପ୍ରାୟ ବର୍ଷକ ପରେ ବସୁଧା ଏହି ଗଳ୍ପଟି ଲେଖେ । ଗଳ୍ପଟିକୁ ପ୍ରେମର ଗଳ୍ପ କୁହା ଯାଇପାରେ । ଅବଶ୍ୟ ପ୍ରେମ ଗଳ୍ପର ନରକରୁ ଯାତ୍ରା' ନାମ ଖୁବ ଅଦ୍ଭୁତ ଶୁଣାଏ ।

'ନରକରୁ ଯାତ୍ରା' ଏକ ଯୁବକର ପ୍ରେମ-ପିପାସା । ପ୍ରେମ ଏବଂ ପରେ ତାର ବ୍ୟର୍ଥତାର କଥା କୁହାଯାଇଚି । ଗଳ୍ପର ନାୟକ ବସୁଧା ନିଜେ, ଯଦିଚ ଲେଖାରେ ନାୟକର ନାମ ପରିମଳ । ଏଠାରେ ନାୟିକାର ନାମ କିନ୍ତୁ ସତରେ ନିରୁପମା । କଲିକତାରେ ସଦାନନ୍ଦ ଚୌଧୁରୀ ନାମକ ଗଳିରେ ଯେଉଁ ଘରେ ନିରୁପମା ରହୁଥିଲା, ତା ତଳ ତାଲାରେ ପରିମଳର ଜଣେ ବନ୍ଧୁ

ରହୁଥିଲା । ମଝିରେ ମଝିରେ ପରିମଳ ବନ୍ଧୁ ପାଖକୁ ଯାଉଥିଲା । ସେଇ ସୂତ୍ରରେ ନିରୂପମା ସଙ୍ଗେ ପରିଚୟ ।......ପରିଚୟ ଘନିଷ୍ଠ ହେବାକୁ ଅବଶ୍ୟ କିଛି ସମୟ ଲାଗିଥିଲା । କିନ୍ତୁ ଏକଥା ସ୍ପଷ୍ଟ ବୁଝାଯାଏ ଯେ ପ୍ରଥମରୁ ହିଁ ପରିମଳ ନିରୂପମା ପ୍ରତି ଆକୃଷ୍ଟ ହୋଇଥିଲା । ପରିମଳ ଥିଲା ସେଇ ଧରଣର ପିଲା ଯେ କି ଭଲପାଇବାକୁ ଏକ ଦୈବଶକ୍ତି ଭଳି ମନେକରେ । ବିଶ୍ୱାସ କରେ ଯେ ଭଲପାଇବା ଦ୍ୱାରା ମଣିଷର ହୃଦୟ ଉଜ୍ଜୀବିତ ହୁଏ । ମୁହଁଚୋରା, ଲାଜକୁଳା ଏବଂ ଭାବୁକ ପ୍ରକୃତିର ଏଇ ପିଲାଟିକୁ ନିରୂପମା ଭଳି ସାଧାରଣ ଝିଅର ଭଲ ନ ଲାଗିବାର ଅନେକ କାରଣ ଥିଲା । ନିରୂପମା ଥିଲା ସ୍ୱଭାବରେ ଖୁବ୍ ସାଧାରଣ ।

ଗଳ୍ପର ପ୍ରଥମାଂଶରେ ପରିମଳ ଓ ନିରୁପମା କ୍ରମ-ଘନିଷ୍ଠ ହୋଇ-ଉଠିବାର କାହାଣୀ ଅଛି । ଦ୍ୱିତୀୟାଂଶରେ ସେମାନଙ୍କର ଭଲ ପାଇବାର ସଂପର୍କ । ଏଇ ଭଲ ପାଇବାକୁ ପରିମଳ ତରଫରୁ ଗଭୀର ଓ ଆନ୍ତରିକ କହିବାରେ ଆପତ୍ତି ଦେଖୁନାହିଁ । ପରିମଳ ଭାବେ ଏଇ ପ୍ରେମ ତାର ଅସ୍ତିତ୍ୱକୁ ସାର୍ଥକ କରିଛି, ତାର ଜୀବନକୁ ମୂଲ୍ୟବାନ କରିଛି । ନିରୂପମା ଏତେଭାବେ ନାହିଁ । ଭାବିବାର କାରଣ ଦେଖେନାହିଁ । ହୁଏତ ସେ ଭାବିବା ଜାଣେନାହିଁ । ତଥାପି ଯେ କୌଣସି ଯୁବତୀ ଝିଅ ପରି ତାର ରୋମାଞ୍ଚ ଥିଲା ଏଇ ପ୍ରେମରେ ।

ଏଇ ପ୍ରେମ ଦିନେ ଭାଙ୍ଗିଗଲା । କାହିଁକି ଭାଙ୍ଗିଲା ବୁଝାଯାଏ । ତଥାପି କେବେ ବା ମନେହେବ ନିରୂପମା ପ୍ରଭୃତିର ଘରର ତଳ ତାଲାରେ ଥିବା ପରିମଳର ବନ୍ଧୁ ମନ୍ମଥର ଇତରତା ଓ ଚତୁରତା ପାଇଁ ଏ ପ୍ରେମ ନଷ୍ଟ ହୋଇଗଲା । କେବେ ବା ମନେହେବ ଦୋଷଟା ପରିମଳର ଆଉ ବେଳେ-ବେଳେ ନିରୁପମାକୁହିଁ ଦାୟୀ କରିବାକୁ ଇଚ୍ଛାହୁଏ । ମନ୍ମଥକୁ ଯଦି କାରଣ ବୋଲି ଧରଯାଏ ତେବେ ଦେଖପାରିବା ମନ୍ମଥ ପରିମଳର ପ୍ରତିଦ୍ୱନ୍ଦୀ ହିସାବରେ ନିରୂପମାକୁ ଲାଭ କରିବାର ଚେଷ୍ଟା କରିଥିଲା । କିନ୍ତୁ ସେ ଅତିରିକ୍ତ ଚତୁର ବୋଲି ସିଧା ସଳଖ ପ୍ରତିଦ୍ୱନ୍ଦିତା କରିନାହିଁ, ଗୋପନରେ କରିଛି, ସାଦାସିଧା ସାଂସାରିକ ପଥରେ, ଧୂର୍ତ୍ତ ଭାବରେ । ସେ ନିରୂପମାର ମା'କୁ ବଶକରି ପାରିଥିଲା, ଏପରିକି ନିରୂପମାକୁ ବି । ନିରୂପମାର ମା ସଂସାର ଚଳାଉଥିଲେ, ଝିଅର ସୁଖଶାନ୍ତି କଥା ବୁଝୁଥିଲେ, ଭଲପାଇବା ନ

ପାଇବା ଯେତେ କୁଣ୍ଠ ନ ଥିଲେ । ପରିମଳକୁ ସେ ଯୋଗ୍ୟ ପାତ୍ର ମନେ କରୁ ନ ଥିଲେ । ନିରୁପମା ବି ସେମିତି ଭୁଲ କରିଥିଲା । ମନ୍ମଥର ଐଶ୍ୱର୍ଯ୍ୟ ଏବଂ ଶକ୍ତି-ସାମର୍ଥ ଦାବୀ ତା ପାଖରେ ଅନେକ ଆକର୍ଷଣୀୟ ମନେ ହେଉଥିଲା । ତା' ଛଡ଼ା ମାଙ୍କ ଦିଗରୁ ବି ପରିମଳକୁ ଗ୍ରହଣ କରିବାରେ ବାଧା ଥିଲା ପ୍ରବଳ । ନିରୁପମାର ପିଲାଦିନରୁ ସବୁ ରକମ ଅସ୍ୱଚ୍ଛତା ଉପରେ ଭୟ ଥିଲା, ଘୃଣା ଥିଲା । ପରିମଳ ତାକୁ କିପରି ଅସ୍ୱଚ୍ଛ ମନେ ହେଉଥିଲା । ପରିମଳକୁ ସେ ଅନେକ ଦିନ ପ୍ରେମିକ ହିସାବରେ ଦେଖିବାକୁ ଚେଷ୍ଟା କରିଛି, କିନ୍ତୁ ଭାବି ପାଇନି, ଏଇ ପ୍ରେମ ଯେଦିନ ବ୍ୟବହାରିକ ବିଷୟରେ ପରିଣତ ହେବ ସଂସାରରେ, ସେତେବେଳେ କଣ ହେବ ? ସେତେବେଳେ କଣ ସୁଖ ଶାନ୍ତି ପାଇବ ନିରୁପମା ? ତାର ମନେ ହୁଏନାହିଁ ପରିମଳ ତାକୁ ଗାର୍ହସ୍ଥ୍ୟ ଜୀବନର ସୁଖ ଶାନ୍ତି ଦେଇ ପାରିବ ।

ପରିମଳର ଦୋଷ ତ୍ରୁଟି କଥା ଯଦି ଧରାଯାଏ ତେବେ ଦେଖାଯିବ, ପରିମଳ ଅନେକଟା ପଥ ଅକ୍ଳେଶରେ ପାର ହୋଇ ହଠାତ୍ ଯେମିତି ଥମକି ଠିଆ ହେଲା । କାହିଁକି ଏପରି ହେଲା ତା କହିବା ଉଚିତ । ଖୁବ୍ ସମ୍ଭବ ପରିମଳ ଭଲପାଇବା ଭିତରେ ଯେଉଁ ଟିକକ ପାଇବା କଥା ତାହା ପାଇ ଯାଇଥିଲା ଏବଂ ଭଲ ପାଇବାର ବିଷାଦ ଓ ଅସଂପୂର୍ଣ୍ଣତା ଆଡ଼କୁ ଆକୃଷ୍ଟ ହୋଇଥିଲା । ଗୋଟାଏ ଜାଗାରେ ପରିମଳ ଭଲପାଇବାର ତାତ୍କ୍ଷଣିକ ପ୍ରାପ୍ତିର କଥା ଭାବି ଦେଖିଛି, ପ୍ରେମର କୌଣସି ସ୍ଥାୟିତ୍ୱ ନାହିଁ । ଭଲପାଇବା ଭିତରେ ଯେଉଁ ଅସଂପୂର୍ଣ୍ଣତା ଏବଂ ବିଷାଦ ତାର ଏହି କାରଣରୁ ଯେ ଅନ୍ୟ ସମସ୍ତ ଅଜାଡ଼ ସୌନ୍ଦର୍ଯ୍ୟ ଭଳି କ୍ଷୟ ଅଛି, ପରିବର୍ତ୍ତନ ଅଛି ।...ପରିମଳ ବୋଧହୁଏ ଅକ୍ଷୟ ପ୍ରେମ, ଅପରିବର୍ତ୍ତନୀୟ ପ୍ରେମ କାମନା କରିଥିଲା, ଯାହା ଏ ସଂସାରରେ ଅସମ୍ଭବ ।

ନିରୁପମାର ଦୋଷ ଏହି ଯେ, ସେ ସାଧାରଣ ଝିଅ । ନିତାନ୍ତ ସାଧାରଣ ଆଖିରେ ସେ ପ୍ରେମ ଏବଂ ଘର-ସଂସାର ସୁଖ ଦେଖିବାକୁ ଖୋଜିଛି । ପରିମଳକୁ ଗ୍ରହଣ କରିବାକୁ ସେ ଦ୍ୱିଧା କରିଥିଲା । ଏ ଦ୍ୱିଧା ଅନେକଟା ମନ୍ମଥ ମାରଫତରେ ଆସିଛି । ବାକିତକ ନିରୁପମାର ସାଧାରଣ ଇଚ୍ଛା ଯୋଗ ଆସିଛି ।

'ନରକର ଯାତ୍ରୀ' ବସୁଧାର ନିଜର ଗଳ୍ପ ! ନିଜର ପ୍ରେମ ଶେଷାବଧି ତାକୁ ଶାନ୍ତି ଦେଇନି । ଏମିତିକି ନିରୁକୁ ତାର କୌଣସି ଜଣେ ବନ୍ଧୁ ବିବାହ କରି ସାରିଥିଲା । ପ୍ରେମର ଏଇ ବ୍ୟର୍ଥତାକୁ ଆମେ ଯେଉଁପରି ଭାବରେ ଗ୍ରହଣ

କରି ନେଇଛୁଁ; ବସୁଧା ସେ ଭବରେ ଗ୍ରହଣ କରିନାଇଁ । ସେ କହୁଥିଲା, ଆମର ପ୍ରେମର ଧାରଣା ଖୁବ୍ ଛୋଟ, ଖାଲି ଗୋଟିଏ ମାତ୍ର ମଣିଷକୁ ଅବଲମ୍ବନ କରି: ସେ ଛାଡ଼ିଗଲେ ଦୁଃଖରେ ମରିଯାଉଁ, ଛଟପଟ କରୁଁ, କାତର ହେଉଁ । କାହିଁକି ଏମିତି ହେବ ? କାହିଁକି ?

'କାହିଁକି'ର ଭୂତ କେଉଁଦିନ ଯାର ମୁଣ୍ଡରୁ ଓହ୍ଲାଇ ନାଇଁ । କହିବା ବାହୁଲ୍ୟ ବସୁଧା ଆମର ଛୋଟ ଛୋଟ ଭଲ ପାଇବାକୁ ପସନ୍ଦ କରିନାଇଁ । ଏଇ ଭଳି ଭଲପାଇବାକୁ ସେ ବାତିଲ କରିଛି । ସେ ଦେଖିଛି, ଆମର ଏଇ ସଂସାରରେ ଶତ ପ୍ରକାର ଗ୍ଲାନି, ତୁଚ୍ଛତା, ଧୂର୍ତ୍ତତା, ପ୍ରାପ୍ତିର ଇଚ୍ଛା ଆମର ଆତ୍ମିକ ଦୀନତାକୁ କ୍ରମଶଃ ଆହୁରି ଦୀନକରି ପକାଉଛି । ତାର ଧାରଣା ଆମେ ନିଜର ଦୀନତା ପାଇଁ ନରକବାସୀ ଜୀବ ହୋଇଅଛୁଁ । ଏଇ ନରକରୁ ଉଦ୍ଧାର ପାଇବାର ଚେଷ୍ଟାହିଁ ତାର 'ନରକରୁ ଯାତ୍ରା' । ବ୍ୟକ୍ତିଗତ ପ୍ରେମ ଓ ପ୍ରାପ୍ତିର ମୋହ ଛାଡ଼ି ସେ ସମ୍ଭବତ କୁଆଡ଼େ ଗ୍ଲଲି ଯିବାକୁ ଚେଷ୍ଟା କରୁଥିଲା ।

କଲିକତା ଛାଡ଼ି ବସୁଧା ଯେଉଁ ବର୍ଷ ଗଲା ସେଇ ବର୍ଷ ମୁଁ ବିବାହ କରିଥାଏ । ମୋ ସ୍ତ୍ରୀ ବସୁଧାର ଲେଖାର ଖୁବ୍ ଅନୁରାଗୀ ଥିଲେ କି ନାଇଁ ଜାଣେନା । ତେବେ ତାକୁ ଜାଣିଥିଲେ । ବସୁଧାକୁ ମୁଁ ବିବାହ ବେଳେ ରହିବାକୁ କହିଥିଲି, କିନ୍ତୁ ସେ ରହିନାଇଁ । ତାର ମାସ କେତେକ ପୂର୍ବରୁ ଆମେ ତା ବହି ଛାପିଥିଲୁଁ ।

ବସୁଧା ସଙ୍ଗରେ ମୋର ସାକ୍ଷାତ ଯୋଗାଯୋଗ ଆଉ ଘଟିନାଇଁ । ବର୍ଷରେ ଥରେ ଅଧେ ତାର ଚିଠି ପାଇଚି । ଭୁବନ ବି ମୋ'ପରି କଦାଚିତ୍ ଗୋଟାଏ ଦିଟା ଚିଠି ପାଇଚି । ଆମେ ବସୁଧାର ଚିଠିରୁ ଜାଣୁଥିଲୁ ସେ ଦିଗହରା ହୋଇଯାଇଛି । ତାପରେ ଦେଖିଲୁ ସେ ଖୁବ୍ ଈଶ୍ୱର ବିଶ୍ୱାସୀ ହୋଇ ଯାଇଚି । ଆଉ ଥରେ ଶେଷକୁ ଜାଣିଲୁଁ ସେ ଈଶ୍ୱର ବିସର୍ଜନ ଦେଇ ସେବାବ୍ରତୀ ହୋଇ ଯାଇଛି ।

ବସୁଧାର ଶେଷ ଦୁଇଟି ଲେଖା ସଂପର୍କରେ ମୋର କିଛି କହିବାର ନାଇଁ । ମୁଁ ନରକବାସୀ ଜୀବ । ନରକଠାରୁ ଯାତ୍ରା ଆରମ୍ଭ କରି ବସୁଧା ଯେଉଁସବୁ ଜାଗାକୁ ଯିବାର ଚେଷ୍ଟା କରିଛି ତାର ସନ୍ଧାନ ମୁଁ ରଖୁନି । ହୁଏତ ତାର ଚତୁର୍ଥ ଗଳ୍ପ 'ଈଶ୍ୱର' ତା ଜୀବନର ଶେଷ କେତେ ବର୍ଷର ଇତିବୃତ୍ତି

ଜଣାଇ ପାରିବ । ଏଇ ଦୁଇଟି ଲେଖା ହିଁ ଭୁବନ କାଶୀ... ...ଲିବା ସମୟରେ ସେଇ ବୃଦ୍ଧ ଭଦ୍ରଲୋକଙ୍କ ଝିଅ ନିକଟରୁ ସଂଗ୍ରହ କରି ଆଣିଥିଲ । ଲେଖା ଦୁଇଟର ପାଣ୍ଡୁଲିପିରୁ ବେଶ ବୁଝାଯାଏ, ଦୁଇଟି ଯାକ ଲେଖା ହିଁ ଅସମ୍ପୂର୍ଣ୍ଣ; ଅସମାପ୍ତ; ପଢ଼ିବା ପରେ ପାଠକ ବି ତା ଅନୁଭବ କରିବ ।

'ଈଶ୍ୱର' ଗଳ୍ପଟି ସ୍ୱାଭାବିକ ଢଙ୍ଗରେ ଲେଖା ନୁହେଁ । ଆମେ ଏହାକୁ ପ୍ରତୀକୀ ଗଳ୍ପ କହିପାରୁ । ପଢ଼ିବାକୁ ବସିଲେ ଅସାଧାରଣ ଏକ ସାରଲ୍ୟର ସମ୍ବାଦ ପାଇବୁଁ । ଶେଷରେ ଯେପରି କିଛି ଗୋଟାଏ ଜିନିଷର ଅଭାବ ବୋଧକରୁଁ । ଏକ ବାଟୋଇ କେଉଁ ଏକ ଦୁର୍ଯୋଗ ସମୟରେ ଅନ୍ଧକାରରେ ଏକ ମନ୍ଦିରରେ ଆଶ୍ରୟ ନେଇଥିଲ । ସେଠାରେ ଏକ ସନ୍ନ୍ୟାସୀଙ୍କ ସଙ୍ଗରେ ତାର ଅନ୍ଧକାରରେ ହିଁ ସାକ୍ଷାତ ଘଟିଲା । କଥାବାର୍ତ୍ତା ମଧ୍ୟରେ ଏକ ସମୟରେ ସନ୍ନ୍ୟାସୀ କହିଲେ, ତାଙ୍କ ଝୁଲାରେ ଗୋଟାଏ ପ୍ରଦୀପ, ତାକୁ ଜଳାଇ ଯେ କୌଣସି ସମୟରେ ଯେ କୌଣସି ଦୁର୍ଯୋଗରେ ପଥ ଚଲଯାଏ । ଯାତ୍ରୀ କହିଲ,—"ତେବେ ଆପଣ କାହିଁକି ସେ ପ୍ରଦୀପ ନ ଜଳାଇ ଏଇ ଅନ୍ଧାରରେ ବସି ରହିଛନ୍ତି ?" ସନ୍ନ୍ୟାସୀ କହିଲେ, "ମୋ ପାଖରେ ତିନୋଟି ପ୍ରଦୀପ, ସେଥିରୁ ଗୋଟିଏ ଅସଲ, ଦୁଇଟି ନକଲି । ଏହା ଶୁଣି ଯାତ୍ରୀର ଆକାଙ୍କ୍ଷା ହେଲ, ଆହା, ତା ହାତରେ ଯଦି ପ୍ରଦୀପ ଗୁଡ଼ିକ ଥାଆନ୍ତା ତେବେ ବଡ଼ ଭଲ ହୁଅନ୍ତା ।' ସନ୍ନ୍ୟାସୀ ଯେମିତି ଏଇ ଆକାଙ୍କ୍ଷା ବୁଝି ପାରିଲେ ତାର । କହିଲେ, "ତୁମେ ଯଦିପାର ଅସଲଟି ଖୋଜିନିଅ ।' ......ଯାତ୍ରୀ ପ୍ରଦୀପ ଗୁଡ଼ିକୁ ତା ହାତରେ ଦେବାକୁ କହିଲ । ସନ୍ନ୍ୟାସୀ ଦେଲେ । ଅନ୍ଧକାରରେ ଯାତ୍ରୀକୁ ତିନୋଟି ଯାକ ପ୍ରଦୀପହିଁ ଏକ ରକମ ମନେହେଲ । ସେ ଭେଦାଭେଦ କରି-ପାରିଲ ନାହିଁ । ......ସନ୍ନ୍ୟାସୀ କହିଲେ, 'ପାରିଲ ନାହିଁ ?' ଯାତ୍ରୀ କହିଲ, 'ନା' । ସନ୍ନ୍ୟାସୀ ସେଠୁ ପ୍ରଦୀପ ତିନୋଟି ଫେରଇ ନେଇ କହିଲେ, ଏଥିରୁ ଗୋଟିଏ ନିଶ୍ଚୟ ଜଳିବ । ଯିଏ ନିଜ ଗଣରେ ଜଳାଇ ରଖି ପାରିବେ ।'

ଗଳ୍ପଟି ଏଇଠି ଶେଷ ହୋଇଛି । କିନ୍ତୁ ପାଣ୍ଡୁଲିପ ଦେଖି ବୁଝାଯାଏ, ବସୁଧା ଆଉ କିଛି ଲେଖିବାକୁ ଚେଷ୍ଟା କରିଥିଲ ଅନେକ ଥର । ପାରି ନାହିଁ । ସମ୍ଭବତଃ ସେ ଏଇ ରହସ୍ୟର କିଛ ଗୋଟାଏ ଅଥ ବୁଝିବାକୁ ଚେଷ୍ଟା କରିଥଲ, ବିଫଳ ହୋଇଛି ।

ଶେଷ ଗଳ୍ପଟିର ନାମ 'ଆଶ୍ରୟ' । କାଶୀ ସହରକୁ ନେଇ ଗଳ୍ପଟି

ଲେଖା । ଗଳ୍ପର ଆରମ୍ଭ ଅଛି, ଶେଷ ନାହିଁ । ବସୁଧା ଉତ୍ତମ ପୁରୁଷରେ ଗଳ୍ପଟି ଆରମ୍ଭ କରିଥିଲା । ଶୀତ ଦିନରେ କାଶୀର ଗ୍ରାମାଞ୍ଚଳରେ ମଡ଼କ ପଡେ ପ୍ରତିବର୍ଷ । ସେଥର ଭୀଷଣ ମଡ଼କ ଲାଗିଥିଲା. ଲୋକମାନେ ପଳାଉଥିଲେ । ସରକାରୀ ଲୋକବାକ ବି ଗାଁକୁ ଯାଉ ନଥିଲେ । ଗଙ୍ଗା ଘାଟରେ ଅବିରାମ ଚିତା ଜଳୁଥିଲା । ଗଳ୍ପର ନାୟକ ଦିନେ ଅତି ପ୍ରତ୍ୟୁଷରେ ଗଙ୍ଗା-ସ୍ନାନ ସାରି ଘରକୁ ଆସିବା ପଥରେ ଅନୁଭବ କଲା, ଗ୍ରାମାନ୍ତର ଭିତରୁ ତାକୁ କିଏ ଯେପରି ଡାକୁଚି, ସମ୍ଭବତଃ ସେଇ ଗ୍ରାମ୍ୟ ସ୍ୱରରେ ଦୋହାଁ ବୋଲି ଶୁଣାଏ ।

......ବସୁଧା ଯେପରି ସେଇ ଦୋହାଁର ସ୍ୱର ଶୁଣିବାକୁ ପାଇଲା;

ଆମେ ବଡ଼ ଦୁଃଖୀ, ବଡ଼ ଚଞ୍ଚଳ, ଗଛର ଯେମିତି ଚେର ଅଛି, ଆମର ସେମିତି ଚେର ନାହିଁ । ଆମେ ଗୋଟାଏ ଜାଗାରେ ରହି ପାରୁଁ ନା ।

ବସୁଧା ତା' ଘରକୁ ଫେରିଲା ନାହିଁ । ଗ୍ରାମାନ୍ତର ଆଡ଼କୁ—ଯେଉଁଠି ମଡ଼କ ପଡ଼ିଛି—ସେ ଦିଗକୁ ଚାଲିଗଲା ।

ଗଳ୍ପଟି ଏଇପର୍ଯ୍ୟନ୍ତ ଲେଖାପରେ ଆଉ ଲେଖା ହୋଇନାହିଁ । ଭୁବନ କହେ, ଗଳ୍ପଟି ଲେଖିବା ପରଦିନ ବସୁଧା ଚାଲି ଯାଇଥିଲା, ସେଇ କାଶୀର ବନ୍ଧୁ ବା ତାଙ୍କ ଝିଅ କେହି ଜାଣନ୍ତି ନାହିଁ ।

ଛୋଟ ନାଗପୁରର ଏକ ଅଖ୍ୟାତ ଜାଗାରେ ଏକ ମିଶନ ହାସ-ପାତାଳରେ ବସୁଧା ମରିଯାଏ । ଆମେ ତା ମୃତ୍ୟୁ ସମ୍ବାଦ ଜାଣିଲୁଁ ଅନେକ ଦିନପରେ । ହାସପାତାଳରେ ସେ କିଛି ଲେଖିଥିଲା ବୋଲି ମନେହୁଏନା । ତାର ଲେଖିବାର ପ୍ରୟୋଜନ ଶେଷ ହୋଇ ଯାଇଥିଲା ।

ବସୁଧାର ସମସ୍ତ ଲେଖାର ବିଚାର ମୁଁ ବନ୍ଧୁ ହିସାବରେ କରିଛି । ହୁଏତ ଅନ୍ୟାୟ କରିଚି, କିନ୍ତୁ ମୋ ପକ୍ଷରେ ତାହାହିଁ ସ୍ୱାଭାବିକ । ପାଠକ ମୋତେ ମାର୍ଜନା କରିବେ ।

ଏଇ ବହର ମୂଳରେ ଗୋଟିଏ ଉତ୍ସର୍ଗପତ୍ର ଅଛି । ପ୍ରଥମ ଥରହିଁ ଥିଲା । କହିବା ବାହୁଲ୍ୟ, ସେଇ ଉତ୍ସର୍ଗପତ୍ରରେ ନିରୁପମା ରାଏ ବୋଲି ଯେଉଁ ଉଲ୍ଲେଖ ଅଛି, ସେ ବସୁଧାର ସ୍ତ୍ରୀ ନୁହନ୍ତି, ସେ ବସୁଧାର ସେଇ ନିରୁପମା ।

# ଭାରତ ବର୍ଷ

## ରମାପଦ ଚୌଧରୀ

ଫୌଜୀ ସଙ୍କେତରେ ନାମ ଥିଲା ବି.ଏଫ. ଥ୍ରୀ-ଥାର୍ଟିଟୁ. B.F. 332. ଯେଉଁଠା ବାସ୍ତବରେ କୌଣସି ଷ୍ଟେସନ ନଥିଲା, ନଥିଲା ପ୍ଲାଟଫର୍ମ, ବା ଟିକିଟ-ଘର । କିନ୍ତୁ ହଠାତ୍ ଦେଖାଗଲା ଝକଝକ ନୂଆ କଣ୍ଟାତାର ଦେଇ ରେଲ ଲାଇନର ଧାରଟିକୁ ଘେରାଇ ଦିଆଗଲା । ବେଶ୍, ଏତିକି । ସାରାଦିନ ଅପ୍-ଡାଉନର ଗୋଟାଏ ଟ୍ରେନ୍ ବି ସେଠି ଅଟକୁ ନଥିଲା । ଅଟକୁ ଥିଲା କେବଳ ଏକ ବିଶେଷ ଟ୍ରେନ୍ । ହଠାତ୍ ଦିନେ ସକାଳେ ଆସି ଗାଡ଼ି ରହେ । କେବେ କେତେବେଳେ ଗାଡ଼ି ଆସି ସେଠି ଅଟକିବ ତା କେବଳ ଏକା ଆମେ ଆଗରୁ ଜାଣିପାରୁଁ । ଆମେ ହେଉଛୁଁ ବିହାରୀ କୁକ୍ ଭଗୋତୀ ଲାଲକୁ ନେଇ ପାଞ୍ଚଜଣ ।

ଷ୍ଟେସନ ନଥିଲା, ଟ୍ରେନ୍ ରହୁ ନଥିଲା, ତଥାପି ରେଲବାଇ ଲୋକଙ୍କ ମୁହଁରେ ଗୋଟାଏ ନୂତନ ନାମ ଗ୍ଲୁ ହୋଇ ଯାଇଥିଲା । ସେଥିରେ ସ୍ୱର ମିଶାଇ ଆମେ ବି କହୁଁ 'ଅଣ୍ଡାହଲଟ୍ ।'

ଅଣ୍ଡା ମାନେ ଡ଼ିମ୍ବ । ଅଣ୍ଡାହଲ୍ଟ ପାଖରେ ଦୁଇଟା ପାହାଡ଼ୀ ଟିଲର, ପାଦ ତଳେ ଗୋଟାଏ ମାହୋତମାନଙ୍କ ଗାଁ ଥିଲା । ଗ୍ରାମରେ ଘରେ ଘରେ ମୁର୍ଗୀ ଚରି ବୁଲୁଥିଲେ । ଦୂରରେ ଭୁରୁକୁଣ୍ଡାର ଶନିଗ୍ରଚୀ ଗ୍ରାମରେ ହାଟେ ହାଟେ ମୁର୍ଗୀ କିମ୍ବା ମୁର୍ଗୀ ଡ଼ିମ୍ବ ବିକ୍ରି କରି ଯାନ୍ତି ମାହୋତାମାନେ (ଏକ ଜାତିର ସ୍ତ୍ରୀ) । କେବେ କେବେ ମୁର୍ଗୀ ଯାଙ୍କି ମୁର୍ଗୀ ଲଢ଼େଇ ଖେଳିବାକୁ ଯାନ୍ତି । କିନ୍ତୁ ସେଥିପାଇଁ ବି; ଏଫ୍, ଥ୍ରୀ-ଥାର୍ଟିଟୁ ନାମ ଅଣ୍ଡାହଲ୍ଟ ହୋଇନି ।

ଅସଲ କଥା, ମାହାତୋମାନଙ୍କ ଡ଼ିମ୍ବ ଉପରେ ଆମର କୌଣସି ଲୋଭ ନଥିଲା ।

ଆମ ଠିକାଦାର ସଙ୍ଗରେ ରେଲବାଇର ବ୍ୟବସ୍ଥା ଥିଲା, ଗୋଟାଏ ଠେଲା ଟ୍ରଲି ବି ଥିଲା ତାର ! ଲାଲ ଧାଲୁ ଉଡ଼ାଇ ସେଟା ରେଲ ଉପରେ ଗଡ଼ିଗଡ଼ି ଆସି ମାଲ ପତ୍ର ରଖି ଯାଉଥିଲା ସେଠି । ରଖି ଯାଉଥିଲା ଗଣି ଗଣି ଡିମ୍ବ । ବିହାରୀ କୁକ୍ ଭଗୋତୀଲାଲ ଆଗ ଗତିରେ ସେଗୁଡ଼ାକ ଶିଝାଇ କରି ରଖେ ।

କିନ୍ତୁ ସେଥିପାଇଁ ବି ନାମ ଅଣ୍ଡାହଲ୍ଟ ହେଇନି । ହୋଇଥିଲା ଫୁଲ୍‌ବୟେଲ୍‌ଡ଼ ଡିମ୍ବର ଖୋଳପା କଂଟା–ତାରର ସେପଟେ କ୍ରମଶ ସ୍ତୂପୀକୃତ ହୋଇ ଜମୁଥିଲା ବୋଲି ।

ଫୌଜୀ ଭାଷାରେ ବି, ଏଫ୍., ଥ୍ରୀ–ଥାର୍ଟିଟୁର ପ୍ରଥମରେ ଯେଉଁ ଦୁଇଟା ଆଲଫାବେଟ୍; ଆମର ଧାରଣା ଥିଲା ତା ସଂକେତ ନୁହେଁ, ବ୍ରେକ୍‌ଫାଷ୍ଟ କଥାଟାର ସଂକ୍ଷିପ୍ତ ରୂପ ।

ରାମଗଡ଼ରେ ସେତେବେଳେ ପି ଡବ୍‌ଲ୍ୟୁ (P W.) କ୍ୟାଂପ । ଅର୍ଥାତ୍ ଯୁଦ୍ଧବନ୍ଦୀଙ୍କ ଛାଉଣି । ଇଟାଲିୟାନ ଯୁଦ୍ଧବନ୍ଦୀମାନେ ସେଠି ବେୟନେଟ୍ ଓ କଂଟାତାରରେ ଘେର ଛାଉଣିରେ ରହୁଥିଲେ । ସେମାନଙ୍କୁ ମର୍ଜିରେ ମର୍ଜିରେ ଗୋଟାଏ ଟ୍ରେନ୍‌ରେ ବୋଝାଇ କରି ଏଇ ରାସ୍ତାଦେଇ କୁଆଡ଼େ ଯେମିତି ଚାଲାନ୍ କରା ଯାଉଥିଲା । କାହିଁକି ଏବଂ କେଉଁଠିକି ଆମେ କିଛି ଜାଣି ନ ଥିଲୁ ।

ଖାଲି ଆମେ ଖବର ପାଉଁ ଭୋରରେ ଗୋଟାଏ ଟ୍ରେନ୍ ଆସି ରହିବ ।

ଠିକାଦାରର ଚିଠି ପଢ଼ି ଆଗ ଦିନର ଡିମ୍ବ ଝୁଡ଼ି ଗୁଡ଼ାକ ଦେଖାଇ କୁକ୍ ଭଗୋତୀଲାଲକୁ କହେ, ତିନି ଶହ ତିରିଶ୍ ବ୍ରେକଫାଷ୍ଟ ।

ଭଗୋତୀଲାଲ ଗଣି ଗଣି ଛଅଶ'ଷାଠିଏଟା ଆଉ ଗୋଟା ପଚିଶ ଫାଉ ବାହାର କରି ନିଏ । ଯଦି ପଚା ବାହାରି ପଡ଼େ । ତାପରେ ସେଗୁଡ଼ାକ ପାଣିରେ ଫୁଟାଇ ନେଇ ଶକ୍ତ ଇଟା ହୋଇଗଲେ ତିନି ଜଣ ସର୍ଭର କୁଲିଙ୍କ ସଙ୍ଗେ ମିଶି ଖୋଳପା ଛଡ଼ାଉଥିଲା ।

କଂଟ ତାରର ସେ ପଟେ ସେଗୁଡ଼ାକ କ୍ରମଶ ସ୍ତୂପୀକୃତ ହେଉଥିଲା ।

ସକାଳେ ଟ୍ରେନ୍ ଆସି ରହେ । ଆଉ ସଙ୍ଗେ ସଙ୍ଗେ କାମରାରୁ ଝପଝାପ ଡେଇଁ ପଡନ୍ତି ମିଲିଟାରୀ ଗାର୍ଡ଼ମାନେ । ସଂଗୀନ ଉଚ୍ଚା କରି ରାଇଫଲ ନେଇ ସେମାନଙ୍କୁ ଯୁଦ୍ଧବନ୍ଦୀମାନଙ୍କୁ ପହରା ଦିଅନ୍ତି ।

ଡୋରାକଟା ପୋଷାକ୍‌ରେ ବିଦେଶୀ ବନ୍ଦୀମାନେ ଜଣକ ପରେ ଜଣେ କାମେରାରୁ ବାହାରି ଆସନ୍ତି, ବଡ଼ ମଗ୍ ଆଉ ଏନାମେଲର ଥାଳା ନେଇ ।

ଦିଟା ବଡ଼ ବଡ଼ ଡ୍ରମ ଓଲଟାଇ ରଖି, ସେଗୁଡ଼ାକୁ ଟେବୁଲ୍ ବନାଇ, ସର୍ଭର କୁଲୀ ତିନିଜଣ ଛିଡ଼ା ହୁଅନ୍ତି । ଏମାନେ ଲାଇନ୍ ଲଗାଇ ଜଣକ ପରେ ଜଣେ ବ୍ରେକ୍‌ଫାଷ୍ଟ ନିଅନ୍ତି । ଜଣେ କଫି ଢ଼ାଳି ଦିଏ ମଗ୍‌ରେ । ଆଉ ଦି'ଜଣ ଦି'ପିସ୍ କରି ପାଉଁରୁଟି ଦିଅନ୍ତି । ଆଉ ଜଣେ ଦିଟା କରି ଡ଼ିମ୍ବ । ବେଶ୍ ତାପରେ ଏମାନେ ଯାଇ ଗାଡ଼ିରେ ଉଠନ୍ତି । କାଂଧରେ ଆଇ-ଇ, ଖାକୀ ବୁଶ୍-ସାର୍ଟ ପିଂଧା ଗାର୍ଡ଼ ହୁଇସିଲ ଦିଏ । ଫ୍ଲାଗ୍ ହଲାଏ । ଟ୍ରେନ୍ ଚାଲିଯାଏ ।

ମାହାତୋମାନେ କେହି ପାଖକୁ ଆସନ୍ତି ନାହିଁ । ଦୂରରେ କ୍ଷେତରେ ଫସଲର ବୀଜ ଗେଇବାକୁ ଯାଇ ସିଧାହୋଇ ଛିଡ଼ାହୋଇ ବଲ୍‌ବଲ୍ କରି ଅନାଇ ଦେଖନ୍ତି ।

ଟ୍ରେନ ଚାଲିଯିବା ପରେ ଭଗୋତୀଲାଲ ଜିମ୍ମା ଟେଣ୍ଟ ରଖିଦେଇ ଆମେ କେବେ କେବେ ମାହାତୋଙ୍କ ଗ୍ରାମ ଆଡ଼କୁ ଚାଲିଯାଉଁ ସବଜୀ କିଣିବାକୁ । ପାହାଡ଼ ଢାଲୁରେ ପଥୁରିଆ ଜମିରେ ଏମାନେ ବୁଣନ୍ତି ସୋରିଷ, ବାଇଗଣ ଆଉ ଝୁଡ଼ୁଙ୍ଗ ।

ଅଣ୍ଡା ହଲ୍‌ଟ ଦିନେ ହଲ୍‌ଟ-ଷ୍ଟେସନ ହୋଇଗଲା ରତାରତି । ମୋରମ ବିଛାଇ କଣ୍ଟା-ତାର ଘେରା ଜାଗାଟିକୁ ଉଚ୍ଚା କରାଗଲା ପ୍ଲାଟଫର୍ମ ପରି ।

ସେଠୁ ଖାଲି ପି.ଡବ୍ଲ୍ୟୁ ନୁହେଁ, ମିଲିଟାରୀ ସ୍ପେସାଲ ବି ଆସି ଛିଡ଼ା ହୁଏ । ଗାବାର୍ଡିନ ପ୍ୟାଣ୍ଟ ପିନ୍ଧା ହିପ୍-ପକେଟରେ ଟଙ୍କା ବ୍ୟାଗ୍ ଗୁଞ୍ଜା ଆମେରିକାନ୍ ସୈନିକ ସ୍ପେସାଲ । ମିଲିଟାରୀ ପୁଲିଶ୍ ଟ୍ରେନ୍‌କୁ ଓହ୍ଲାଇ ବୁଲଚାଲ କରନ୍ତି । ପଦେ ଅଧେ ଥଟ୍ଟା ବି କରନ୍ତି ଆଉ ସୈନିକର ଦଳ ସେମିତି ଧାଡ଼ି ବାନ୍ଧି ମଗ ଆଉ ଥାଳି ହାତରେ ଜଣେ ଜଣେ ଆସି ରୁଟି ନିଅନ୍ତି, ଡ଼ିମ୍ବ

ନିଅନ୍ତି, ମଗ ଭର୍ତି କଫି ନିଅନ୍ତି । ତାପରେ ଯିଏ ଯାର କମ୍ପାର୍ଟମେଣ୍ଟରେ ଯାଇ ଉଠନ୍ତି, ଖାକୀ ବୁଶ ସାର୍ଟପିନ୍ଧା ଗାର୍ଡ ହୁଇସିଲ ବଜାଇ ଫ୍ଲାଗ ହଲାଏ । ମୁଁ ଛ ଟିଯାଇ ସପ୍ଲାଇ ଫର୍ମରେ ମେଜରଙ୍କୁ ଦେଇ ଓ-କେ କରାଏ ।

ଟ୍ରେନ୍ ଗ୍ଲିଯାଏ । କେଉଁଠିକି କେଉଁ ଦିଗକୁ ଆମେ କେହି ଜାଣି ପାରୁନା ।

ସେଦିନ ବି ସିମିତି ଆମେରିକାନ୍ ସୋଲଜରମାନଙ୍କ ଟ୍ରେନ୍ ଆସି ରହିଲା । ସର୍ଭର କୁଲି ତିନି ଜଣ ଡ଼ିମ୍ବ, ରୁଟି, କଫି ସର୍ଭ କରୁଥିଲେ । ଭଗୋତୀଲାଲ ନଜର ରଖିଥିଲା କେହି ଡ଼ିମ୍ବ ପଗ୍ ବା ରୁଟି ସ୍ଲାସ୍-ଏଣ୍ଡ ବୋଲି ଫିଙ୍ଗି ଦେଉଛି କି ନାହିଁ ।

ଠିକ୍ ଏତିକିବେଳେ ମୋ ନଜର ପଡ଼ିଲା କଣ୍ଟା-ତାର ଘେର ବାଡ଼ ସେପଟେ ।

କଣ୍ଟା-ତାରଠୁ ଆହୁରି ଟିକିଏ ଦୂରରେ ନେଙ୍ଗୁଟି-ପିନ୍ଧା ମାହାତୋ-ମାନଙ୍କର ଗୋଟିଏ ପିଲା ଆଖି ବଡ଼କରି ଅନାଇ ରହିଛି । ଅଣ୍ଟାରେ ଖଣ୍ଡେ ଲୁହା ଝୁଲୁଥିଲା ତାର । ଏଇ ପିଲାଟାକୁ କିଛିଦିନ ତଳେ ଗୋଟାଏ ମଇଁଷି ଛୁଆ ଉପରେ ଚଢ଼ି ଯାଉଥିବାର ମୁଁ ଦେଖିଛି ।

ପିଲାଟା ଅବାକ ହୋଇ ଚାହିଁ ଦେଖୁଥିଲା ଟ୍ରେନଟାକୁ । କିମ୍ବା ନାଲି-ମୁହାଁ ଆମେରିକାନ୍ ସୈନିକମାନଙ୍କୁ ଦେଖୁଥିଲା ।

ଜଣେ ସୈନିକ ତାକୁ ଦେଖିପାରି ହଠାତ୍ 'ହେ—ଇ' ବୋଲି ଗୋଟାଏ ଶବ୍ଦ କଲା । ଆଉ ସଙ୍ଗେ ସଙ୍ଗେ ନେଙ୍ଗୁଟି-ପିନ୍ଧା ପିଲାଟା ପାଇଁ ପାଇଁ କରି ଛୁଟି ପଳାଇଲା ଗାଆଁ ଆଡ଼କୁ । କେତେଜଣ ଆମେରିକାନ ସୈନ୍ୟ ହା-ହା କରି ହସୁଛନ୍ତି ।

ଭାବିଥିଲି ପିଲାଟା ଆଉ କେବେ ଆସିବ ନାହିଁ ।

ମାହାତୋମାନଙ୍କ ଭିତରୁ କେହି ଆସନ୍ତି ନାହିଁ । କେହି ନୁହେଁ । କ୍ଷେତକାମ କରୁକରୁ ସୋଜା ହୋଇ ଛିଡ଼ା ହୋଇ ଏମାନେ ଆଲ ଅବାକ ଆଖିରେ ଦୂରରୁ ଦେଖନ୍ତି ।

କିନ୍ତୁ ତାପରେ ପୁଣି ଯେଉଁଦିନ ଟ୍ରେନ ଆସିଲା, ସେଦିନ ପୁଣି ଦେଖେ ସେଇ ଅଣ୍ଟାରେ ଲୁହା ବନ୍ଧା ପିଲାଟା କଣ୍ଟା–ତାର ବାଡ଼କୁ ଲାଗି ଆସି ଠିଆ ହୋଇଚି । ସଙ୍ଗରେ ଆଉ କେତୁଟା ପିଲା ଗଳାରେ ଲାଲ ସୂତାରେ ଝୁଲୁଚି ଦସ୍ତାର ତାବିଜ୍ । ଭୁରୁକୁଣ୍ଡା ହାଟକୁ ଦିନେ ଯାଇଥିଲି । ଗଣି ଘଣି ବିକ୍ରି ହୁଏ ସିନ୍ଦୁର, ତାବିଜ ଢେଉଁରିଆ, ତମ୍ବାର ପିତଳର ଦସ୍ତାର, ବାଉଁଶର ଝୁଲୁଥାଏ ରଙ୍ଗୀନ ସୁତୁଲି, ପୋହଳା ମାଳା । ଗୋଟାଏ ଫେରିଓ୍ବାଲାକୁ ଦେଖିଛି କେବେ କେବେ ଆଂଠାଏ ଧରି ନେଇ କାଂଧରେ ଅଗଣତି ପୋହଳା ଛଡ଼ ରଙ୍ଗି ଦୂରରୁ ମାହାତୋମାନଙ୍କ ଗ୍ରାମକୁ ଯାଏ ।

ପିଲ ଦୁଇଟା ଅବାକ୍-ଅବାକ୍ ଆଖି ମେଇ ଆମେରିକାନ୍ ସୈନିକଙ୍କୁ ଦେଖୁଥିଲେ । ପ୍ରଥମ ଦିନର ବଚ୍ଚାଟା ଆଖିରେ ଟିକିଏ ଭୟ । ଆଂଠୁ ତିଆରି, କେହି ଆଖିରେ ଟିକିଏ ଧମକ ଦେଇ ହିଁ ଚଟ୍‌କରି ହରିଣ ହୋଇଯିବ ।

ମୁଁ ହାତରେ ଫର୍ମ ନେଇ ଘୁରଘୁରି କରୁଥିଲି । ସୁଯୋଗ ପାଇଲେ ହସି ହସି ମେଜରକୁ ତେଓ୍ବାଳ କରୁଥିଲି । ଜଣେ ସୈନିକ ତା କଂପାର୍ଟମେଣ୍ଟ ଦରଜା ମୁହଁରେ ଛିଡ଼ା ହୋଇ କଫି ମଗ୍‌ରେ ଚୁମୁକୀ ଦେଉ ଦେଉ ପିଲ ଦିଟାଙ୍କୁ ଦେଖାଇ ପାଖର ଜିଂ ଆଇକୁ କହିଲ, ଅ'ଫୁଲ !

ମୋର ଏତେ ଦିନ ମନେ ହୋଇନି । ଏମାନେ ତ ମଜା ଖୁସିରେ ଖେତରେ ଖଟନ୍ତି, ନୋହିଲେ ଧନୁଶର ନେଇ ଠେକୁଆ ମାରନ୍ତି । ନାଚୁଆ ଗାନ ଶୁଣନ୍ତି, ହାଣ୍ଡିଆ ଖାଆନ୍ତି ନେଙ୍ଗୁଟି ପିଂଧା କ୍ଷୀଣ ଦେହ, କଳା ରକ୍ଷ । କିନ୍ତୁ ବେଟା ଜି: ଆଇର 'ଅ' ଫୁଲ' କଥାଟା ମୋତେ ଖୁଂଚୁ ଦେଲ । ପିଲ ଦିଟାଙ୍କ ଉପରେ ପୁଣି ଖୁବ୍ ରାଗ ହେଲ ।

ସୈନିକମାନଙ୍କ ମଧ୍ୟରୁ ଜଣେ ଗଳା ଝାଡ଼ି ଗୀତ ଗାଇଲା ଜଣେ ଦୁଇଜଣ ହା–ହା କରି ହସୁଥିଲେ । ଜଣେ କଫି ମଗରେ ଚୁମୁକା ମାରି ସର୍ଭର କୁଲି ଦିଟାଙ୍କୁ ଆଖି ମାରି ପୁଣି ମଗ ଭର୍ତ୍ତି କରିଦେବାକୁ କହିଲ । ଗାର୍ଡ ଆଗେଇ ଆସିଲ ଆଉ କେତେ ଡେରି ଦେଖିବାକୁ । ପଞ୍ଜାବୀ ଗାର୍ଡ କିନ୍ତୁ ବେଶ୍ ଚନ ଚିନ୍ତ ଲଗାଇ କଥା କହିଲ ମେଜର ସଙ୍ଗରେ ।

ତା'ପରେ ହୁଇସିଲ୍ ବାଜିଲ, ଫ୍ଲାଗ ହଲିଲ । ସମସ୍ତେ ଚଟପଟ ଉଠ

ପଡ଼ିଲେ ଟ୍ରେନ ରେ । ହାତରେ ଚୌଡ଼ା ଲାଲ–ଫିତା ବଂଧା ମିଲିଟାରୀ ପୁଲିଶମାନେ ବି ।

ଟ୍ରେନ୍ ଚାଲି ଗଲେ ପୁଣି ସେଇ ଶୂନ୍ୟତା । ଧୂ–ଧୂ ବାଲି ଭିତରେ ନାଗ ଅଇରି ଗଛ ପରି ଖାଲି ସେଇ କଂଟା–ତାରର ବେଢ଼ା ।

କିଛି ଦିନ ପରେ ପୁଣି ଗୋଟାଏ ଟ୍ରେନ୍ ଆସିଲା । ଏଥର ପି–ଡବଲ୍ୟୁ (ଯୁଦ୍ଧବନ୍ଦୀ) ଗାଡ଼ି । ଇଟାଲିୟାନ୍ ଯୁଦ୍ଧବନ୍ଦୀମାନଙ୍କୁ ରାମଗଡ଼ରୁ ପୁଣି କେଉଁଠିକି ଚାଲାଣ୍ କରାଯାଉଚି । କେଉଁଠି କି ଆମେ ଜାଣି ନ ଥିଲୁଁ, ଜାଣିବାକୁ ମଧ୍ୟ ଚାହୁଁ ନ ଥିଲୁଁ ।

ଏମାନଙ୍କ ଦେହରେ ଷ୍ଟ୍ରାଇପ୍-ଦିଆ ଅନ୍ୟ ପୋଷାକ । ମୁହଁରେ ହସ ନାହିଁ । ରାଇଫେଲ୍ ଉଚାଇ ସବୁବେଳେ ଏମାନଙ୍କ ଟ୍ରେନ୍ ଚାରିଆଡ଼େ ଗାର୍ଡ ଦିଆ ଯାଇଥାଏ । ଆମକୁ ବି ଟିକିଏ ଭୟ-ଭୟ କରୁଥାଏ । ଭୁରୁକୁଣ୍ଡାର ଗଳ୍ପ ଶୁଣି ଆସିଥିଲି । ଜଣେ କୁଆଡ଼େ ଧୋତି-ପଂଜାବୀ ପିଂଧି ପଳାଇବାକୁ ଚେଷ୍ଟା କରୁଥିଲା, କିନ୍ତୁ ପାରି ନାହିଁ ।

ବଙ୍ଗାଳୀ ବୋଲି ମୋତେ ଟିକିଏ ବେଶୀ ଡର ଲାଗୁଥାଏ ।

ଟ୍ରେନ୍‌ଟା ଚାଲିଯିବା ପରେ ଲକ୍ଷ୍ୟ କଲି, କଂଟା–ତାର ସେପଟେ ଖାଲି ସେଇ ବଚ୍ଚା ଦି'ଟା, ଅଣଓସାରିଆ ଶାଢ଼ୀ ପିଂଧା ପନ୍ଦର ବର୍ଷର ଗୋଟିଏ ଝିଅ, ଦୁଇଜଣ ପୁରୁଷ କ୍ଷେତ କାମ ଛାଡ଼ି ଆସି ଠିଆ ହୋଇଥିଲେ । ଟ୍ରେନ୍ ଚାଲିଯିବା ପରେ ସେମାନେ ନିଜ ନିଜ ଭିତରେ କଣ ସବୁ କୁହାକୁହି ହେଲେ, ହସିଲେ କଳରବ କରି ଝରଣା ସୁଅ ପରି ମାହାତୋମାନଙ୍କ ଗାଁ ଆଡକୁ ଚାଲିଗଲେ ।

ଜଣେ, ଦିଜଣ, ପାଂଚ ଜଣ — ସେଦିନ ଦେଖେଁ ଦଶ ଯାଏଁ ମାହାତୋ ଗାଆଁର ଲୋକ ଟ୍ରେନ୍ ଆସିବା ଦେଖି ପଡିଆରୁ ଦୌଡ଼ି ଦୌଡ଼ି ଆସୁଛନ୍ତି । ଟ୍ରେନ୍ ଝର୍କାରେ ଖାକୀ ରଙ୍ଗ ଦେଖିହିଁ ଏମାନେ ବୁଝିପାରନ୍ତି । ଦିନକୁ ଦିଟା ପାସେଂଜର ମେଲ୍ ଟ୍ରେନ ଭଳି ହୁଇସିଲ୍ କରି ଚାଲିଯାଏ—ଖଣ୍ଡେ ଦିଖଣ୍ଡ ମାଲଗାଡ଼ି ବି ଚାଲିଯାଏ । ସେତେବେଳେ ତ କାହିଁକି ଗାଡ଼ି ରହିବ ବୋଲି ମାହାତୋ ଗାଆଁର ଲୋକେ ଆସି ଭିଡ଼ କରନ୍ତି ନାହିଁ ।

ଦିନେ ଯାଇ କହିଥିଲି ମାହାତୋବୁଢାକୁ, ଲୋକ ପଠାଇ ଆମ ଆଣ୍ଡାହଲଟ୍ ତଂବୁରେ ବିକି ଆସିବାକୁ ପନିପରିବା, ସବ୍‌ଜୀ, ଚିଙ୍ଗୁଡ଼ି ତରବୁଜ ମୁଡ଼ି, ମହୁଗଡି ।

ବୁଢ଼ା ହସି କହିଥିଲ—କ୍ଷେତ କାମ ଛାଡ଼ି ଯିବୁ ନାଇଁ ।

ତେଣୁ ଅବାକ ହୋଇ ଗ୍ଜହିଁ ଦେଖିଲି । କଳା କଳା ନେଙ୍ଗୁଟି ପିଂଧା ଲୋକଗୁଡ଼ାଙ୍କୁ, ଛୋଟ ଶାଢ଼ୀପିଂଧା ଝିଅଗୁଡ଼ାଙ୍କୁ । କେବଳ ଫୁଙ୍ଗୁଳାଦେହ ମାହାତୋ ବୁଢ଼ା ଗୋଡ଼ରେ ଯାହା ଚଟିଜୋତା, ଗାଁ ମୋଚି ପାଖରେ ବାନା- ଯାଇଥିବା ଚଟିଜୋତ., ଆସି ଧାଡ଼ିକି ଧାଡ଼ି ଏମାନେ କଂଟା-ତାର ସେପଟେ ଠିଆ ହେଲେ ।

ଟ୍ରେନ୍ ସେତେବେଳକୁ ଆସି ଯାଇଛି । ଝପଝାପ୍ ଓହ୍ଲାଇ ପଡି ଆମେରିକାନ୍ ସୈନ୍ୟମାନେ ଧାଡ଼ି ଦେଇ ଗ୍ଜଲିଛନ୍ତି ମଗ୍ ଆଉ ଥାଳ ହାତରେ ।

ଦୁଇଶ ଅଠର ବ୍ରେକ୍ ଫାଷ୍ଟ ରେଡ଼ି ବି, ଏଫ୍, ଥ୍ରୀ—ଥାର୍ଟିଟୁ ମାନେ ଅଣ୍ଡାବଇଟ ।

ଏକ୍ଷଣି ଟିକିଏ ଟିକିଏ ଶୀତ ପଡିବାକୁ ଆରମ୍ଭ କରିଚି । ଦୂର ପାହାଡ଼ରେ କୁହୁଡ଼ିର ମଫଲର ବଂଧା । ଗଛବୃକ୍ଷ ସବୁ ଶିଶିରରେ ଧୂଆ, ସବୁଜି ।

ଜଣେ ସୈନିକ ଯାଙ୍କୀ ଗଳାରେ ମୁଗ୍ଧତା ପ୍ରକାଶ କଲ ।

ଆଉ ଜଣେ କଂପାର୍ଟମେଣ୍ଟ ସାମନାରେ ଛିଡ଼ା ହୋଇ କଂଟା-ତାରର ସେପଟର ରିକ୍ତତା ଆଡ଼କୁ ଏକ ଦୃଷ୍ଟିରେ ଗ୍ଜହିଁଥିଲ । ହଠାତ୍ କଫି ମଗ୍‌ଟାକୁ ଟ୍ରେନ୍‌ର ପାଦଦାନିରେ ରଖି ସେ ହିପ୍-ପକେଟରେ ହାତ ଦେଲ । ବ୍ୟାଗରୁ ଗୋଟାଏ ଚକଚକିଆ ଅଧୁଲି ବାହାର କରି ଫିଙ୍ଗିଦେଲ ମାହାତୋମାନଙ୍କ ଆଡ଼କୁ ।

ଏମାନେ ଅବାକ୍ ହୋଇ ସୈନିକଟା ଆଡ଼କୁ ଗ୍ଜହିଁଲେ, କଂଟା-ତାର ଭିତରେ ମୋରମ ଉପରେ ପଡ଼ିଥିବା ଚକ୍‌ଚକ୍ ଅଧୁଲୀଟା ଆଡ଼କୁ ଗ୍ଜହିଁଲେ, ନିଜେ ପରସ୍ପରର ମୁହଁ ଗ୍ଜହାଁଗ୍ଜହିଁ ହେଲେ, ତାପରେ ଅବାକ୍ ହୋଇ ଖାଲି ଅନାଇ ରହିଲେ ।

ଟ୍ରେନ୍‌ଟା ଗ୍ଜଲିଯିବା ପରେ ଏମାନେ ନିଃଶବ୍ଦରେ ଫେରି ଯାଉଥିଲେ । ମୁଁ କହିଲି, ସାହେବ ବଖସିସ୍ ଦେଇଛି, ବଖସିସ୍ । ଉଠେଇ ନିଅ ।

ସମସ୍ତେ ସମସ୍ତଙ୍କ ମୁହଁକୁ ଅନାଇଲେ, କେହି ଆଗେଇ ଆସିଲେ ନାଇଁ ।

ମୁଁ ଅଧୁଲୀଟାକୁ ଉଠାଇ ମାହାତୋବୁଢ଼ା ହାତରେ ଦେଲି । ସେ ବୋକାଙ୍କ ଭଳି ମୋ ଆଡ଼କୁ ଅନାଇ ରହିଲ, ତା'ପରେ ସମସ୍ତେ ନିଃଶବ୍ଦରେ ଗ୍ଜଲିଗଲେ । କାହା ମୁହଁରେ କିଛି କଥା ନାଇଁ ।

ମୋତେ ଏଇ ଠିକାଦାରର ତାଁବେଦାରି ଆଦୌ ଭଲ ଲାଗୁ ନଥିଲା । ଜନ ମଣିଷ ନାଇଁ, ଗୋଟାଏ ପ୍ୟାସେଂଜର ଟ୍ରେନ୍ ବି ଏଠି ରହେ ନାଇଁ । ତାଁବୁରେ ଭଗୋତୀଲାଲ ଆଉ ତିନି ଜଣ କୁଲି । ନିର୍ଜନ ନିର୍ଜନ । ମାଟି ରକ୍ଷ, ଦିପହରର ଆକାଶ ରକ୍ଷ, ମୋର ମନ ବି ।

ମାହାତୋ ଗାଁର ଲୋକମାନେ ବି ପାଖରେ ପଶନ୍ତି ନାଇଁ । ମଝିରେ ମଝିରେ ଯାଇ ସବ୍‌ଜୀ ଚୂନା ମାଛ କିଣି ଆଣୁଥିଲି । ସେମାନେ ବିକିବାକୁ ଆସୁ ନଥିଲେ । କିନ୍ତୁ ଭୁରୁକୁଣ୍ଡା ହାଟକୁ ଯାଉଥିଲେ ତିନି କୋଶ ବାଟ ଚାଲି ।

କେତେଦିନ ହେଲା କୌଣସି ଟ୍ରେନ୍‌ର ଖବର ନାଇଁ । ଚୁପ୍‌ଚାପ, ଚୁପଚାପ ।

ହଠାତ୍ ସେଇ ଅଂଟାରେ ଲୁହା ଝୁଲୁଥିବା ପିଲାଟା ଦିନେ ଆସି ପଚାରିଲା, ଟିରେନ୍ ଆସିବ ନାଇ ବାବୁ ?

ହସି ପକାଇ କହିଲି, ଆସିବ ଆସିବ ।

ପିଲାଟାର ଆଉ ଦୋଷ କ'ଣ ? ଗେଡ଼ା ଗେଡ଼ା ପାହାଡ଼, ରକ୍ଷ ଜମି, ଗୋଟାଏ ଗାଉଁଲୀ ଭିତର ବସ୍ ଦେଖିବାକୁ ହେଲେ ବି ଦି କୋଶ ବାଟ ଚାଲି କରି ଯିବାକୁ ହୁଏ ଖଇର ଗଛର ଝାଡ଼ ଭିତର ଦେଇ । ସକାଳେ ଗୋଟାଏ ପାସେଂଜର ଟ୍ରେନ୍ ଟିକିଏ ହେଲେ ସ୍ପୀଡ ନ କମାଇ ହୁସ କରି ଚାଲି ଯାଏ; ଉପରବେଳା ଡାଉନ୍ ଟ୍ରେନ୍‌ଟା ମଧ୍ୟ ଅଟକେ ନାଇଁ ତଥାପି ଖିଡ଼ିକିରେ କେତୋଟା ମୁହୂର୍ତ୍ତ ଝାପସା ମୁହଁ ଦେଖିବାକୁ ଆମେ ସବୁ ତଂବୁ ବାହାରକୁ ଛୁଟି ଆସୁ । ମଣିଷ ନ ଦେଖି, ନୂଆ ମୁହଁ ଦେଖିବାକୁ ନ ପାଇ ଆମେ ସବୁ ପ୍ରାଣାନ୍ତ ହୋଇଉଠୁଁ ।

ତେଣୁ ଆମେରିକାନ ସୈନ୍ୟମାନଙ୍କର ସ୍ପେଶାଲ ଟ୍ରେନ୍ ଆସୁଚି ଶୁଣି ଯେମିତି ବିବ୍ରତ ବୋଧ କରୁଥିଲୁଁ, ସେମିତି ପୁଣି ଟିକେ ସ୍ୱସ୍ତି ବି ଅନୁଭବ କରୁଥିଲୁଁ ।

କିଛି ଦିନ ପରେ ପ୍ରଥମେ ଆସିଲା ଖବର, ତା'ପରେ ମିଲିଟାରୀ ସ୍ପେଶାଲ । ଝପ୍‌ଝାପ୍ କରି ଜି. ଆଇ. ମାନେ ଓହ୍ଲାଇ ପଡ଼ିଲେ, ଧାଡି ଦେଇ ସମସ୍ତେ ଡ୍ରିଙ୍କ' ଲୁଟି ଏବଂ ମଗ୍‌ଭର୍ତ୍ତି କଫି ନେଲେ ।

ହଠାତ୍ ଚାହିଁ ଦେଖେଁ କଂଟା ତାରର ବେଡ଼ା ସେପଟେ ମାହାତୋ ଗାଆଁର ଭିଡ଼ ଭାଙ୍ଗି ପଡ଼ୁଚି । କୋଡ଼ିଏ ହୋଇପାରେ, ତିରିଶ ହୋଇପାରେ ଆଂଠୁ ପର୍ଯ୍ୟନ୍ତ ବଗ୍‌ଗଡ଼ାକୁ ନେଇ କେତେ ଯେ କିଏ କହିବ । ଛୋଟ ଶାଢ଼ୀ ପିଂଧା ଝି ଲୋକ

ଗୁଡ଼ାକ ବୋକା ଆଖି ମେଲି ଅନାଉଥିଲେ । ଏମାନଙ୍କୁ ଦେଖି ମୋତେ କିମିତି ଭୟ-ଭୟ ଲାଗିଲା । ଭଗୋତୀଲାଲ ଏବଂ ସର୍ଭର କୁଳି ତିନି ଜଣ ମାହାତୋଗାଆଁ ଆଡ଼କୁ ଯିବାକୁ ଗ୍ରହିଁଲେ ମୋତେ ଖୁବ୍ ଭୟ ଭୟ ଲାଗେ ।

ପ୍ଲାଟଫର୍ମ ତ ନ ଥିଲା, ଖାଲି ଚଢ଼ିବା ଉତୁରିବା ସୁବିଧା ପାଇଁ ଲାଇନ୍ ଧାରଟିକ ମୋରମ ବିଛାଇ ଉଚ୍ଚା କରାହୋଇଥିଲା । ଆମେରିକାନ ସୈନ୍ୟମାନେ କଫି ମଗ୍‌ରେ ଚୁମୁକା ଦେଉ ଦେଉ ଟହଲୁ ଥିଲେ । ଜଣେ ଦିଜଣ ସ୍ଥିର ଦୃଷ୍ଟିରେ ମାହାତୋଗାଆଁର କଳା-କଳା ନଣିଷଗୁଡ଼ାକୁ ଦେଖୁଥିଲେ ।

ହଠାତ୍ ଜଣେ ଭଗୋତୀଲାଲ ଆଡକୁ ଆଗେଇ ଯାଇ, ହିପ୍-ପକେଟରୁ ବ୍ୟାଗ୍ ବାହାର କରି ସେଥିରୁ ଗୋଟାଏ ଦି'ଟଙ୍କିଆ ନୋଟ୍ କାଢ଼ି କହିଲେ କୟେନସ୍ ଅଛି ? ଭଙ୍ଗା ରେଜିକୀ କୌଣସି ସୈନିକ ରଖିବାକୁ ଗ୍ରହେଁ ନାଇଁ । ପଇସା ଫେରତ୍ ନ ଦେଇ ଦୋକାନୀ କିମ୍ବା ଫେରିଓ୍ୱାଲା କିମ୍ବା ଟ୍ୟାକସି ଡ୍ରାଇଭରକୁ କହେ, ଠିକ୍ ଅଛି, ଠିକ୍ ଅଛି । ଏଁଚିରେ ଯାଇ ବେତେଥର ଦେଖିଛି ।

ଏକ ଅଣି, ଦିଅଣି, ଆଉ ସୁଭକି ମିଳାଇ ଭଗୋତୀଲାଲ ନୋଟ୍ ଭାଂଗାଇ ଦେଉଥିଲା । ହଠାତ୍ ଦେଖେଁ କଂଟା-ତାରର ସେପଟେ ରହି ଅଣ୍ଟାରେ ଲୁହା ଝୁଲଇଥିବା ସେଇ ପିଲଟା ହସି ହସି ହାତ ବଢ଼ାଇ କଣ ଗ୍ରହୁଁଛି ?

ସଙ୍ଗେ ସଙ୍ଗେ ଭଗୋତୀଲାଲ ପାଖରୁ ଖୁଚୁରା ନେଇ ଅଣି ଦୋଅଣି ଗୁଡ଼ାକ ମୁଠା କରି ସେଇ ଆମେରିକାନ ସୈନିକ ମାହାତୋ ମାନଙ୍କ ଆଡ଼େ ଫିଙ୍ଗିଦେଲା ।

ମୋର ସେତେବେଳକୁ ସପ୍ଲାଇଁ ଫର୍ମ ଓ-କେ କରା ହୋଇ ଯାଇଛି ।

ଟ୍ରେନ୍ ଗ୍ରଲିବାକୁ ଆରମ୍ଭ କରିଛି । ମାହାତୋମାନଙ୍କ ଆଡ଼କୁ ଫେରି ଦେଖିଲି ।

ସେମାନେ ଚୁପଚାପ ଛିଡ଼ା ହୋଇଥିଲେ । ତାପରେ ହଠାତ୍, ଲାଲ ମୋରମ ଉପରେ ଫୋପଡ଼ା ଯାଇଥିବା ପଇସାଗୁଡାକ ଉପରେ କଂଟାତାରର ଫାଙ୍କ ଦେଇ ଝାଁପି ପଡ଼ିଲେ, ଅଂଟାରେ ଲୁହା ଝୁଲଇଥିବା ପଲଟା ଆଉ ସୁତୁଲିରେ ତାବିଜ୍ ବାଂଧିଥିବା ପିଲଟା ।

ସେଇ ମୁହୂର୍ତ୍ତରେ ଚଟି-ଜୋତା ପିଂଧା ମାହାତୋଦୁତା ଧମକ ଦେଇ କହି ଉଠିଲା, ଖବରଦାର ? ଏମିତି ଯୋରରେ ଚିତ୍କାର କରି କହିଲା ଯେ ମୁଁ ନିଜେ ବି ଚମକି ଉଠିଲି ।

କିନ୍ତ ବଛା ଦିଜଣ ଯା କଥା ଶୁଣଲେ ନାହିଁ । ସେ ଦିଜଣ ସେତେବେଳେ ଯିଏ ଯେତେ ପାରେ ସେତେ ଅଣି ଦିଅଣି ଗୋଟେଇ ନେଉଛନ୍ତି । ମୁହଁ ଖୋସା ବଡ଼ା କଷି ମକକା ପରି ହସୁଚି । ସ୍ତ୍ରୀ ପୁରୁଷଙ୍କର ସମସ୍ତ ଭିଡ଼ଟା ହସୁଛି ।

ଚଟି-ଜୋତା ପିଂଧା ମାହାତୋ ବୁଢ଼ା ରାଗି ଯାଇ ତାଙ୍କ ଭାଷାରେ କଣ ସବୁ କହିଗଲା । ସ୍ତ୍ରୀ ପୁରୁଷଙ୍କ ପଲ ହସିଲା ।

ମହାତୋ ବୁଢ଼ା ରାଗରେ ଗଜ୍‌ଗଜ୍ କରି ଗାଆଁ ଆଡକୁ ଚାଲିଗଲା । ମାହାତୋଗାଆଁର ଲୋକମାନେ ବି ଚାଲିଗଲେ କୋଳାହଳ କରି, କଥା କୁହାକୁହି ହୋଇ, ଖିଲ୍‌ଖିଲ୍ ହସି ହସି ।

ଏମାନେ ଚାଲିଯିବା ପରେ ଅଷ୍ଟାହଲ୍‌ଟରେ ପୁଣି ନିର୍ଜନ ନିସ୍ତବ୍‌ଧ ଶୂନ୍ୟତା । ମୋର ବେଳେବେଳେ ଭୀଷଣ ମନ ଖରାପ ହୁଏ । ଦୂରରେ ଦୂରରେ ପାହାଡ଼, ମହୁଆ ବନ, ଖଇର ଝାଡ଼ ପାର ହେଲେ କଳକଳ ଝରଣା ମହାତୋଗାଆଁର ସବୁଜ କ୍ଷେତ । ଆଖ୍ ଲାଖ୍ ରହେ । ତା ମଧ୍ୟରେ ନେଙ୍ଗୁଟି-ପିଧା କଳା-କଳା ମଣିଷ ଗୁଡ଼ାକ ।

ଏଆଡ଼େ ମଝିରେ ମଝିରେ ଆମେରିକାନ୍ ସୋଲଜରମାନଙ୍କର ଟ୍ରେନ୍ ଆସେ, ରହେ, ଡ଼ିମ୍ବ, ରୁଟି ମଗଭର୍ତି କଫଖାଇ ଚାଲିଯାଏ ।

ମାହାତୋ ଗାଆଁର ଲୋକ ଭିଡ଼ କରି ଆସନ୍ତି, କଂଟା ତାର ବାଡ଼ର ସେପଟେ ଧାଡ଼ି ବାଂଧି ଛିଡ଼ା ହୁଅନ୍ତି—

—ସାବ୍ ବଖସିସ୍, ସାବ୍ ବଖସିସ୍ !

ଏକ ସଙ୍ଗେ ଅନେକ ଗୁଡ଼ିଏ ଗାଉଁଲୀ ଗଳା ଚିତ୍କାର କରି ଉଠେ ।

ମେଜର ପାଖକୁ ଫର୍ମ ଓ.କେ କରେଇବାକୁ ଯାଇ ମୁଁ ଚମକି ପଡ଼ି ଠିଆ ହେଲି ।

ଦେଖିଲି, ଖାଲି ବଛା ପିଲା ଦିଇଟା ନୁହଁ, କେତେ ଜଣ ଜୁଆନ୍ ପୁରୁଷ ବି ହାତ ବଢ଼ାଇଛନ୍ତି । ଛୋଟ ଶାଢୀ ପିଂଧା ଗୋଟାଏ ମୋଟୀ ସ୍ତ୍ରୀ ଲୋକ ମଧ୍ୟ ।

ଥରେ ସବ୍‌ଜୀ କିଣିବାକୁ ଯାଇଥିଲି । ଏଇ ସ୍ତ୍ରୀ ଲୋକଟି ହସି ଜିଜ୍ଞାସା କରିଥିଲା, ଟରେନ କେବେ ଆସିବ ?

ଦିନେ ଦନେ ଅକାରଣରେ ଦଳବାଂଧି ସେମାନେ ଆସି ଛିଡ଼ା ହୁଅନ୍ତି । ଅପେକ୍ଷା କରି କରି ଚାଲିଯାନ୍ତି ।

କାଂଧରେ ସଟ୍ରାଇପ୍ ଲଗାଇଥିବା ତିନି ଗ୍ଭରି ଜଣ ଆମେରିକାନ ସଂଗେ ସଂଗେ ହିପ୍-ପକେଟରୁ ମୁଠା ମୁଠା ଅଣି ଦୋଅଣି ବାହାର କରି ଏମାନଙ୍କ ଆଡ଼କୁ ଫିଙ୍ଗି ଦେଉଛନ୍ତି । ଏମାନେ ହାମୁଡ଼ି ପଡ଼ିଲେ ପଇସା ଗୁଡ଼ାକ ଉପରେ ଛଡ଼ାଛଡ଼ି ହୋଇ କଂଟା-ତାରର ଫାଙ୍କ ଦେଇ ଭିତରକୁ ଝାଁପି ପଡ଼ିବାରେ କାହାର କାହାର ହାତଗୋଡ଼ ଛିଣ୍ଡିଗଲା, କାହାର ବା ନେଙ୍ଗୁଟି ଖସିଗଲା ।

ଟ୍ରେନ୍ ଗ୍ଭଲିଯିବା ପରେ ଭଲ କରି ଲକ୍ଷ୍ୟ କଲି ସେମାନଙ୍କୁ । ମନେ ହେଲା ମାହାତୋ ଗାଆଁର ଅଧେ ଲୋକ ଆସି ଜମା ହୋଇଛନ୍ତି । ସମସ୍ତଙ୍କ ମୁହଁରେ ଫୁଟିଛି ହସ । ସମସ୍ତେ କିଛି ନା କିଛି ପାଇଛନ୍ତି । କିନ୍ତୁ ତନ୍ନ ତନ୍ନ କରି ଖୋଜି ବି ମାହାତୋବୁଢ଼ାକୁ ଦେଖି ପାରିଲି ନାହିଁ । ମାହାତୋବୁଢ଼ା ଆସିନି । ସେଦିନ ଯାର ଆପତ୍ତି ଆଉ ଧମକ ଶୁଣି ବି ପଇସା ଗୁଡ଼ାକ ଫିଙ୍ଗି ଦେଇ, ନଥିଲେ ପିଲା ଦୁଇଟା । ତେଣୁ ବୋଧହୁଏ ରାଗି ଯାଇ ଆଉ ଆସିନି ।

ମୋତେ ଭାବିବାକୁ ଭଲ ଲାଗିଲା ବୁଢ଼ାଟା କ୍ଷେତରେ ଏକା ଏକା ଛିଡ଼ାହୋଇ ମାଟି ତାଡୁଛି ।

ଆମ ଦିନ, ଅର୍ଥାତ କୁକ୍ ଭଗୋତୀଲାଲକୁ ନେଇ ଆମ ପାଂଚ ଜଣଙ୍କ ଦିନ, ଅଣ୍ଡାହଲ୍ଟ ତଂବୁ ଭିତରେ କୌଣସି ରକମ କଟି ଯାଉଥିଲା । ମଝିରେ ମଝିରେ ଦିନେ ସୈନିକ ବୋଝାଇ ଟ୍ରେନ୍ ଆସୁଥିଲା, ରହୁଥିଲା, ଗ୍ଭଲି ଯାଉଥିଲା । ମାହାତୋ ଗାଆଁର ଲୋକ ଭିଡ଼ କରି ଆସି କଂଟା-ତାର ଧାରରେ ଧାଡ଼ି ଦେଇ ଛିଡ଼ା ହୁଅନ୍ତି, ହାତ ବଢ଼ାଇ ସମସ୍ତେ 'ସାବ ବଖସିସ, ସାବ୍ ବଖସିସ୍' ପାଟି କରନ୍ତି ।

ହଠାତ୍ ଦିନେ ମାହାତୋବୁଢ଼ାକୁ ଦେଖିବାକୁ ପାଏଁ । କ୍ଷେତ କାମ ଛାଡ଼ି ଦି ହାତର ଧୂଳି ଝାଡ଼ୁ ଝାଡ଼ୁ ଦୁମ ଦୁମ୍ କରି ଆଗେଇ ଆସୁଚି, ରାଗି ଯାଇ ଧମକ ଦେଉଚି ସମସ୍ତଙ୍କୁ । ଏମାନେ କଥା ଶୁଣୁ ନାହାନ୍ତି ବୋଲି କେବେ ବା ଅସହାୟ ପ୍ରତିବାଦର ଆଖିରେ ଗାଆଁ ଲୋକଙ୍କୁ ଅନାଇ ରହେ ।

କିନ୍ତୁ ତା ଆଡ଼କୁ କେହି ଫେରି ବି ଗ୍ଭହାନ୍ତି ନାହିଁ । ସୈନିକମାନେ ହିପ୍-ପକେଟରେ ହାତ ଦେଇ ହା-ହା କରି ହସି ହସି ମୁଠା ମୁଠା ପଇସା ଫୋପାଡ଼ି ଦିଅନ୍ତି । ମାହାତୋ ଗାଆଁର ଲୋକ ସବୁ ହାମୁଡ଼ି ଖାଇ ପଡ଼ନ୍ତି ସେଇ ପଇସା ଗୁଡ଼ାକ ଉପରେ । ନିଜ ଭିତରେ କଡ଼ାକଡ଼ି ହୋଇ ଝଗଡ଼ା କରନ୍ତି । ତା ଦେଖି ସୈନିକମାନେ ହା-ହା ହୋଇ ହସନ୍ତି ।

ଶେଷ କେତେ ଦିନ ଲକ୍ଷ୍ୟ କଲି, ଚଟି-ଜୋତା ପିନ୍ଧା ମହାତୋବୁଢ଼ା ଆଉ ଆସୁ ନାହିଁ । ମାହାତୋବୁଢ଼ା ଏମାନଙ୍କ ଉପରେ ରାଗି ଯାଏ ବୋଲି, ଆସେ ନାହିଁ ବୋଲି ମୋର ଗୋଟାଏ ଧରଣର ଗର୍ବ ହଏ । କାରଣ କେବେ କେବେ [illegible] ଲୋକଗୁଡ଼ାଙ୍କ ବ୍ୟବହାରରେ ଆମେସବୁ; ମୁଁ ଆଉ ଭଗୋତୀଲାଲ ଖୁବ୍ ବିରକ୍ତ ବୋଧ କରିଛୁଁ । ଭିତରେ ଭିତରେ ଲଜ୍ଜା ପାଇଛୁଁ ।

ଏମାନଙ୍କର କଳା କୁଟିଆ ଦୀନ ଦରିଦ୍ର ବେଶ ଦେଖୁ ସୈନିକମାନେ ନିଶ୍ଚୟ ଏମାନଙ୍କୁ ଭିଖାରୀ ଭାବନ୍ତି । ଭାବନ୍ତି ବୋଲି ମୋତେ ଭାରି ଖରାପ ଲାଗେ ।

ସେଦିନ କଂଟା-ତାର ସେପଟେ ଥାଇ ଏମାନେ 'ବକସିସ୍ ବକ୍ସିସ୍' ବୋଲି ଚିତ୍କାର କରୁଛନ୍ତି, ଆଉ ଭ ଖାକି ବୁଶ୍-ସାର୍ଟ ପିନ୍ଧା ଧାଡ଼ି ଜାନକୀନାଥ ସଙ୍ଗେ ମୁଁ ଗପ କରୁଚି, ଆମ ପାଖ ଦେଇ ଜଣେ ଅଫିସର ମଚ ମଚ କରି ଯାଉ ଯାଉ ଏମାନଙ୍କ ଚିତ୍କାର ଶୁଣି ଛେପ ପକାଇବା ଭଳି ଗଳାରେ କହିଗଲା, ବ୍ଲଡ଼ି ବେଗାର୍ସ ।

ମୁଁ ଆଉ ଜାନକୀନାଥ ପରସ୍ପରର ମୁହଁ ଚାହାଁଚୁହିଁ ହେଲୁ । ଆମ ମୁହଁ ଅପମାନରେ କଳା ହୋଇଗଲା । ମୁଣ୍ଡ ଟେକି ଚାହିଁ ପାରିଲୁ ନାହିଁ । ଖାଲି ଅକ୍ଷମ ରାଗରେ ଭିତରେ ଭିତରେ ଜଳି ଉଠିଲୁ ।

ବ୍ଲଡ଼ି ବେଗାର୍ସ, ବ୍ଲଡ଼ି ବେଗାର୍ସ ।

ସମସ୍ତ ରାଗ ଯାଇ ପଡ଼ିଲା ମାହାତୋମାନଙ୍କ ଉପରେ । ଟ୍ରେନ୍ ଚାଲିଯିବା ପରେ ମୁଁ ଭଗୋତୀଲାଲକୁ ନେଇ ସେମାନଙ୍କୁ ଆକଟ କରିବାକୁ ଗଲି । ସେମାନେ ସାଇଁଟା ପଇସା ଅଂଟାରେ ଗୁଂଜି ହସି ହସି ପଳାଇଲେ ।

ତଥାପି ଏମାନଙ୍କ ପାଇଁ ସମସ୍ତ ଲଜ୍ଜାକୁ ମୁଁ ଗୋଟାଏ ଅହଙ୍କାରରେ ଲୁଚାଇ ରଖିଥିଲି । ପାହାଡ଼ ଭଳି ଉଚ୍ଚା ହୋଇ ସେ ଅହଙ୍କାରଟା ମୋ ସାମନାରେ ଛିଡ଼ା ହୋଇଥିଲା ମାହାତୋ ବୁଢ଼ାର ଚେହେରା ନେଇ ।

କିନ୍ତୁ ସେଦିନ ମୋ ବୁକୁ ଭିତରେ ସମସ୍ତ ଜ୍ୱାଳା ଲିଭିଗଲା ।

ଭୁରକୁଣ୍ଡାରେ ଠିକାଦାର ସଙ୍ଗେ ଦେଖା କରିବାକୁ ଯାଇ ଖବର ପାଇଥିଲି ।

ସର୍ଦ୍ଦାର କୁଲି ଦୁ'ଜଣ ଧେଡେବେଡେ ଟେବୁଲ ବନିଥିବା ଡ୍ରମ୍ ଦୁଇଟାକୁ ଗୋଡ଼ରେ ଠେଲି ଅଣ୍ଟାହଲ୍ଟର କଂଟା-ତାର ଭିତରକୁ ଗଡ଼େଇ ଦେଉଛନ୍ତି । ଚବୁଁରା

ଦୌଡ଼ି ଖୋଲୁଥିଲା ଆଉ ଜଣେ । ଭଗୋତୀଲାଲ ଡ୍ରମ୍‌ଟାରେ ଜୋରରେ ଗୋଟାଏ ଲାଠି ବସାଇ କହିଲା, ଖେଳ ଖତମ, ଖତମ ।

ହଠାତ୍ ହୋ ହଲ୍ଲା ଶୁଣି ଦେଖେଁ ମାହାତୋଗାଆଁର ଲୋକମାନେ ଛୁଟି ଛୁଟି ଆସୁଛନ୍ତି ।

ଆମେ ଅବାକ ହୋଇ ଚାହିଁଲୁଁ ସେମାନଙ୍କ ଆଡ଼କୁ । ଭଗୋତୀଲାଲ କେଜାଣି କାହିଁକି ହସି ଉଠିଲା ।

ସେତେବେଳକୁ କଂଟା-ତାର ବେଢ଼ା ସେପଟେ ଭିଡ଼ କରି ଠିଆ ହୋଇଛନ୍ତି ସେମାନେ ।

ସଙ୍ଗେ ସଙ୍ଗେ ଗୋଟାଏ ହୁଇସିଲ ଶୁଣିବାକୁ ପାଇଲି; ଟେନ୍‌ର ଶବ୍ଦ କାନରେ ବାଜିଲା ।

ଫେରି ଦେଖେଁ ଟ୍ରେନ୍‌ଟା ବାଙ୍କ ବୁଲି ଅଣ୍ଡା-ହଲ୍‌ଟ ଆଡକୁ ଆସୁଚି । ଝିଡ଼ିକିରେ ଝିଡ଼ିକିରେ ଖାକୀ ପୋଷାକ ।

ଆମେ ବିବ୍ରତ ବୋଧ କଲୁଁ, ଆମେ ଅବାକ୍ ହୋଇଗଲୁ । ତାହେଲେ ଖବର ପଠାଇବାକୁ ଭୁଲି ଯାଇଚି ଭୁଗ୍ଗୁକୁଣ୍ଡା ଅଫିସ ? ନା, ଯେଉଁ ଖବର ଶୁଣି ଆସିଚି ସେଟା ଭଲ ?

ଟ୍ରେନ୍‌ଟା ଯେତିକି ଆଗେଇ ଆସୁଚି, ସେତିକି ଗୋଟାଏ ଅଦ୍ଭୁତ ଝମଝମ ଶବ୍ଦ ଶୁଣାଯାଉଛି । ଟିକିଏ ପାଖକୁ ଆସିବାରେ ବୁଝାଗଲା, ଟ୍ରେନ ସାରା ଟ୍ରେନ ଭର୍ତ୍ତି ସୈନିକଙ୍କ ଦଳ ପରିସ୍ୱରର ଗଳା ସଙ୍ଗେ ଗଳା ମିଳାଇ ଗାନ କରୁଛନ୍ତି ।

ବିଭ୍ରାନ୍ତ ପରି ମୁଁ ଥରେ ଟ୍ରେନ୍‌ଟାକୁ ଦେଖିନେଲି, ତାପରେ ଚାହିଁଲି କଣ୍ଟା-ତାର ପାଖର ଭିଡ଼ଟା ଆଡ଼କୁ । ସେଇ ମୁହୂର୍ତ୍ତରେ ଆଖି ପଡ଼ିଲା ମାହାତୋ ବୁଢ଼ା ଉପରେ । ସମସ୍ତ ଭିଡ଼ ଭିତରେ ହାତ ବଢ଼ାଇ ସେ ବି ଚିତ୍କାର କରୁଚି, ସାବ୍ ବଖସିସ୍, ସାବ୍ ବଖସିସ୍ ।

ଉନ୍ମାଦଙ୍କ ପରି, ଭିକ୍ଷୁକଙ୍କ ପରି ସେମାନେ ଚିତ୍କାର କରୁଛନ୍ତି ।

କିନ୍ତୁ ଆମେରିକାନ୍ ସୈନିକମାନଙ୍କର ସେଇ ଟ୍ରେନଟା ଅନ୍ୟ ଦିନ ପରି ଏଥର ଆଉ ଅଣ୍ଡାହଲ୍‌ଟରେ ରହିଲ ନାହିଁ । ପାସେଂଜର ଟ୍ରେନ୍ ଗୁଡ଼ାକ ପରି ଅଣ୍ଡାହଲ୍‌ଟକୁ ଉପେକ୍ଷା କରି ହୁସ୍ କରି ଚାଲିଗଲା । ଆମେ ଜାଣିଥିଲୁ ଟ୍ରେନ୍ ଆଉ ରହିବ ନାହିଁ ।

ଟ୍ରେନ୍‌ଟା ଚାଲିଗଲା । କିନ୍ତୁ ମାହାତୋଗାଆଁର ସମସ୍ତେ ଭିଖାରି ହୋଇଗଲେ । କ୍ଷେତରେ ଚାଷ କରୁଥିବା ଲୋକଗୁଡ଼ାକ ସବୁ ଭିଖାରୀ ହୋଇଗଲେ ।

# ତାସ୍‌ର ଘର ପରି

## ସୈୟଦ ମୁସ୍ତାଫା ସିରାଜ

ଦୀପକ ମିଶ୍ର

ଯେତେ ଦୂର ଦୌଡ଼ିଛି, ଦିପାଖରେ କୌଣସି ଦରଜା ଖୋଲା ଦେଖିନି । କୌଣସି ଝରକା ବି ନୁହେଁ । ଭିଜା ରାସ୍ତା । ସହରରେ ଆକସ୍ମିକ ଏକ ବ୍ଲାକ୍ ଆଉଟ୍ ହେଲା ପରି ମନେ ହେଉଛି । ଏବଂ ଏତେ ସ୍ତବ୍ଧତା ବି ଭାରି ଅସ୍ୱାଭାବିକ । ଯଦିଚ ରାତି ଦଶଟା ବାଜି ଗଲାଣି, ଏବଂ ପଛଆଡ଼େ ସାଂଘାତିକ କିଛି ଘୋଟାଏ ସଦ୍ୟ ଘଟି ଯାଇଛି, ଏଇ ସହରଟାକୁ ଭୟଭୀତ କରାଇଦେବାକୁ ବା ରୁଦ୍ଧବାକ୍ କରାଇଦେବାକୁ ତା ମୋଟେ ହିଁ ବେଶୀ ନୁହେଁ । ଉତ୍ତରୋତ୍ତର ମଣିଷର ରକ୍ତ ଥଣ୍ଡା ହୋଇ ପଡ଼ିଚି, ମଥାର ଖୋଲି ଶକ୍ତ କରିବାକୁ ହେଉଛି ଏବଂ ରାମବାବୁ ଶ୍ୟାମବାବୁ-ଯଦୁବାବୁମାନେ ଥଳି ହାତରେ ପୋଟଳର ଦରଦାମ୍ କରୁଛନ୍ତି– ଜୋତା ତଳେ ଚଟକା ରକ୍ତ । ଆଉ, ରକ୍ତର କୌଣସି ଭାଷା ନାହିଁ ।...

ପଛରେ ଦୂରନ୍ତ-ବେଗ କିମ୍ବିଟା ଦୂରରେ ପାଦ ଶବ୍ଦ ଶୁଣି ଦୌଡ଼ିବାକୁ ଲାଗିଲି । ଜାଣେ ଭଲରେ ଚିତ୍କାର କରି ମୁଣ୍ଡ ଫଟାଇଲେ ମଧ୍ୟ କୌଣସି ଦରଜା ଖୋଲା ହେବ ନାହିଁ କିଂବା କୌଣସି ଝରକା ଖୋଲି କେହିଁ ମୁହଁ ବଢ଼ାଇ ବ୍ୟାପାରଟା ଦେଖିବ ନାହିଁ । ସମସ୍ତେ ଏଇ ଦୁଃସମୟରେ କଇଁଚ ପରି ନିଜ ଖୋଳ ଭିତରେ ଲୁକି ପଡ଼ିଛନ୍ତି ଏବଂ ଜୀବବିଜ୍ଞାନରେ ପଢ଼ିଛି କଇଁଚର କୌଣସି କଣ୍ଠସ୍ୱର ନାହିଁ ।

ସହରର ଏପଟଟା ମୋର ପୂରା ଅଜଣା । ଦୌଡ଼ୁ ଦୌଡ଼ୁ ଏକ ମଜାର ବ୍ୟାପାରର ଟେର୍ ପାଇଲି । ବଢ଼ାଇ କରି କୁହାଯାଇପାରେ ଯେ, ଆଜିଠାରୁ ପୃଥିବୀରେ ଜଳ-ସ୍ଥଳ ଅନ୍ତରୀକ୍ଷରେ କେଉଁଠି ଏତେ ଟିକିଏ ଜାଗା ନାହିଁ ଯେଉଁଠିକି ମଣିଷ ନ ଯାଇଛି ! କିନ୍ତୁ କି ଆଶ୍ଚର୍ଯ୍ୟ । ଏବେ ମଧ୍ୟ ପୃଥିବୀ ତ ଦୂରର କଥା ଏଇ

ସହରଟାରେ ବି ଅନେକ ଜାଗା ଅଛି ଯେଉଁଠି ଆଜି ସୁଦ୍ଧା ମୋର ପାଦ ପଡ଼ି ନାହିଁ— ଯାହା ଆଜି ବି ମୋ ନିକଟରେ ଅନାବିଷ୍କୃତ ! ମଣିଷକୁ ନେଇ ବଡ଼ାଇ କରିବାରେ କଣ ଆସେ ଯାଏ ! ମୁଁ ସତେଇଶ ବର୍ଷର ଦୁର୍ଦ୍ଦାନ୍ତ ଯୁବକ ଦୀପକ ମିତ୍ର, ମୁଁ ଯେ ଏବେ ସୁଦ୍ଧା କେତେ ଜାଗା ଦେଖିନି, ସେଠିକି ଯାଇ ବି ନାହିଁ ଏବଂ କେତେ କଣ ଅନାବିଷ୍କୃତ ରହିଯିବ ମୋ ପାଖରେ-ଏବଂ ଏଇ ଦୁର୍ଦ୍ଧର୍ଷ ଉତ୍ତେଜନାମୟ ଜୀବନ, ବିପଦସଙ୍କୁଳ; ଯେ କୌଣସି ମୁହୂର୍ତ୍ତରେ ମୁଁ ବୁଦ୍‌ବୁଦ୍ ପରି ମିଳାଇ ଯାଇପାରେ— ଯେଉଁଥିପାଇଁ ଇସ୍ପାତର ଛୋଟ ଟିକିଏ ଟୁକୁରାହିଁ ଯଥେଷ୍ଟ, ଏବଂ ହାୟ ମୋର ବ୍ୟର୍ଥ ସତେଇଶଟି ବର୍ଷ ! ପୃଥିବୀ ଓ ଜୀବନର ଅନେକ ଅଂଶ ଉନ୍ମୋଚିତ ହେବା ଆଗରୁ ମୋତେ ପୋଡ଼ି ଦିଆଯିବ କିଂବା ଫିଙ୍ଗି ଦିଆଯିବ ପାଣିରେ, ଶାଗୁଣା, କୁକୁର, କାଉଙ୍କ ଖାଦ୍ୟ ହିସାବରେ ନିର୍ବାଚିତ,- ହାୟ ସୁନ୍ଦର ସ୍ୱାଦୁ ଫଳର ଖୋସା ପରି ମୋର ଶରୀର, ମୋର ଯୌବନ, ମୋର ମନ ?

ସେଇଥିପାଇଁ ତ ମୁଁ ପଳାଉଥିଲି । ମୋ'ର ସାରା ଶରୀର, ଯୌବନ, ମନ ତାଙ୍କ ନିଜ ଭାଷାରେ ଚିତ୍କାର କରୁଥିଲେ, ପଳାଇ ବଂଚି ରହ, ପଳାଇ ବଂଚି ରହ ।

ଟେର୍ ପାଉଥିଲି, ଏମାନେ ଏବେ ସୁଦ୍ଧା ମୋ' ଆଶା ଛାଡ଼ି ନାହାନ୍ତି । ମୋତେ ଖତମ କରିଦେଇ ନ ପାରିଲେ ଏମାନଙ୍କର ଶାନ୍ତି ନାହିଁ । ଏମାନେ ସମାନ ଭାବରେ ମୋତେ ଅନୁସରଣ କରୁଛନ୍ତି । ଏବଂ ଆଜି ଏଇ ବିପଦର ଗତିରେ ସହରଟା ବି ଆଶ୍ଚର୍ଯ୍ୟ ଭାବରେ ବଦଳି ଯାଇଛି । ସଭ୍ୟତାର ସଜଡ଼ା ବଗିଚା ହୋଇ ପଡ଼ିଛି ପ୍ରାକ୍-ଇତିହାସର ଜମି ଉଠିଥିବା ଜମାଟ ଅରଣ୍ୟ । ସବୁ ସ୍କାଇସ୍କ୍ରାପର ତାଙ୍କର ଆଇଖାଲ୍ଲା ଖୋଲି ଛିଡ଼ା ହୋଇଛନ୍ତି । ଯେମିତି ବିଶାଳ ଗଛ । ଏମାନେ ସବୁ ରମବାବୁ, ଶ୍ୟାମ-ବାବୁ, ଯଦୁବାବୁ ହାମୁଡ଼େଇ ହାମୁଡ଼େଇ ଅନ୍ଧକାରରେ ସେଇ ଆଦିମତମ ସ୍ୱର୍ଗୀୟ ଗଛଟାର ଚେର ଖୋଜୁଛନ୍ତି—ଯାହାର ଫଳ ଖାଇ ମଣିଷ ଜାତିର ଅଶେଷ ଦୁର୍ଗତି, ଏମାନଙ୍କ ହାତରେ ଆଜି ପ୍ୟାକେଟ୍‌ରେ ମୋଡ଼ା ଛୋଟ ଛୋଟ ତିନୋଟି କୁଠାର— ଯାହାର ଗୋଟିକର ବିଜ୍ଞାପିତ ଦାମ ମାତ୍ର ପାଞ୍ଚ ଟଙ୍କା ।

ଏଥର ସାମନାରେ ଗୋଟାଏ ତେରାସ୍ତା ମିଳିଗଲା । ଡାହାଣକୁ ନା ବାଆଁକୁ ଯିବି—କେତେକ ମୁହୂର୍ତ୍ତ ଇତସ୍ତତ କରିବା—ତାପରେ କଦର୍ଯ୍ୟ ଆବାଜରେ ଗୁଳି ଚଳାଉଛନ୍ତି ଏମାନେ । ଆଶ୍ଚର୍ଯ୍ୟ, ସ୍ପ୍ଲିନ୍‌ଟାରର ଜୁଳୁଜୁଳିଆ ପୋକ ଗୁଡ଼ାକର ଆଲୁଅ ଦେଖିବାକୁ ଇଆଡ଼କୁ ସିଆଡ଼କୁ ବେକ ଘୁରାଉଥିଲି । ବିପଦ ସମୟରେ ବି ଆମର

ନିର୍ବୋଧ ଶିଶୁତ୍ୱ ଠିକ୍ କାମ କରିଯାଏ ।

ପରକ୍ଷଣରେ ହିଁ ଗୋଟାଏ ଡ଼ିଆଁ ମାରି ବାଆଁ ଦିଗକୁ ଚାଲିଗଲି । ଗୋଟାଏ ଝରକା ଖୋଲି କେଉଁ ଦୁଃସାହସୀ ମୁଖଡ଼ଙ୍କା ଏକ ଗରିଲ ଯେପରି ରଡରେ ନାକ ଘଷୁଛି । ଘରଟା ଶୁନ୍‌ଶାନ୍ । ଗେଟ ଉପରେ ଭିଡିବନ୍ଧା ଲତାପତ୍ରର ଛାଉଣି । କେଉଁ ଫୁଲ ଗନ୍ଧ ମୋ ଇଛା ବିରୁଦ୍ଧରେ ମୋ ମଗଜରେ ଢକି ଯାଉଥିଲା । ଛାତିଉଚା ଗେଟର କବାଟ ଡେଇଁ ଯେତେବେଳେ ସେପଟେ ଭିତରେ ଯାଇ ପହଂଚିଲି କିଛି ନିରୁପଦ୍ରବ ଘଣ୍ଟି ଆସିଲା । ତାପରେ ମନେହେଲା ସଚରାଚର ଏସବୁ ଘରେ କୁକୁର ଥା'ନ୍ତି । ବାହାରେ ଲେଖାଥାଏ 'କୁକୁର ଅଛି, ସାବଧାନ ।" କିନ୍ତୁ ଭିତରେ ଢୁକି ବି ଯେତେବେଳେ କୌଣସ କ୍ରୁଦ୍ଧ ଗର୍ଜନ, ଶୁଣୁନାଇଁ, ସେତେବେଳେ ନିସନ୍ଦେହରେ ଏଘରେ କୁକୁର ନାଇଁ । କିମ୍ବା ଥିଲେ ମଧ୍ୟ ସେ ବର୍ତ୍ତମାନ ଘରବନ୍ଦୀ ।

କେଇଟା ମିନିଟ । ଟିକିଏ ଥକା ମାରିନେଲି । ବାହାରେ ଆଉ କୌଣସି ଆଓ୍ୱାଜ ନାଇଁ । ଏମାନେ ହୁଏତ ଅନ୍ୟ-ଅନ୍ୟ ଗଳିରେ ଛୁଟାଛୁଟି କରି ମୋତେ ଖୋଜୁଛନ୍ତି । ଆପାତତ ମୁଁ କିଛି ସମୟ ନିଶ୍ଚିନ୍ତ । ଉପରର ଖୋଲା ଝରକାର ଅସ୍ପଷ୍ଟ ଆଲୁଅରେ ଭିତରଟା ଦେଖିନେଲି । ଚେନାଏ ହେବ ଲନ୍ । ଦି ପାଖରେ କିଛି ଗଛ ପତ୍ର-ଫୁଲବଗିଚା । ଅଉ ଅନ୍ଧକାର ଏଇ ବିପଜ୍ଜନକ ଇଲାକାରେ ଦୁଃସମୟରେ ହାସ୍ୟ ହେବାର ସାହସ ! ଦୁଃସାହସ ' ରାଗରେ ବିରକ୍ତିରେ ମେଜାଜ ଖରାପ ହେଲା । ଏଟା ଠିକ ନୁହ, ଏ ସବୁ ଠିକ୍ ନୁହଁ ! ଇଛା କଲା, ସହରର ତାବତ୍ ଫୁଲଗଛକୁ ଥାପଡ଼ ମାରି କହିବାକୁ, ଚୁପ କର ! ପକ୍ଷୀମାନଙ୍କୁ ଧମକାଏ, ଖବର୍ଦ୍ଦାର, ଆସନା । ପ୍ରେମିକ ପ୍ରେମିକାମାନଙ୍କୁ ଶାସନ କରେଁ । ସ୍ୱାମୀ–ସ୍ତ୍ରୀ ମାନଙ୍କୁ ପାଖାପାଖି ଶୋଇବାକୁ ନିଷେଧ କରେଁ । ଏବଂ କାରିଗରମାନେ ନିପାତ ଯାଅ......ଇଞ୍ଜିନିୟାରଗଣ ହାତ ଉଠାଅ, ବିଜ୍ଞାନୀଗଣ ବର୍ତ୍ତମାନ ବିଶ୍ରାମ କର ।

ସେଇ ସମୟରେ ଦୂରରେ କେଉଁଠି ବୁମ୍ ବୁମ୍ ଆଓୟାଜ ହେଲା କେଉଁଠି । ଘର ବାଡ଼ି କଂପିଲେ । ପ୍ରଚଣ୍ଡ ଉଜ୍ଜ୍ୱଳ ଆଲୋକର ଝଲକ ଆସି ଫେର୍ ଅଂଧକାରରେ ମିଶି ଗଲା ବାହାରେ । ପୁଲିଶ୍ ନିର୍ଘାତ ! ଏଇନା ପୁଲିଶ୍ ଆସି ଯାଇଚି ।

ଗୋଟାଏ ଡ଼ିଆଁରେ ଘୁଂଚି ଗଲି । ସାମନାରେ ଚଉଡ଼ା ସିଢ଼ି । ବାଡ଼ ମଝିରେ ବଡ଼ ଦରଜାଟା ଖୋଲା । ତା ମାନେ ଏଟା ଗୋଟାଏ ଫ୍ଲାଟ ଘର ।

ବେଓ୍ୟାରିସ୍ ସଂପତ୍ତି-ପରି । ସିଡ଼ି ମୁହଁ ଦରଜାଟା ଠେଲିଦେଇ ଭାବନ୍ତି ଶ୍ୟାମ ବାବୁ ଦେବେ.ବୋଲି । ଶ୍ୟାମବାବୁ ଭାବନ୍ତି ନନ୍ଦବାବୁ ଏବଂ ଦରଓ୍ୱାନ ଯଦି ବା ଥାଏ ସେ ନିଶାରେ ଚୂର୍ । ସେ ଅଛି । ସିଡ଼ିର ମୋହ.ଚକ୍ଷୁ ଲାଗି ଗ୍ରେରକୋଠି ପରି–ସେଠି ଖଟିଆରେ ସେଇ ସ୍ତବ୍ଧ ଲୋକଟା ତ ଅଛି । କେତେଟା ପାହାଚ ଚୁପ୍ ଚାପ ଉଠି ଦେଖିଲି ଦୋତାଲାର ସିଡ଼ି ଉପରେ ଗୋଟାଏ ବଲବ ଜଳୁଚି । ବଲ୍ବଟା କାଳୀ ଧୂଳି ମଖା । ପ୍ରଥମେ ଗେଟ ଫଳକ ଇତ୍ୟାଦି ଦେଖି ଭାବିଥିଲି ଘରଟା ଚମତ୍କାର ଏବଂ ପରିଚ୍ଛନ୍ନ ହେବ–କିନ୍ତୁ କ୍ରମଶ ତାର ବାର୍ଦ୍ଧକ୍ୟ ଜୀର୍ଣ୍ଣତା ଏବଂ ଅବହେଳାର ଚିହ୍ନ ଗୁଡ଼ିକ ଆଖିରେ ପଡ଼ିବାକୁ ଲାଗିଲା । ଯେତେ ଉପରକୁ ଉଠୁଚି ସେତେ ମନେ ହେଉଛି ଯେପରି କୌଣସି ଅସ୍ପଷ୍ଟ ଜଗତର ପୋଡ଼ା ଜାଗାରେ ମୁଁ ଢୁକି ପଡ଼ିଛି । ଦିତାଲାରେ ଗ୍ରେରେଟି ଦରଜାରେ ତାଲା ଝୁଲୁଥିଲା । ଦଳ ବାନ୍ଧି କେଉଁଠିକି ଗ୍ଲିଯାଇଛନ୍ତି ଏମାନେ ? ତେତାଲରେ ତିନି ଦିଗକୁ ତିନୋଟି ଦରଜା । ଉପରର ବତୀଟା ବି ସେମିତି ଅପରିଷ୍କାର । ଏଠି ଦିଟା ଦରଜାରେ ତାଲା ଝୁଲୁଚି । ଗୋଟାଏ ଛଡ଼ା । ତାହେଲେ ଏଇ ଘରର ଝରକାରେ ସେଇ ଗରିଲାବାକୁ ଦେଖିଥିଲି । ଏକା ନା ସପରିବାରେ ଥାଏ ଇଏ ? ଆଶ୍ଚର୍ଯ୍ୟ, କୌଣସି ପ୍ଲାଟରେ ନାମପ୍ଲେଟ୍ ନାଇଁ । କୌଣସି କଲିଂବେଲ୍ ନାଇଁ । କାନ୍ଥରେ ଲାଲ ଓ କଳାରେ ଲେଖା ଅଜସ୍ର କଥା–ଯେଉଁ କଥା କି ମୋର.ଓ ସମସ୍ତଙ୍କର ସବିଶେଷ ମୁଖସ୍ଥ । ଏଥର ଦିହ ଝିମିଝିମି କରି ଉଠିଲା । ହୁଏତ ମୋ ପକ୍ଷରେ ନିରପଦ ନୁହେଁ ଜାଗାଟା । ହୁଏତ ଉପରେ ପଡ଼ି ସ୍ୱୟଂ 'ଏମାନଙ୍କ' କାହା ଖପ୍ପରରେ ପଡିବାକୁ ଯାଉଚି ।

ମରିଗଲି । ଉପାୟ ନାଇଁ । ପକେଟ୍‌ରେ ହାତ ଭରି ୩୮ କ୍ୟାଲିବର୍‌ର ରିଭଲଭର୍‌ଟା ଚାପି ଧରିଲି । ଗୋଟିଏ ମାତ୍ର ଗୁଳି ଅଛି ଏବଂ ସେଇ ଯଥେଷ୍ଟ । ଅନ୍ତତ କେତୋଟି ଘଂଟା ମୋତେ ବଂଚି ରହିବାକୁ ହେବ ନିରପଦରେ–ପରବର୍ତ୍ତି ଆହୁରି ଅନେକ ଘଂଟା ଦିନ ମାସ ବର୍ଷ ବଂଚି ରହିବା ପାଇଁ । ଏବଂ ସେଟା ମୋ ପକ୍ଷରେ ଭାରି ଜରୁରୀ । ହାୟ ମୋର ସତେଇଶଟି ବ୍ୟର୍ଥ ବର୍ଷ !. ସେ ବିମୁଗ୍ଧ ବିଲେଇପିଲା ପରି ମୋ ଭିତରେ ଚୁପ ଚୁପ୍ ଅନାଇ ରହିଚି ।

ଖୁବ୍ ଧୀରେ କଡ଼ା ହଲାଇଲି । ତିନିଥର । ତା'ପରେ ଆସ୍ତେ ଆସ୍ତେ ଧକ୍କା ଦେଲି ।

## 2

## ହିରଣ୍ମୟ ଦତ୍ତରାୟ

...କଥା କଣ ? ଫେର୍ ଆଲୁଅ ଗଲା ? ସାଗ ବର୍ଷ ଏ ଉପଦ୍ରବ ସମାନ ଗ୍ଲିବ । ମହମବତୀ କିଣି କିଣି ଫତୁର ହୋଇଗଲି । କର୍ପୋରେଶନ୍........

ସେଇ ସମୟରେ ବୋହୂମା ଦୌଡ଼ି ଆସିଲେ...ଶୁଣୁଛନ୍ତି ? ଆଜି ଗତିରେ ପୁଣି ଆରଂଭ ହେଲା ।

ଚମ୍କି ପଡ଼ିଲି, କ'ଣ ଆରଂଭ ହେଲା ବୋହୂମା ?

ଗନୁ କଣ ବିରକ୍ତ ହେଲା ମୋ ଉପରେ ? ଧ୍ୟେଲ କଥା..ମୋ କାନ ଦୁଇଟାକୁ ବୟସ କ୍ରମଶ କ୍ଷୟ କରି ପକାଇଚି ଠିକ୍ ଆଖି ଦୁଇଟା ପରି । ସେ ଜାଣିବା ଉଚିତ । ହୁଏତ ଜାଣେ, ତଥାପି ବିରକ୍ତ ହୁଏ । ମୁଁ ଜାଣେ ଗନୁ ଦିନକୁ ଦିନ କ୍ରମଶ ବେଶୀ ବିରକ୍ତ ହୋଇ ପଡୁଚି ମୋ ପ୍ରତି । ମୋର ହଠାତ୍ ଡେଇଁ ଉଠିବା, ଛଟପଟ ହେବା, ଝରକା ଖୋଲି ବେଇ–ଗତିରେ ତଳ ବାଟଟା ଲକ୍ଷ୍ୟ କରିବା ଏବଂ ଆଚମକା କିଏ ଡାକିଲା ବୋଲି ଦରଜା ଆଡ଼କୁ ଛୁଟିଯିବା—ସବୁହିଁ ଯା ପାଖରେ ବିରକ୍ତିକର ବୋଧ ହେଉଛି । ମୁଁ ଟେର ପାଉଚି ଏ ସବୁର । ବିଶେଷ କରି ବସିବା ଘରେ ସୌମେନର ଛବିଟା ରଖିବା ତାର ପସନ୍ଦ ହେଉ ନାଇଁ । ସୌମେନ୍‌ର ସାଂପ୍ରତିକ ଛବି କହିଲେ ଏଇ ଗୋଟାକହିଁ । ବେଶ ବଡ ସାଇଜ ଏବଂ ଏକେଲା । ତା'ଛଡ଼ା ଆଉ ଯେତେ ଛବି ଅଛି, ତା ଅନେକ ଦିନ ତଳର ଏବଂ କିଛି କିଛି ବୋହୂମାଙ୍କ ସଙ୍ଗରେ ଉଠା ଛବି । ସେଗୁଡ଼ାକ ଫ୍ୟାମିଲୀ ଆଲବମ୍‌ରେ ରହିଛି । ଆଲବମ୍‌ଟା କେତେବେଳେ ବା ନିଜ ଘରେ ରଖେଁ କେତେବେଳେ ବା ଗନୁକୁ ଦିଏଁ କିମ୍ବା ସେ ନିଜେ ମାଗି ନେଇଯାଏ । କିନ୍ତୁ ତା ଭିତରେ ବର୍ତ୍ତମାନର ସୌମେନ୍‌କୁ ତ ପାଏନା । ଇଦାନୀଂ ତା କପାଳରେ ଗାର ପଡ଼ିଥିଲା । ଆଖି ତଳ ଠେଲି ଉଠିଥିଲା । ତାର ଲାବଣ୍ୟ କ୍ଷୟ ହୋଇ ଯାଉଥିଲା କ୍ରମଶ । ଆଖି ଦିଇଟା ଅଦଭୁତ ଉଜ୍ଜ୍ୱଳ ହେଉଥିଲା ଦିନକୁ ଦିନ । ଏବଂ ଏଇ ନୂଆ ଛବିରେ ତାର ସବୁଟିକ ହିଁ ଧରାପଡ଼ିଛି । ସୌମେନ ମୋର ଏକମାତ୍ର ସନ୍ତାନ, ବଡ଼ ଆଦରର ଏଇ ସୌମେନ ! ଈଶ୍ୱରଙ୍କୁ କହୁଥିଲି ଯାଚ ସବୁ କିଛି ଜ୍ୱାଳା ଆଉ ଉତ୍ତାପ ମୋତେ ଦିଅ ! ପୃଥିବୀର ଅନେକ ଶତ୍ରୁଶକ୍ତି ସଙ୍ଗରେ ଯୁଝିବାର ଅଭିଜ୍ଞତା ଏଇ ବୁଢା ମଣିଷଟିର ଅଛି । ଅନେକ ଦୁର୍ଦାନ୍ତ ବିଷୟ ସବୁ ମୋର ଦେଖା ଅଛି । ଅନେକ ଭୟଙ୍କର ଉତ୍ତାପ, ଆଲୁଅ ଫାଟି ବାହାରି ଆସିବା ବିଧ୍ୱଂସୀ ନିଆଁ, ଅନେକ ଝଡ଼ ଝଞ୍ଜା ଦୁର୍ଯୋଗ, ଅଗଣିତ ଦୈତ୍ୟ ସଙ୍ଗରେ

ମୁକାବିଲ କରିବାକୁ ହୋଇଛି । କେତେ ଦୁଃସମୟ ନ ଯାଇଛି । କିନ୍ତୁ ମୁଁ ସହି ବା ଜୟକରି ଆଜି ବି ବଞ୍ଚି ଅଛି । ତେଣୁ ଯାହା କିଛି ଜ୍ୱାଳା ଯନ୍ତଣା ଉତ୍ତାପ ଆଦିବ୍ୟାଧି ମୋର ସହିବାକୁ କଷ୍ଟ ହେବ ନାହିଁ । କିନ୍ତୁ ସୌମେନ ! ଯାର ଜୀବନଟା ତରୁଣ, ନବୀନ ଯାର ପ୍ରାଣ–ଯାର ଆତ୍ମାରେ ବଡ଼ କୋମଳତା । ପୃଥିବୀ ପ୍ରତି ଅନେକ ପ୍ରତ୍ୟାଶା, ଯାର । ଜୀବନକୁ ଅନେକ ଦୁର୍ମର ମାୟାରେ ସେ ଗଭୀରତର ସ୍ୱପ୍ନ ଆଡ଼କୁ ନେଇ ଚାଲିଥିଲା । ମୁଁ ପ୍ରାର୍ଥନା କରୁଥିଲି, ଯାର କଷ୍ଟ ମୋତେ ଦିଅ–ଯାର ଯା କିଛି ସୁଖ ଯାର ହିଁ ହୋଇ ଥାଉ । ଅଥଚ...........

ଛବିର କଥା କହୁଥିଲି । ଏଇ ଛବିଟା ଯେ ସେ ହଠାତ୍ କାହିଁକି ଉଠାଇ-ଥିଲା, ସେତେବେଳେ ଟେର. ପାଇନାହିଁ, ପରେ ଯେମିତି ପାଇଗଲି । ଏହା ଥିଲା ଯାର ଚାଲିଯିବା ସମୟରେ ସାନ୍ତ୍ୱନା ପାଇବାକୁ ଦେଇ ଯାଇଥିବା ଏକ ତାଜା ସ୍ମୃତି । ତାର ବାବା ଏବଂ ସ୍ତ୍ରୀକୁ ସେ ଇଚ୍ଛା କରିହିଁ ଏଇଟି କହି ଯାହା ଦେଇଗଲା । ଯେମିତି କହିଗଲା, ଯାକୁଇ ନେଇ ବଞ୍ଚି ରହ ।

ହଁ, ମୁଁ ବାସ୍ତରି ବର୍ଷର ବୁଢ଼ା ମଣିଷ । ମୁଁ ପାରେ ଖାଲି ସ୍ମୃତିକୁ ନେଇ ବଂଚି ରହିବାକୁ । କିନ୍ତୁ ବୋହୂମା ଗନୁ ? ସେ ପାରେ ନା । ତାର ରକ୍ତମାଂସ ମନର ସବୁ କାମ ଯେ ବର୍ତ୍ତମାନ ଅସମାପ୍ତ ।

ସେ ଚାହେଁ ସୌମେନର ରକ୍ତମାଂସ–ସେ ଚାହେଁ ତାର ପ୍ରତ୍ୟକ୍ଷ ଅସ୍ତିତ୍ୱଟା, ପରୋକ୍ଷ କିଛି ନୁହେଁ । ତେଣୁ ଗନୁର କଷ୍ଟଟା କଣ ତା ମୁଁ ଜାଣେ । ଜାଣେ ସେ ଅକ୍ଷମ ରାଗରେ ଛଟପଟ କରେ । ସେ ତାର ସ୍ୱାମୀକୁ ଅଭିଶାପ ଦିଏ । ମଥାପିଟି ଗାଳି ଦିଏ । ସେ ହୁଏତ ତାକୁ କାପୁରୁଷ ଭବେ । ତଥାପି ଗନୁକୁ ଦୋଷ ଦିଏନା । ସତେ ତ, ଏପରି କଲେ ସୌମେନ ? ତା' ବୋହୂ ତାର ନିଜର ପସନ୍ଦ ଏବଂ ମୁଁ କିଛି ଜାଣିପାରି ନାହିଁ । ପରେ ଜାଣି ବରଂ ଖୁସି ହୋଇଥିଲି । ବୋହୂମାକୁ ସାଦରେ ସାଇ ଦେଇଥିଲି । .........ଆଉ ଯା ପରେ ଯଦି ରାନୁ ରାଗବଶରେ କାହା ସଙ୍ଗରେ......

ସେଟା ଅସମ୍ଭବ ଲାଗେ । ଆଜିକାଲି ଝିଅମାନଙ୍କ ଭିତରେ ରକ୍ତମାଂସ-ଇଚ୍ଛାଟା ତୀବ୍ର ହୋଇ ଉଠୁଥିବା ମୁଁ ଲକ୍ଷ୍ୟ କରିଛି । ଏଇ ଯେ କଣ କହନ୍ତି, ସେକ୍ସ–ଯୌନତା, ଜାଣି ବା ନ ଜାଣି ସେମାନେ ତାର ଶିକାର ହୋଇ ଉଠିଛନ୍ତି–ଆଧୁନିକତା ମାନେ କୁଆଡ଼େ ଖୋଳପା ଛାଡ଼ି ବାହାରି ଆସିବା ସଭ୍ୟତା କ୍ରମଶ ସେମାନଙ୍କୁ ଶିଖାଉଛି ନୂଆ ନୂଆ ନିୟମକାନୁନ ଏବଂ ଯୌନତାକୁ ମୁକ୍ତ କରିଦେବା ସଙ୍ଗରେ ନା କଣ ମଣିଷର ଆତ୍ମିକ ମୁକ୍ତିର ବ୍ୟାପାରଟା ଜଡ଼ିତ ହୋଇ ରହିଚି । .........ଯାହାହେଉ, ରାନୁ

ବୋହ୍ମା ଭିତରେ ଏ ଝୁଁକଟା ସଂକ୍ରାମିତ ନୁହେଁ ସମ୍ଭବତ । ତା'ଛଡ଼ା ତାର ବଂଶ, ଶିକ୍ଷାଦୀକ୍ଷା, ବ୍ୟକ୍ତିତ୍ୱ—ମୋର ଭରସା ରଖିବା ପକ୍ଷରେ ଯଥେଷ୍ଟ । ତେବେ ତା' ଭିତରେ ଗୋଟାଏ ପ୍ରତିକ୍ରିୟା ଦେଖାଦେବା ତ ସ୍ୱାଭାବିକ । ମୁଁ ନିହାତି ସେ କାଳର ଗୃହସ୍ଥ ନୁହେଁ ଯେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ମୁଣ୍ଡପାତ କରିବି । ସୌମେନ ଯଦି ସତରେ ମରି ଯାଇଥାଏ, ତାହେଲେ ସଙ୍ଗେ ସଙ୍ଗେ ରାନୁର ବାପା ଯାହା କହନ୍ତୁ, ଫେର୍ ତାକୁ ବାହା ଦେବାକୁ ଚେଷ୍ଟା ମୁଁ ନିଶ୍ଚୟଇ କରିବି । ଅବଶ୍ୟ ରାନୁର ମତାମତ ଉପରେ ନିର୍ଭର କରିବ ସେଟା !

ଆରେ ସତ କଥା ତ ! କଣ ଘଟୁଛି ! ମୋ ଛାତି ଧଡ଼ାସ କରି ଉଠିଲା । ପାଦ ଦିଇଟା ଅସମ୍ଭବ ଭାରି ଲାଗିଲା । କମ୍ପ ଆସିଲା ! ସୌମେନ ମୋର ଏକମାତ୍ର ସନ୍ତାନ ସୌମେନ ! ମୁଁ କଣ ତାହେଲେ ଇଚ୍ଛାର ଅଜାଣତରେ ତାର ମୃତ୍ୟୁ କାମନା କରେଁ ? ନା, ନା, ସେ ଯେଉଁଠି ଥାଉ, ବଂଚି ଥାଉ । ସେ ଯାହା ଖୁସି କରୁ, ମୋର କୌଣସି ଆପତ୍ତି ନାହିଁ—ଖାଲି ବଂଚି ଥାଉ । ଆଜି ଅବଧି କେତେ ବିଜ୍ଞାପନ ଦେଲି କାଗଜରେ, ଛବି ଛାପିଲି, ଥାନାରେ ଥାନାରେ ଜଣାଇ ଦିଆଗଲା, ଅସନାକ୍ତକୃତ ସବୁ ଲାସ୍‌ର ଖାଲି ଛବି ନୁହଁ—ପ୍ରତ୍ୟକ୍ଷ ଯାଇଁ ଦେଖି ଆସିଲି । କେତେଥର କେତେ ଲୋକଙ୍କ ଲାସ୍‌ରେ ସୌମେନକୁ ଭୁଲ ଦେଖିଲି । କିଛିଦିନ ତଳେ ନ'ଟା ଲାସ ମଧ୍ୟରେ ଗୋଟାକରେ ତାକୁ ଖୋଜି ପାଇବା ପର ମୁହୂର୍ତ୍ତରେ ଆଉ ଜଣେ ଦାବୀଦାର ଆସି କହିଲେ, ସେ ତାଙ୍କ ମୃଗାଙ୍କ ! ଅନେକ ଝାମେଲା, ପରୀକ୍ଷା ବିତର୍କ —ହାଲ୍ ଛାଡ଼ି ଘୁଂଚି ଆସିଲି—ହଁ, ସେ ମୃଗାଙ୍କହିଁ : ସୌମେନ ନୁହେଁ ।

ତେଣୁ ମନେହୁଏ, ସେ ପୁଲିଶ ଭୟରେ କିଂବା କୌଣସି କାରଣରୁ ଆତ୍ମଗୋପନ କରିଛି । ସେ ଖୁବ୍ ଶୀଘ୍ର ଆସି ଦେଖା ଦେଇ ଯିବ ତାର ବାବା ଆଉ ସ୍ତ୍ରୀକୁ । ସେ ଆସିବଇ ; କାରଣ ତା ପରି ପିଲା ପକ୍ଷରେ ଗୋଟାଏ କୈଫିୟତ ଦେଇଯିବା ଜରୁରୀ । ହୁଏତ ଚିଠି ଦେବାରେ ଅସୁବିଧା ଅଛି କିଂବା ଚିଠିରେ ସବୁ କୁହାଯାଇ ପାରିବ ନାହିଁ - ସେଟା ବିପଜ୍ଜନକ ବି ହୋଇପାରେ । ହୁଏତ ଚୁପ୍‌ଚୁପ୍ ଆସି କଡ଼ା ହଲାଇବ, ଯେତେବେଳେ ହଠାତ୍ ଏମିତି ଇଲେକ୍‌ଟ୍ରିସିଟି ଫେଲ, ଅଂଧାର ରାତି, ମଧ୍ୟରାତ୍ରି ନିର୍ଜନ ପଥ ଘାଟ, ବୃଷ୍ଟି ଝଡ଼ ବତାସ ବୋହୁଛି—ଭିଜା ପୋଷାକରେ ସେ ଚୁପ ଚୁପ୍ ଉଠି ଆସିବ ତେତାଲାକୁ । ସେ ଲକ୍ଷ୍ୟ କରିବ, ଏ ଘରର ସବୁ ଫ୍ଲ୍ୟାଟ୍‌ରେ ତାଲାପଡ଼ିବି—ସମସ୍ତେ ହିଁ ପଡ଼ା ଛାଡ଼ି ପଳାଇ ଯାଇଛନ୍ତି କି ଚମତ୍କାର ନିର୍ଜନତା ସେ ପାଇଯିବ ।...........

ହଁ, ସେଇଥିପାଇଁ ତ ଦରଓ୍ୱାନକୁ କହି ରଖିଛି ଘରର ଦରଜାଟା ଦିନରାତି

ଯେପରି ଖୋଲା ରଖେ । ଲୋକଟା ଭୀରୁ କିନ୍ତୁ ହୃଦୟବାନ୍ । ହୃଦୟବତ୍ତା ତାକୁ ସିଡ଼ି ଦରଜାଟା ଖୋଲି ରଖିବାକୁ ବାଧ୍ୟ କରେ-କେବଳ ଭୀରୁତା ଗେଟ୍‌ର ସଦରକବାଟ ବନ୍ଦ କରି ଦେବାକୁ ହୁକୁମ ଦିଏ । ଏବଂ ଗୋଟାଏ ଝରକ ଖୋଲି ମୁଁ ଅନାଇ ରହିଥାଏ ରସ୍ତା ଆଡ଼କୁ-ସାଗ ଗତି-ସାଗତା ଗତି । ମୋତେ ନିଦ ଲଗେ ନାଇଁ । କାରଣ ଶୋଇ ପଡ଼ିଲେ ସେ ଯଦି ବା ଆସେ-ମୋ ମୁହଁା ମୁହିଁ ଛିଡ଼ା ହେବାକୁ ଲଜ୍ଜା ପାଇବ । (ପିଲଦିନ ସୌମେନ୍ ବଡ଼ ଅକାରଣରେ କେତେ ନା ଭୟ କରୁଥିଲ ମୋତେ) ଗନ୍ଟୁ ଦରଜା ଖୋଲିଦେବ–ଗନ୍ଟୁ ଘରକୁ ଗ୍ଲଲିଯିବ ସେ ଏବଂ...

ଗନ୍ଟୁ ଗ୍ଲଲିଗଲ କେତେବେଳେ ? କଣ ସବୁ ହଉଚି କହୁଥିଲ ନା ? ସତେ ତ ! ଇଲକାର ସମ୍ଭବତ କୌଣସି ପ୍ରଧାନ ବିଦ୍ୟୁତ୍ ସରବରହ କେନ୍ଦ୍ରଟାକୁ ଜଖମ କରି ଦେଇ କିଏ ସବୁ କଣ କରୁଛନ୍ତି ଯେ ! ବାରବାର ବିସ୍ଫୋରଣର ଶବ୍ଦ ହେଉଛି । କାହା ସଙ୍ଗେ କାହାର ମରମରି ଗ୍ଲଲିଛି କିଏ ଜାଣେ ! ମୁଁ କୌଣସି ଖବର ରଖେନା । ଖବର ନରଖିବାଟାଇ ମୋର କାଳ ହୋଇଚି ହୁଏତ ମୋ ପୁଅର ଖବର ତ ମୁଁ ରଖୁ ନଥିଲି, ରଖିନି, ତେଣୁ ଏ ଯଂନ୍ତ୍ରଣା ସହିବାକୁ ହେଲ । ମୋତେ ପୁଣି ଝରକା ପାଖକୁ ଯିବାକୁ ହେବ । ଗନ୍ଟୁ ଆସି ମୋତେ ଘୁଂଗ୍ରଇ ଦେଇଛି ମୋ ଜାଗାରୁ । ଆରେ ବାଃ ଆଲୁଅ ଜଳି ଉଠିଲ । ଏତେବେଳେ ଯଦ ସୌମେନ୍ ରାସ୍ତାରେ ଆସିଥାଏ ମୁଁ ନିର୍ଘାତ ତାକୁ ମିସ୍ କରିଚି । ତାହେଲେ ସେ ଏତେବେଳକୁ ସିଡ଼ି ପାହାଚରେ-ଚୁପ୍ ଚୁପ ଉଠିଛି-କଡ଼ା ହଲଇବ ଧୀରେ, ଗ୍ରପାରେ, ହୁଏତ ଡାକିବ-ରାନୁର ନାମ ଧରିହିଁ ଡାକିବ । ଡାକୁ, ମଁ ସବୁ ଟେର ପାଇଯିବି ।

## 3

### ରାନ ଦତ୍ତଗୁପ୍ତ

ଗୋଟାଏ ରାତି ବି ତ୍ରାହି ପାଏନା ଏମାନଙ୍କ ପାଖରୁ । ଏଇ ପୁଣି ଆରଂଭ ହେଲ ତାଂଡବ । ହୁଏତ ଆଜି ସାରା ରାତି ଧରି ଏହା ଗ୍ଲଲିବ । ବାରବାର ନିଦ ଭାଂଗିଯିବ । ଚାଗ ହେଉ ହେଉ ଚାଗ ହେଉ ହେଉ କ୍ଲାନ୍ତ ହେବି ଏବଂ କ୍ଲାନ୍ତ ହେଉ ହେଉ କ୍ଲାନ୍ତ ହେଉ ହେଉ ଦୁର୍ବଳ ହେବି । କାନ୍ଦ ମାଡ଼ିବ । କିନ୍ତୁ ଆଜି ସବୁ କାନ୍ଦ ଯେ ନିଜ ପାଖରେ ଲଜ୍ଜ୍ୟା । ଆତ୍ମଧିକ୍କାର ଏବଂ ଗ୍ଲାନିର ବ୍ୟାପାର । ନିଜର ଅସହାୟତା ଯେତେବେଳେ ପୂରାପୂରି ଧରା ପଡ଼ିଯାଏ ସେତେବେଳେ ମଣିଷ ଅନ୍ଧା ହୋଇଯାଏ । ମୋର ଅନ୍ଧା ହେବାର କଥା । କିନ୍ତୁ ପାରୁ ନାଇଁ । ଏମାନେ କିଏ ମୁଁ ସ୍ପଷ୍ଟ ବୁଝି ପାରୁ ନାଇଁ । ଖାଲି ମନେ ହୁଏ ଏମାନଙ୍କ ମଧ୍ୟରେ ଗୋଟାଏ ଭୟଙ୍କର ହ୍ୱାକାର

ପ୍ରବାହ ଅଛି ଏବଂ ସେ ପ୍ରବାହ ହଠାତ୍‌—ହଠାତ୍‌ ଚରମତାରେ ଫାଟି ପଡ଼େ କାହା କାହା ଉପରେ । ତାଙ୍କୁ ଗ୍ରାସ୍ କରି ନିଏ । ମୋର ସ୍ୱାମୀଙ୍କୁ ଗ୍ରାସ କରି ନେଇଛି । ଆଉ ଏଇଠିଇ ମୋର ସାନ୍ତ୍ୱନା ଯେତେ ରାଗ ସେତେ, ସାନ୍ତ୍ୱନା କାରଣ ମୋରି ପରି ଆଉ କେତେ ଝିଅଙ୍କ ସ୍ୱାମୀ, ବାବା ବା ସନ୍ତାନ ଏମିତି ଭବେ ତା ମହଁରେ ପଡ଼ିଛି, ରାଗ କାରଣ, ଆମେ କିଛି କରିପାରୁ ନା । କେତେ ମାସ ତଳେ ଏଡ଼େ ବଡ଼ କାରଖାନାଟା ବନ୍ଦ ହୋଇ ଯାଇ ମୋ ସ୍ୱାମୀର ଚାକିରୀ ଗଲା । ଘରଭଡ଼ା ବାକି ପଡ଼ିବାକୁ ଲଗିଲା । ସଂସାରେ ଟଣାଟଣି ହେଲା । ମୋର ଭେଗୀ ପ୍ରକୃତିର ଶ୍ୱଶୁର ସଂଚୟରେ ପଟ ନଥିଲେ । ତାଙ୍କ ପେନସନ୍ ଟଂକାରେ ହୁଏତ ଚଳି ଯାଉଛି କିନ୍ତୁ ଭଏ କ'ଣ ମଣିଷର ବଂଚି ରହିବା ? ମୋର କଷ୍ଟ ହୁଏ । ଭିତରଟା ଛଟପଟ କରେ । ବାହାରକୁ ବାହାରି କିଛି ଗୋଟାଏ ଯୋଗାଡ଼ କରି ନେବାକୁ ଇଚ୍ଛା ହୁଏ । କିନ୍ତୁ ଶ୍ୱଶୁର ମହାଶୟ ପଣି ବଡ଼ ରକ୍ଷଣଶୀଳ ଆଉ ସଂକୀର୍ଣ୍ଣମନା । ହୁଏତ ପ୍ରଚଣ୍ଡ ରକମର ଭୀରୁ ମଧ୍ୟ । ସ୍ୱାମୀ ପାଇଁ ଅନେକ ଛୁଟାଛୁଟି କରିବି ଭବିଥିଲି, ହୁଏତ ଠିକ୍ ତାଙ୍କ ସଂଧାନ ପାଇ ଯାଇଥାନ୍ତି—କିନ୍ତୁ ଶ୍ୱଶୁର ମହାଶୟ ମୋତେ କୁଆଡ଼ିକି ଏକା ଯିବାକୁ ଦେବେ ନାହିଁ ! ମଝିରେ ମଝିରେ ମନେ ହୁଏ ଏଟା ଗୋଟାଏ ବନ୍ଦୀତ୍ୱ । ଗୋଟାଏ ପଂଜୁରିରେ ଅଟକି ଯାଇଚି ନିଜର ଅଜାଣତରେ ଆଉ ଏଇ ସ୍ୱାର୍ଥପର ବୁଢାଟା ମୋତେ ତାର ଶୂନ୍ୟ ସିନ୍ଦୁକ ଉପରେ ଯଖ ବସାଇ ରଖିଛି ।

ନା'ବ ଆଉ ପାରୁ ନାହିଁ । ଅସହ୍ୟ ଲଗୁଛି । ଏଥର ମୁଁ ପଳାଇବି ନା ପଳାଇବି । କାହିଁକି ଆଉ ଏଠି ରହିବି କ୍ଷଣେ ? ଏଇ ଶୂନ୍ୟତା ଆଉ ମିଥ୍ୟା ପ୍ରତୀକ୍ଷା ଏଇ ଏକଘେଇଁଆ ଦିନଗତି...ଓ...ତା' ଛଡ଼ା' ଘର ଛାଡ଼ି ସବୁ ଭଡ଼ାଟିଆ ପରିବାର ଗୁଡ଼ିକ ପଳାଇ ଗଲେ ଗୋଟିକ ପରେ ଗୋଟିଏ । ପଡ଼ାଟା ପ୍ରାୟ ଖାଲି ହୋଇ ଯାଇଛି । ଖାଲି ପଡ଼ି ରହିଛନ୍ତି କିଛି ବୁଢାବୁଢୀ ଆଉ କିଛି କଚ୍ଚାବଚ୍ଚା ! ମଝିରେ ମଝିରେ ଖାଲି ଏଇ ବୋମା ଫୁଟାର ଆଓୟାଜ ଆଉ ଗୁଳିର ଶବ୍ଦ, ଅସ୍ପଷ୍ଟ ଦି ଗୁରିବାର ଗର୍ଜନ ବା ଆର୍ତ୍ତନାଦ ଛଡ଼ା ବିକଟ ସ୍ତବ୍ଧତା ସବୁ ସମୟରେ ସ୍ଥିର ହୋଇ ରହିଛି । ମଝିରେ ମଝିରେ କିଏ ବା କେଉଁମାନେ ସାଁତ୍‌ସାଁତ୍ କରି ଗ୍ଲଳି ଯାନ୍ତି ରାସ୍ତାରେ । ଆଉ କୌଣସି ଲୋକ ନାହିଁ । ଏଇ ନିଝୁମ ଯକ୍ଷପରୀ ମଧ୍ୟରେ ମୋର ବାଇଶ ବର୍ଷର ତାଜା ପ୍ରାଣଟା ଶେଷ ହୋଇ ଯାଉଛି । ମୁଁ ରହିବି ନାହିଁ—ପଳାଇବି ।

---

୧ । ଯଖ = ଯକ୍ଷ, ଧନପତି ।

କିଂତୁ ଯିବି କୁଆଡେ ? ବାବା–ମା ମୋ ଉପରେ ଭିତରେ ଭିତରେ ଚଟି ରହିଛନ୍ତି । ସେମାନଙ୍କର ମନୋନୀତ ପାତ୍ରକୁ ମୁଁ ଅପମାନ କରିଥିଲି । ସେମାନଙ୍କର ଇଛା ବିରୁଦ୍ଧରେ ମୁଁ ଚୁପ ଚୁପ ବାହା କରି ପକାଇଲି । ରେଜିଷ୍ଟ୍ରି ପରେ ସବୁ ଜଣାଇ ଦେଲି ଦୁଇ ପକ୍ଷକୁ । ଆମ ଘରେ ବେଶ୍ କିଛିଦିନ ଭୂମିକଂପ ଓ ଅଗ୍ନ୍ୟୁତ୍ପାତ ଘଟିଗଲା । ମୋ ସ୍ୱାମୀଙ୍କ ଘରେ ଅବଶ୍ୟ ସେମିତି କିଛି ଘଟିଲା ନାହିଁ । ଘଟିଥାନ୍ତା ଯଦି ମୋ ଶାଶୂ ବଂଚିଥାନ୍ତେ । ସ୍ତ୍ରୀଲୋକମାନଙ୍କର ବଡ଼ ଶତ୍ରୁ ସ୍ତ୍ରୀ ଲୋକମାନେଇ । ମୋର ମା'ହିଁ ମୋର ବଡ଼ ଶତ୍ରୁ ମୁଁ ଜାଣେ । ତେଣୁ ଏ ଘରକୁ ଯିବା କଥା ଆଉ ଉଠେନା । ଶତ୍ରୁ ହସିବେ । ଆଉ କେଉଁଠାକୁ ଯିବି ତା ହେଲେ ? ମୁଁ ଖୋଜି ମନେ ମନେ ଭାବେ । ଭାବି ଭାବି ଦିନଗତି କଟିଯାଏ । ତଥାପି ମୁଁ ପଳାଇବି ହିଁ ପଳାଇବି । ଆଃ ମୋ ଭିତରଟା ଶୁଖି ଯାଉଛି ଦିନକୁ ଦିନ । ଆଉ କିଛି ଦିନ ରହିଲେ ମୁଁ ମରିଯିବି । ନା ନା ମୁଁ ବଂଚି ରହିବାକୁ ଚାହେଁ ।

ଯିବା ଆଗରୁ ସେ କୌଣସି କଥା କହି ଯାଇ ନାହାନ୍ତି । ହଠାତ୍ ଉପରବେଳା ବାହାରିଗଲେ ଚା ଖାଇ । କେମିତି ଗମ୍ ହୋଇ ରହିଥିଲେ ସାରଟା ଦିନ । ଇଦାନୀଂ ଖୁବ୍ ସହଜରେ ଯେ ବିରକ୍ତ ହୋଇ ଉଠୁଥିଲେ । ଆଉ କୌଣସି ପ୍ରଶ୍ନ କରୁ ନଥିଲି ତାଙ୍କୁ । କିମିତି ବଦ୍‌ରାଗୀ ଓ ବଦ୍‌ମିଂଜାସୀ ହୋଇ ପଡିଥିଲେ ଇଏ । ଭାବିଥିଲି ଚାକିରୀ ବାକିରି ବ୍ୟାପାରରେ ଇଏ ଉଦ୍‌ବିଗ୍ନ । ଖୁବ୍ କମ କଥା କହୁଥିଲେ । ଚୁପଚାପ ବାହାରି ଯାଉଥିଲେ ଘରୁ । ଫେରିବାର କିଛି ଠିକ ନ ଥିଲା । ଶ୍ୱଶୁର ମହାଶୟ ବ୍ୟସ୍ତ ହୋଇ ଉଠୁଥିଲେ । ଫେରି ଆସି ତାଙ୍କୁ କିଛି କୈଫିୟତ ଦିଅନ୍ତି । ମୋତେ ଦିଅନ୍ତି ନାହିଁ । ତାର ଦରକାର ବି ନଥିଲା । ରାତିରେ ତାଙ୍କ ସ୍ପର୍ଶ ପାଇବାକୁ ଚାହୁଁଥିଲି । ମୋର ରକ୍ତମାଂସ ଚଂଚଳ ହୋଇ ଉଠୁଥିଲା ଅଭ୍ୟାସରେ । ଯେ ଆସ୍ତେ ଠେଲି ପାଖ ବୁଲାଇ କହନ୍ତି ଗରମ ବଡ଼୍‌ଡ଼–ଟିକିଏ ଘୁଂଚି ଶୁଅ ଗନୁ ।

ମୋତେ କାଂନ୍ଦ ମାଡ଼େ । ତେବେ କଣ ମୋ ଉପରେ ଯେ କୌଣସି କାରଣରୁ ରାଗ କରିଛନ୍ତି ? ମିଥ୍ୟା ସଂଦେହ ? ଅବିଶ୍ୱାସ କିଛି ? କିଏ କଣ ଯାଙ୍କ କାନ ଭରୀ କରିଚି ? କିନ୍ତୁ ଈଶ୍ୱର ଜାଣନ୍ତି ମନରେ ନ ହେଉ–ଦେହରେ ତ ମୁଁ ନିଷ୍ପାପ । ମୁଁ କାଂଦେ ଚୁପ୍ ଚୁପ୍ ।

ଆଶ୍ଚର୍ଯ୍ୟ, ଯେ ଠିକ୍ ଟେର୍ ପାଇଯାନ୍ତି । ହଠାତ୍ ଧରି ଦିହାତ ଜଡ଼ାଇ ଚୁମା [redacted]ନ୍ତି ଆଉ କହନ୍ତି, ନା ଗନୁ ନା । ତମ ଉପରେ ମୋର କୌଣସି ରାଗ ନାଇ ।

କାହାରି ଉପରେ ନାହିଁ । ମୋର ସବୁ ରାଗ ଦୁଃଖ ମୋ ନିଜ ଉପରେ । ନିଜକୁ ମୁଁ ଆଉ କହି ପାରୁ ନାହିଁ ତୁମେ ବିଶ୍ୱାସ କର—ମୋର ବଡ଼ ଜ୍ୱାଳା ଗନୁ ଅସଂଭବ ଜ୍ୱାଳା ।

ମୁଁ ନାରୀର ସ୍ୱାଭାବିକ ପ୍ରେରଣାଦାତ୍ରୀ ଭୂମିକାରେ କହେ, ତମର ସବୁ ଜ୍ୱାଳା ମୋତେ ଦିଅ ।

ପାଗଳ । .........କହି ସେ ଚୁପ୍‌କରି ଯାନ୍ତି । ସେଙ୍କର ଜଡ଼େଇ ଧର ବାହୁ ଦିଟା ଶିଥିଳ ହୋଇ ଆସେ । ତା'ପରେ ସେ ଚିତ୍ ହୋଇ ଶୋଇ ରହନ୍ତି ।

ଜାଣେ ସେ ଶୁହିଁ ରହିଛନ୍ତି । କିଛି ଭାବୁଛନ୍ତି । କହେ କଣ ହୋଇଚି କହିବ ନାହିଁ ଲକ୍ଷ୍ମୀଟି । ତମ ଗୋଡ଼ ତଳେ ପଡ଼ୁଚି ମୋତେ କହ ।

ସେ କିଛି ଜବାବ ଦଅନ୍ତି ନାହିଁ । କେବେ କେବେ ବା କହନ୍ତି, କିଛି ନାହିଁ ।

ଭାବେ ସେଙ୍କର କେତେ କଷ୍ଟ ସବୁଟାଇ ନିଜକ ଟଙ୍କା ପଇସା ସଂକ୍ରାନ୍ତ । ବେକାରମାନଙ୍କର ବୋଧେ ଏମିତି ସବୁ ହୁଏ । କହେ, ଭାବନା, ଗୋଟାଏ କିଛି ପାଇଯିବ ନିଶ୍ଚୟ ।

ଶୁଳିଯିବା ଆଗ ରାତିରେ-ଯେମିତି ଘୁମଘୋରରେ କେତେଥର ଗୋଟାଏ କଥା ଉଚ୍ଚାରଣ କରିଥିଲେ । ମୁଁ ସେତେବେଳକୁ ଶୋଇ ନଥିଲି । କଥାଟା ଶୁଣି ସଙ୍ଗେ ସଙ୍ଗେ ଚମକି ଉଠିଥିଲି । ଏକ ଝଲକ ରକ୍ତ ଛଲକ୍ କରି ଉଠିଥିଲା ହୃତ୍‌ପିଣ୍ଡରେ । କଣ କହୁଚି ଇଏ ?

ଟ୍ରେଟର.........ମୁଁ ଟ୍ରେଟର.........ଟ୍ରେଟର.........ଓଃ ମୁଁ ଟ୍ରେଟର.........

କଣ ଯେମିତି ବୁଝିଲି.........ଆଉ ବୁଝିଲି ନାହିଁ । ସେଙ୍କର ରହସ୍ୟମୟ କଳା ପର୍ଦ୍ଦାଟା ହଠାତ୍ ଯେମିତି କିଏ ଫାଙ୍କ କରିଦେଲା । ଅଥବା ସବୁ ମୋର ଭୁଲ୍ ଧାରଣା, ଭୁଲ ଶୁଣା । ମୋର ରକ୍ତ ତଥାପି ଏତେ ହିମ ହୋଇଗଲା । ଭିରୁ ଭରି ହେଲ, କ୍ରମେ ମଥା ଭିତରଟା ଚକଫ ହେବାକୁ ଲାଗିଲା । ନିଃସାଡ଼ ପଡ଼ି ରହିଲି ।

କଥାଟା ଆଜି ବି ଶ୍ୱଶୁର ମହାଶୟଙ୍କୁ କହିନାହିଁ । କହିବା ସଙ୍ଗତ ମନେ କରିନାହିଁ । ମୁଁ ଜାଣେ, କଣ ଘଟିଛି । ମିଥ୍ୟା ସଙ୍ଖା ସିନ୍ଦୁର ଆଉ ସଧବାର ବେଶ ମୋର ମିଥ୍ୟା ବୋହୂ ସାଜି ରହିବା ଅନ୍ୟର ସଂସାରରେ । ସେଙ୍କର ଆଉ ଫେରା ହେବ ନାହିଁ ।

ତଥାପି ରକ୍ତ ଭିତରେ ପ୍ରତୀକ୍ଷାର କଂଟା ଖଚମଚ କରି ଉଠେ । ସିଡ଼ିର

ବିଶାଳ ଖୋଲରେ ଘୂରିବୁଲେ ହାଓୟା । ଉଚ ଉଠେ । କଡ଼ା ହଲଇବା ପରି ଲଗେ । ଧଡ଼ପଡ଼ କରି ଉଠି ବସେ । ଛୁଟିଯାଏ ଦରଜା ଆଡ଼କୁ । ଦରଜା ଖୋଲିବାକୁ ଯାଇ ଠିକ୍ କରିନିଏ, ଠିକ କଣ କହିବି ! ତାପରେ ଖୋଲେ । ଦରଛାଇରେ ହଳଦିଆ କେତୁଟା ରେଖା ଥରି ଥରି ମିଳାଇ ଯାଆନ୍ତି । ନିଛକ ଶୂନ୍ୟତାର କମ୍ପନ ଭିତରେ ମିଳାଇଯାଏ ଗୋଟାଏ ପ୍ରତିଭାସ । ଆଉ ପଛରେ ଦୌଡ଼ି ଆସନ୍ତି ଶ୍ୱଶୁର ମହାଶୟ । ଅସ୍ଫୁଟ କଣ୍ଠରେ ରୁଦ୍ଧଶ୍ୱାସରେ କହନ୍ତି, ଆସିଲ ? ସମୁ ଆସିଲ ? ସମୁନା ? କିଏ ? ବୋହୂମା ଓ ବୋହୂମା । କଥା କହୁନାହଁ କାହିଁକି ?

ମୁଁ କଣ କହିବି ? ଖାଲି କହେ ପବନ ଏବଂ ଘୃଣ୍ଣ ଆସେ । ପଛକୁ ଫେରିଲେଇ ବସିବା ଘରେ ଖାଲି ଏଇ ଛବିଟା ଆଖିରେ ପଡ଼େ । ରାଗ କ୍ଷୋଭ ଦୁଃଖରେ ସେଟାକୁ ଭାଙ୍ଗି ପକାଇବାକୁ ଇଚ୍ଛା କରେ, ଟ୍ରେଟର ! ବିଶ୍ୱାସହନ୍ତା ! .........

## 4

## ଦୀପକ ମିତ୍ର

ଯିଏ ଦରଜା ଖୋଲିଲେ ତାଙ୍କୁ ମୁଁ ଚିହ୍ନେନା । କିନ୍ତୁ ତାଙ୍କ ଶରୀରର ପାଖ ଦେଇ ଘର ଭିତରେ ଉଚା ଟୁଲରେ ରଖା ମସ୍ତ ଛବିଟା କାହାର ମୁଁ ଜାଣେ । ତାକୁ ଭଲ ଭାବେ ଚିହ୍ନେ । ମୁହୂର୍ତ୍ତରେ ମଥା ଭିତରେ ନିଆଁ ଦପ୍ କରି ଜଳି ଉଠିଲ । କାନ ଦେଇ ଗରମ ଗ୍ୟାସ୍ ବାହାରି ଗଲ । ଆଖି ଦିଇଟା ଫୁଲି ଉଠିଲ । ସୌମେନ ! ଏଇ ସୌମେନର ଘର ! ଏବଂ ଅବଶେଷରେ ଏଇଠି ମୁଁ ଆସି ପହଞ୍ଚି ଯାଇଛି !

ମୋର ଚମକଟା ଏହି ମହିଳାଙ୍କ ଆଖିରେ ପଡ଼ିଲ କି ନାଇଁ ମୁଁ ଜାଣେ ନା । କିନ୍ତୁ ସେ ବି ମୋତେ ଦେଖି ଚମକି ଉଠିଥିଲେ । କମ୍ପିତ ଗଳାରେ—ପାଦେ ପଛକୁ ହଟିଯାଇ କହିଲେ, କା—କାହାକୁ ଖୋଜି ?

ନିଜକୁ ସମ୍ଭାଳି ନେଇଥିଲି । ଥଣ୍ଡା ସ୍ୱରରେ କହିଲି, ଆଜି ରାତିଟା ପାଇଁ ଏଇଠି ରହିବି । ପାଟିତୁଣ୍ଡ କରିବେ ନାଇଁ । କିଛି ଲାଭ ହେବନାଇଁ । କୌଣସି କ୍ଷତି କରିବି ନାଇଁ ଆପଣମାନଙ୍କର । ଖାଲି ଏଇ ରାତିଟା.........

ଆଶ୍ଚର୍ଯ୍ୟ, ବୁଲି ପଛେଇ ଗଲେ ମହିଳାଟି । ମୁଁ ସଙ୍ଗେ ସଙ୍ଗେ ଦରଜା ବନ୍ଦ କରିଦେଲି । ଆଗେଇ ଯାଇ ଝପ୍‌କରି ବସି ପଡ଼ିଲି । କହିଲି ଏକ ଗ୍ଲାସ ପାଣି ଦିଅନ୍ତୁ । ଫ୍ରେସ୍ ପାଣି । ଏତେ ରାତିରେ ଖାଇବା ପାଇଁ ଉତ୍ୟକ୍ତ କରିବି ନାଇଁ । ଗୋଟାଏ ମସିଣା ଥିଲେ ଦେବେ । ଏଇଠି ହିଁ ଶୋଇବି ।

କୌଣସି କଥା କହିଲେ ନାଇଁ ସିଏ । ସୌମେନର ବୋହୂ ? ତାହେଲେ

ବର୍ତ୍ତମାନ ବି ସାଧବାର ବେଶ କାହିଁକି ? ତାହେଲେ କଣ ଏମାନେ ଏବେ ସୁଦ୍ଧା ଖବରଟା ପାଇ ନାହାନ୍ତି ?

ପକେଟରେ ହାତ ରଖିଥିଲି–କାଳେ ଗୋଳମାଳ କଲେ ଏଇଟା ବାହାର କରି ଭୟ ଦେଖାଇ ଦେବାକୁ ହେବ । ଦରକାର ହେବ ନାଇଁ । ହାତ ବାହାର କରି ନେଲି । ଘର ଭିତରଟାକୁ ଲକ୍ଷ୍ୟ କରିଥିଲି ; ନିପାଟରେ ଦିଟା ଘର । ମଇଳା ଛିଣ୍ଡା ପରଦା ଦରଜାରେ । ଆସବାବ ପତ୍ର ସେମିତି କିଛି ନାହିଁ ଏ ଘରେ । ଗୋଟାଏ ର୍ୟାକ୍‌ରେ କିଛି ବହି । ଗୋଟାଏ ଟେବୁଲ, ଦୁଇଟା ଚେଆର । କାନ୍ଥରେ କ୍ୟାଲେଣ୍ଡାର । ଆଉ ଟୁଲ ଉପରେ ସୌମେନ୍‌ର ଛବିଟା । ଛବିଟା ଆଡ଼କୁ ଚାହିଁବାକୁ ଭୟ ହେଉଛି । ମନେ ହେଉଥିଲା; ଏବେ ବି ସୌମେନ୍ କହୁଚି, ତୋ ଚେହେରାରେ କୌଣସି ଖୁଣାର ଅଭାସ ନାହିଁ । ତୋତେ ଭୟ କରେନା ଦୀପୁ । ........

ଖୁବ୍ ଶୀଘ୍ର ପାଣି ଆସିଗଲା । ତାଙ୍କ ଆଡ଼କୁ ନ ଚାହିଁ ଢକ୍ ଢକ୍ କରି ପାଣି ପିଇନେଲି । ତାପରେ ଗ୍ଲାସଟାକୁ ରଖିବାକୁ ଯାଉଥିଲି ତଳେ, ସିଏ ହାତ ବଢ଼ାଇ ସେଟାକୁ ନେଇ ଚାଲି ଯାଉଥିଲେ । ମୁଁ ଡାକିଲି, ଶୁଣନ୍ତୁ ।

ନିଃଶବ୍ଦରେ ଘୁରି ଛିଡ଼ା ହେଲେ ।

ଘରେ ଆଉ ସବୁ କିଏ ଅଛନ୍ତି ?

ମୁଁ ଆଉ ବାବା ।

ଏଇ ଛବି ଯାର–ସେ କେଉଁଠି ?

ଜାଣେନା ।

ଆପଣ କିଏ ?

ଘରର ବୋହୂ ।

ଏଇ ଛବିଟା ତାହେଲେ ଆପଣଙ୍କ ସ୍ୱାମୀର ?

ହୁଁ ।

ଟିକିଏ ଚୁପ ରହିଲି ।

ସୌମେନର ବୋହୂ କହିଲା ଆଉ କିଛି ଜାଣିବାକୁ ଚାହାନ୍ତି ?

ହଁ, ବାବା ଯାହାକୁ କହିଲେ, ସେ ଆପଣଙ୍କ ଶଶୁର ମହାଶୟ ନିଶ୍ଚୟ ।

ହୁଁ ।

ଆପଣଙ୍କ ସ୍ୱାମୀ ନାହାଁ କାହିଁକି ?

ଜାଣେନା । ...........ଆପଣଙ୍କୁ ବିଛଣା ଆଣି ଦିଏଁ ।

ଚାଲି ଯାଉଥିଲା ସୌମେନର ସ୍ତ୍ରୀ । ଠିକ୍ ସେତିକିବେଳେ ପାଖ ଘରର ପର୍ଦା

ଟେକି ଆଚମକା ସେଇ ବୁଢ଼ା ଗରିଲଟା ଆସି ପହଞ୍ଚିଗଲା । ......କିଏ, ଆସିଛି ? ସମୁ ? କିଏ......କିଏ ତୁମେ ? କିଏ ଆପଣ ? କଥା କହୁନାହାନ୍ତି କାହିଁକି ? ବୋହୂମା, କିଏ......ଇଏ ?

ସୌମେନର ବୋହୂ କହିଲା, ଆଃ ଚୁପ୍ କରନ୍ତୁ ବାବା ! ଇଏ ଆପଣଙ୍କ ପୁଅର ବନ୍ଧୁ ଯାଙ୍କ ଖବର ଆଣିଛନ୍ତି ।

ମୁଁ ଚମକି ଉଠିଲି । ହୃତ୍‌ପିଣ୍ଡ ଧକ୍‌ଧକ୍ କରିବାକୁ ଲାଗିଲା । ଇଏ କଣ ସବୁ ଜାଣିଶୁଣି କହୁଛନ୍ତି ନା ନିର୍ବୋଧ ଶ୍ୱଶୁରକୁ ଉତ୍ୟକ୍ତ କରିବାକୁ ଚାହୁଁନାହାନ୍ତି ? ତାଙ୍କ ଆଡ଼କୁ ଚାହିଁଲି । କି ନିଷ୍ପଲକ ଚାହାଣୀ, କି ଉଜ୍ଜ୍ୱଳତା । ଆଉ ଓଠ କୋଣରେ ଏଇ ଚୁପ୍‌ଚାପ ହସର ରେଖାଟା ବା କାହିଁକି ? ମୋର ରିଭଲଭରଟା ହୁଏତ ପକେଟ ଭିତରେ କଳଙ୍କି ଧରି ଶ୍ୟାମ ହୋଇଗଲାଣି । ନଷ୍ଟ ଟ୍ରିଗାର ତାର । ଶେଷ ଗୁଳିଟା ଭିଜା ।

ଚାପା ଗଳାରେ ବୁଢ଼ା ଲୋକଟି ଝୁଙ୍କି ପଡ଼ିଲା, ସମୁ କେମିତି ଅଛି ବାବା ? କେଉଁଠି ଅଛି ସେ ? କଣ କରୁଚି ? ଏକାବେଳେକେ ପିଲା ମଣିଷ ବଗବର-ଭୟ ପାଇବାର କଣ ଥିଲା ଏତେଟା ? ମୁଁ ପୁଲିଶର ବଡ଼ କର୍ତ୍ତାଙ୍କ ପାଖକୁ ଯାଇଥାନ୍ତି-ମୁଁ ରିଟାୟାର୍ଡ ଗଭର୍ଣ୍ଣମେଣ୍ଟ ଅଫିସର-

ବାଧା ଦେଇ କହିଲି, ଯାର ଭୟ ପୁଲିଶକୁ ନୁହେଁ । ଆପଣଙ୍କ ପୁଅ ଥିଲା ଟ୍ରେଟର-ବିଶ୍ୱାସଘାତକତାହିଁ........

ଖବର୍ଦ୍ଦାର ! ବୁଢ଼ା ଗରିଲଟା ଗର୍ଜି ଉଠିଲା ।

ମୁଁ ହସିଲି । ......ଆପଣଙ୍କ ବୋହୂମାଙ୍କୁ ପଚାରନ୍ତୁ ।

ସୌମେନର ବୋହୂ ମୋତେ ଅବାକ୍ କରିଦେଇ କହିଲା, ହଁ ବାବା । ଇଏ ଠିକ୍ ଇ କହିଛନ୍ତି ।

ଅସମ୍ଭବ ! ଏ ଲୋକଟା ମିଥ୍ୟାବାଦୀ......ବୁଢ଼ା ପାଟିତୁଣ୍ଡ କରିବାକୁ ଲାଗିଲା । ......ମିଛୁଆ, ବଦମାସ୍, ଜୁଆଚ୍ଚୋର ସବୁ । ମୁଁ କାହାକୁ ହେଲେ ବିଶ୍ୱାସ କରେ ନା । ସମସ୍ତେ ଟ୍ରେଟର......ସମସ୍ତେ ବିଶ୍ୱାସଘାତକ ।

ସୌମେନର ବୋହୂ ଆଗେଇ ଆସି କହିଲା, ଆଃ, କଣ ହେଉଚି ବାବା, ଚୁପ୍ କରନ୍ତୁ ।

ବୁଢ଼ା ଆଙ୍ଗୁଠି ଦେଇ ଦରଜା ଦେଖାଇ ଦେଇ କହିଲା, ଏକ୍ଷଣି ବାହାରି ଯାନ୍ତୁ ଆପଣ । କିଏ କହିଥିଲା, ଏ ମିଥ୍ୟା ଖବର ଦେବାକୁ ? ଚାଲିଯାନ୍ତୁ କହୁଚି ।

ମୋର ସମ୍ଭ ବିଶ୍ୱାସଘାତକ ?

ଏଥର ପକେଟରୁ ଅସ୍ତ୍ରଟା କାଢ଼ି ଛିଡ଼ାହେଲି । ......ବେଶୀ ପାଟିତୁଣ୍ଡ କରିବେ ନାହିଁ । ଯାନ୍ତୁ, ନିଜ ଘରକୁ ଚାଲିଯାନ୍ତୁ । ଉତ୍ୟକ୍ତ କଲେ ପ୍ରାଣଟା ହରାଇବେ, କହି ଦେଉଛି । ......ଦେଖନ୍ତୁ ଆପଣଙ୍କ ଶଶୁରଙ୍କୁ ନେଇ ଯାଆନ୍ତୁ ତ ସେ ଘରକୁ । ମୋ ମୁଣ୍ଡରେ କିଛି ଠିକ୍ ନାହିଁ । ଏ ଓଲଡ଼ ଫୁଲ୍ ! ଚୁପ ! ଡୋଣ୍ଟ ସାଉଟ୍ !

ବୁଢ଼ା କେତଟା ମୁହୂର୍ତ୍ତ ମୋ ଅସ୍ତ୍ରଟା ଆଡ଼କୁ ଚାହିଁ ଦିହାତରେ ମୁହଁ ଢାଙ୍କିଲେ । କାନ୍ଦି ପକାଇଲେ । ବସି ପଡ଼ିଲେ । ଜଡ଼ିତ ସ୍ୱରରେ କହିଲେ, ମାର, ମୋତେ ବରଂ ମାରିଦିଅ । ସମ୍ଭର କଣ ହୋଇଛି ଏଥର ବେଶ୍ ବୁଝି ପାରିଛି । ମୋର ବଞ୍ଚି ରହି କିଛି ଲାଭ ନାହିଁ ।

ସୌମେନର ବୋହୂ ଶଶୁରଙ୍କୁ ସମ୍ଭାଳୁ ଥିଲା । ଏଥର ଅଦ୍ଭୁତ ହସିଲା ସିଏ । ......କଣ ହେଲା ? ପାରିବେ ନାହିଁ ? ଗୁଳି ନାହିଁ ଆଉ ? ନା କଣ ଖେଳନାର ଜିନିଷ ? ଅସଲ କଥା ବୁଝି ପାରିଛି । ଆପଣ ଆଉ ଖୋଳପା ଛାଡ଼ି, ବାହାରି ପାରୁ ନାହାନ୍ତି । ବଡ଼ା ଖାଇ ଖାଇ କ୍ଲାନ୍ତ ହୋଇ ପଡ଼ିଛନ୍ତି, ନୁହେଁ ତ କଣ ?

ରାଗରେ ମୋ ମୁଣ୍ଡ ଠିକ୍ ନଥିଲା । କହିଲି, ସୌମେନ ପରି ପୁଅର ଜନ୍ମ ଯିଏ ଦେଇଚି ମୋର ଘୃଣା ତାରି ଉପରେ ହିଁ ବେଶୀ । କିନ୍ତୁ ଆଜି ମୁଁ କ୍ଲାନ୍ତ—ଖାଲି ଟିକିଏ ଆଶ୍ରୟ ଏବଂ ନିଦ ବଦଳରେ ମୁଁ ସବୁ କିଛି ଦେଇପାରେ ।

ବୁଢ଼ାଙ୍କୁ ଟାଣି ସେ ପାଖ ଘରକୁ ନେଇଗଲେ ଏବଂ ତାପରେ ଫେରି ଆସିଲେ । ନିଜ ଘରକୁ ଗଲେ । ବିଛଣା ନେଇ ଆସିଲେ । ଚଟାଣରେ ପରିପାଟୀ କରି ବିଛେଇ ଦେଇଗଲେ । କହିଲେ, ଶୋଇ ପଡ଼ନ୍ତୁ । ମୋତେ ବି ବଡ଼ ନିଦ ମାଡ଼ୁଚି ଆଜି । ଆଉ .....

ବିଛଣାରେ ପଡ଼ି ପଡ଼ି କହିଲି, ରହିଗଲେ କିଆଁ ? ଆଉ......

ଆପଣଙ୍କୁ ଧନ୍ୟବାଦ । ......କହି ଦ୍ରୁତ ନିଜ ଘରକୁ ଚାଲିଗଲେ ସୌମେନର ସ୍ତ୍ରୀ ।

ମୋତେ ନିଦ ହେଲା ନାହିଁ । ହେଲା ନାହିଁ । ଏଇ ଛବିଟା ! ସୌମେନ ! ଖାଲ ଧାରରେ ତାର ଶ୍ୱାସନଳୀଟା ମୁଁଇ କାଟି ଦେଇଥିଲି । ଲାସଟାକୁ ପୋଡ଼ି ଦେଇଥିଲି । ଏବଂ ଅସ୍ପଷ୍ଟ ଶବ୍ଦରୁ ଅନୁମାନ କରୁଚି ଏ ଘରେ କଣ ଘଟୁଛି । ମୋର ଟିକିଏ କାମ ବାକୀ ଥିଲା ତାହା ନିଷ୍ପନ୍ନ ହେଉଚି ଚୁପଚାପରେ । ସୌମେନର ବୋହୂ

ଶଂଖା ଭାଙ୍ଗୁଛି । ସିନ୍ଦୂର ଲିଭଉଛି । ବାକ୍ସରୁ ସୌମେନର ଧୋତୀ ବାହାର କରି ଦିଆଯାଉଛି । ତାପରେ ଫୁଲି ଫୁଲି କାନ୍ଦୁଛି । ତାର କାନ୍ଦଣାର ଶବ୍ଦ ବଢୁଛି । ଧୂପର ଧୂଆଁ ପରି, କୁହୁଡି ପରି, ସର୍ବଗ୍ରାସୀ ସଂଚରଣଶୀଳ ସେଇ ବିଳାପ ଆସ୍ତେ ଦରଜାର ଫାଟ ଦେଇ ଆଗେଇ ଆସିଲା, ଆହୁରି ଆଗେଇ ଆସିଲା ।

କେତେ କ୍ଷଣ ମୁଁ କାନ ଚାପି ପଡ଼ି ରହିଲି । ତଥାପି ମନେହେଲା, ଏଇ ଶୋକାକୁଳ ପୃଥିବୀରୁ କୌଣସି ପ୍ରକାର ପଳାଇ ଯାଇ ହେଉନାହିଁ । ଆଉ ଏହି ମହାକାୟ ଅଜଗର ସାପଟା ପରସ୍ତକୁ ପରସ୍ତ ଜଡ଼େଇ ଯାଇ ଶ୍ୱାସରୁଦ୍ଧ କରି ମାରୁଛି । ଟିକିଏ ବତାସ ଚାହିଁ, ଟିକିଏ ମାତ୍ର ବତାସ !

ତା'ପରେ ଘେର ଆଗରୁ ଟିକିଏ ଘୁମର ଆମେଜ ଆସିଲା । ସ୍ୱପ୍ନ ଦେଖିଲି ହଜାର ହଜାର ସୌମେନର ଛବି ପଡ଼ିଯାଉଛି ଚାରି ପାଖରେ । ଢାଙ୍କି ଦେଉଛି ପୃଥିବୀକୁ । ପଡ଼ନ୍ତ ତାସ ପରି ସ୍ତୂପାକାର ବିଶୃଙ୍ଖଳ ସୌମେନମାନଙ୍କ ମଧ୍ୟରେ ଆଉ ମୋର ବାଟ ଖୋଜି ପାଇବାର କୌଣସି ସଂଭାବନା ହିଁ ନାହିଁ ।........

# ଶେଷ ଅପରାହ୍ନର ଦୁଇଟି ମୁହଁ

ମତ୍ତ ନନ୍ଦୀ

ହାଓଡ଼ା ଷ୍ଟେସନର ବିରାଟ ଟିଣ ଛାତ ତଳେ ଛିଡ଼ା ହୋଇ ଦୁଇ ଭଉଣୀ ବାରବାର ଚାରିଆଡ଼କୁ ଚାହିଁଲେ । ପ୍ରତ୍ୟେକ ମଣିଷର ମୁହଁକୁ ଲକ୍ଷ୍ୟ କରିବାକୁ ଚେଷ୍ଟା କଲେ । କେହି ସେମିତି ସେମାନଙ୍କ ଆଡ଼କୁ ଚାହୁଁ ନାହାନ୍ତି । ସମସ୍ତେ ବ୍ୟସ୍ତ, ସମସ୍ତଙ୍କର କିଛି ନା କିଛି କାମ ଅଛି । ସେମାନଙ୍କର ବି ଅଛି ।

ଏମାନେ ଷ୍ଟେସନର ଟିଣ ଛାତ ତଳେ ଅନବରତ ଶବ୍ଦ ଓ ବ୍ୟସ୍ତତା ମଧ୍ୟରେ ଛିଡ଼ାହୋଇ ଅବାକ୍ ହୋଇ ଯାଉଛନ୍ତି । ସମଗ୍ର ଷ୍ଟେସନ ଭରି କିଏ ଯେପରି କଥା କହୁଛି । ଦି ଭଉଣୀ ମୁହଁ ଚାହାଁ ଚାହିଁ ହେଲେ । ହଠାତ କଥା ବନ୍ଦ ହେଲା । ଛୋଟ ଭଉଣୀ ଆଂଗୁଠି ଦେଖାଇ କହିଲା, "ଏଇ ଯେ" ଦିଜଣଯାକ ଚାହିଁଲେ ସଗ୍‌ପ୍ୟାନ୍ ପରି ଲାଉଡ୍‌ଷ୍ପୀକର ଆଡ଼କୁ ।

ସାନ ଭଉଣୀ ଗଳା ଖଙ୍କାରି କହିଲା, "ଏଇଲାଗେ କଣ କରିବା ?"

ବଡ଼ ଭଉଣୀ ଇଆଡ଼େ ଅନାଇବାର ବାହାନା କରି ସବୁ କିଛି ଦେଖିନେଲା ଥରେ । କାନ୍ଧରେ ଠେଲିଦେଇ ଦାଦା ବାଳରେ ଆଙ୍ଗୁଠି ଚଳାଉଛି ।

ବଡ଼ ଭଉଣୀ କହିଲା, "ଚାଲ ସେଇଆଡ଼େ ।"

ଏମାନେ ଘମାଘୋଟ ଭିଡ଼ ମଧ୍ୟ ଦେଇ ଉତ୍ତର ଆଡ଼କୁ ଆଗେଇଲେ । ଟିକଟ୍ ଘର ଖପୁରି ଆଗରେ ମଣିଷଙ୍କ ଧାଡ଼ି, ତା ପାଖ କଟାଇ ଢଳାଇ ଚଟାଣରେ ମଣିଷମାନେ ବସିଛନ୍ତି, ଶୋଇଛନ୍ତି, ସେମାନଙ୍କ ପାଖ କଟାଇ ଊର୍ଦ୍ଧ୍ୱଶ୍ୱାସରେ ଛୁଟି ଚାଲିଛି ମଣିଷ, ସେମାନଙ୍କ ପାଖ କଟାଇ ଦୁଇ ଭଉଣୀ ତୃତୀୟ ଶ୍ରେଣୀର ବିଶ୍ରାମ ଘରକୁ ଆସିଲେ । ଗୋଟାଏ ବେଞ୍ଚର କଣ ଘଷି ଦୁଇଜଣଯାକ ବସିଲେ । ଝରକା ଦେଇ ରାସ୍ତା ଦେଖାଯାଏ । ଧାଡ଼ି ହୋଇ ବସ ଛିଡ଼ାହୋଇଛି । ଘର ଭିତରେ ଫିକା ଧୂଆଁ । ଅସନା ଗନ୍ଧ । ପାଣି କଲ । ଟିକଟ ପାଇଁ କୁଲିମାନଙ୍କ ଧାଡି । ଆଉ ଅପେକ୍ଷାରତ ଦୂରର ଯାତ୍ରୀ ।

"ଦିଦି, ପାଣି ପିଇବି ।"

"ପିଇ ଆ" ।

ସାନ ଭଉଣୀ ଆଡ଼କୁ ନଜର ରଖିଲା । ଝୁଙ୍କି କଲ ଟିପି ପାଣି ପିଉଚି । ବଡ଼ ଭଉଣୀ ଅସ୍ୱସ୍ତିବୋଧ କଲା । ସାନ ଭଉଣୀର କାମୀଟା ପଞ୍ଜର ପାଖକୁ ଉଠି ଯାଇଛି । ଘଣ୍ଟି ହାତରେ ଛିଡ଼ା ହୋଇଥିବା ଲୋକଟା ଏକ ଦୃଷ୍ଟିରେ କଣ ଦେଖୁଛି ।

"ତୋଫାନ ଏକ୍ସପ୍ରେସ୍ ଆଜି ଲେଟ ।"

ମୁହଁ ଫେରଇଲା ବଡ଼ ଭଉଣୀ । "ତା ପାଖରେ ବସିଥିବା ମହିଳାଟି କଥା କହିଲେ, "କେତେ ସମୟ ଯେ ବସି ରହିବାକୁ ହେବ ।"

"କେହି ବୋଧହୁଏ ଆସିବେ ।"

ସେ ହସିଲେ । ହସି ହସି ସାରା ଘରରେ ଆଖି ବୁଲାଇ କହିଲେ, "ଚିଠି ପାଇଛି ଗତକାଲି ପହଂଚିବେ । ଆସି ଘରିଗଲି. ଆସି ବାହାନ୍ତି ।"

ବଡ଼ ଭଉଣୀ ଉଠି ଠିଆହେଲା । ସାନ ଭଉଣୀକୁ ସେ ଦେଖୁନାଇଁ ।

"ଯିବେ କୁଆଡ଼େ ? ନା କାହାପାଇଁ ଆସିଛନ୍ତି ?"

"ନା, ତା ଆମେ ଯିବୁଁ ବୋଲିହିଁ ଆସିଛୁଁ ।"

ବଡ଼ ଭଉଣୀ କଥା ବଢ଼ାଇଲା ନାହିଁ । ଷ୍ଟେସନର ବିରାଟ ଘଣ୍ଟାଟା ତଳେ ମଣିଷ ଆଉ ଶବ୍ଦଙ୍କ ଭିତରେ ଆସି ଛିଡ଼ାହେଲା । ଛିଡ଼ାହୋଇ ସାନ ଭଉଣୀକୁ ଖୋଜିଲା । ପାଦେ ପାଦେ ଆଗେଇ ଷ୍ଟେସନର ବହୁ ସଦର ଗେଟ୍‌ଗୁଡ଼ିକର ଗୋଟିକରେ ପହଂଚିଲା । ଏଠାରୁ ହାଓଡ଼ା ବ୍ରିଜ୍ ଦେଖାଯାଏ । ଏଇ ବ୍ରିଜ୍‌ଟା ପାରହେଲେ କଲିକତା । କଲିକତାର ଗୋଟାଏ ଗଳିରେ ସେମାନଙ୍କର ଘର । ସେଇଘରେ ଏକତାଲାର ଏକ ଘରେ ମା, ବାପା, ଭାଇ ଓ ଭଉଣୀ ସଙ୍ଗରେ ସେ ରହେ । ଶୀତ ଦିନରେ ଶୀତ ଆଉ ଖରା ଦିନେ ଗରମ ସେମାନଙ୍କ ଘରେ ନିପଟି ବସି ରହେ । ଯେତେ ଦକ୍ଷିଣା ପବନ ସବୁ ଛାତ ଉପର ଦେଇ ଚାଲିଯାଏ । ହାଓୟା ଯାଏ, ମେଘ ଯାଏ, ଖରା ଯାଏ, ଆଉ ଅପରାହ୍ନ ଯାଏ । ରାଧୋଇ ଆଉ ଉପରବେଳା ଛାତ ଉପରକୁ ଉଠାଯିବନାଇଁ ।

ନାକରେ ଲୁଣିଆ ଗନ୍ଧ ଲାଗିଲା । ଏଠି ଯେମିତି ଗୋଟାଏ ଗନ୍ଧ । ବାବାଙ୍କୁ ଶ୍ମଶାନ ନେଇଯିବା ସମୟରେ ଦାଦା ଏକ ଶିଶି ଆଣିଥିଲା ଅନେକଟା ସେଇ ରକମ । ଖାଲି ଶିଶିଟା ସାନଭଉଣୀ ରଖି ଦେଇଥିଲା । କୁଆଡ଼େ ଗଲା ସାନଭଉଣୀ ?

× × ×

"ଦିଲ୍ଲୀ ଦେଖ ଆଗ୍ରା ଦେଖ" କହନ୍ତା ଆଉ ହ୍ୟାଣ୍ଡେଲ ଘୁରନ୍ତା—କୁତବମିନାର, ତାଜମହଲର ଛବି, ଗୋଟିଏ ପରେ ଗୋଟିଏ ଘୁରି ଚାଲିଯାନ୍ତା । ଲୋକଟା ଏକଘେଇଁଆ ସ୍ୱରରେ ଚିତ୍କାର କରେ ଆଉ ହ୍ୟାଣ୍ଡଲ୍‌ଟାକୁ ଟିକିଏ ଆସ୍ତେ ଘୁରାଇବାକୁ କହିଲେ ନାକ ଟାଣିଲା ପରି ମୁହଁ କରି ହସେ । ଷ୍ଟେସନରେ ଝୁଲୁଥିବା ଛବିଗୁଡ଼ାକ ଦେଖି ସାନଭଉଣୀର ସେଇ ଲୋକଟା କଥା ମନେପଡ଼ିଲା । ଦିନେ ତାକୁ ପଚାରିଥିଲା ଦିଲ୍ଲୀ ଆଗ୍ରା ସେ କେବେ ଦେଖିଚି କି ନାଇଁ । ଲୋକଟା କଥାର ଜବାବ ନ ଦେଇ ବାକସର ଫୋକଡରେ ଆଖି ଲଗାଇଥିବା ମଣ୍ଡାଗୁଡ଼ିକୁ ମାଛି ପରି ତଡ଼ିବାରେ ଲାଗିଯାଏ । ସେଇ ଲୋକଟାକୁ ସାନଭଉଣୀର ବର୍ତ୍ତମାନ ମନେପଡ଼ିଲା । ଅନେକ ଦିନ ପରେ ପଡ଼ାରେ ଏକ ନୂଆ ବାୟୋସ୍କୋପ, ମଧ୍ୟ ଆସିଲା । ସେଇ ଲୋକଟା କାହିଁକି ଆସେନା ଏକଥା ସାନଭଉଣୀ ବହୁଦିନ ବହୁ ରାତିରେ ଭାବିଛି । ଭାବିଲେଇ କୁତବମିନାର ତାଜମହଲ, ଉଡ଼ାଜାହାଜ ଆଉ ଜଟାୟୁର ଯୁଦ୍ଧ ଆଖି ଆଗରେ ଧାଡ଼ି ଧାଡ଼ି ହୋଇ ଭାସିଯାଏ । ବିଜ୍ଞାପନର ଛବି ଦେଖୁ ଦେଖୁ ସେ ଏକବାରେ ବିହ୍ୱଳରେ ଘଣ୍ଟି ହୋଇ ଯାଇଥିଲା ବୋହୂଟିର । ନଜର ପଡ଼ିବାରୁ ବୁଝିଲା ତା ଆଡ଼କୁ ଅନାଇ । ଛବିରେ ଇଂରାଜୀ ଅକ୍ଷର ଲେଖା । ଗୁଣୁଗୁଣୁ କରି ସେ ଅକ୍ଷର ପଢେ । ଆଡଆଖିରେ ବୋହୂଟି ଆଡ଼କୁ ଅନାଏ । ଯା ଶାଢ଼ୀରୁ ମିଠା ଗନ୍ଧଟା ଆସୁଚି । ଆସ୍ତେ ଆସ୍ତେ ଲମ୍ବା ଶ୍ୱାସ ଟାଣିଲା ସାନଭଉଣୀ । ଚକୋଲେଟ ମୋଡ଼ା କାଗଜରେ ଏମିତି ଗନ୍ଧ ଥାଏ ।

"ମୋତେ ଏତେ ସୁନ୍ଦର ନୁହେଁ ।"

ଛୋଟ ଭଉଣୀ ବେକ ଟେକିଲା । ବୋହୂଟି ଛବିଆଡ଼କୁ ଅନାଇ ରହିଛି ।

"ଗଲା ପୂଜାଛୁଟିରେ ଆମେ ଯାଇଥିଲୁଁ ।

ବାଃ ବାଃ ! ଯାତାୟତର କି କଷ୍ଟ ; ଆଉ ହୋଟେଲର କି ଚଢ଼ା ରେଟ୍ !"

ସାନଭଉଣୀର ଇଚ୍ଛା ମିଠା ଗନ୍ଧଟାକୁ ଶୋଷି ନେଇ ଜମା କରି ରଖେ ବୁକୁ ଭିତରେ । କହିଲା, ସୁନ୍ଦର ନୁହିଁ କହିଲେ ଯେ, ଏଠି କଣ ଏମିତି—"

ମୋତେ ନୁହେଁ । ଏସବୁ ବନ ପ୍ରାନ୍ତରର ଛବି । ସେଠିକି ଯାଏ କିଏ ? ତା ଅପେକ୍ଷା ବରଂ ଏଇ ଛବିଟା, କୋଣାରକର ଛବିଟା, ସେଠି ସତରେ ଦେଖିବାର ଜିନିଷ ଅଛି ।"

'ଆପଣ ଯାଇଛନ୍ତି ?',

"ମୋ ନଣନ୍ଦ ଯାଇଥିଲେ ।"

"ବର୍ତ୍ତମାନ କେଉଁଠିକି ଯାଉଛନ୍ତି ?"

"ରାଣୀଗଞ୍ଜ ।"

"କାହା ପାଖକୁ ଯାଉଛନ୍ତି ?"

ଏଥର ବୋହୂଟି ହସିଲା । ଛବିରେ ଯେମିତି ସୁନ୍ଦର କରି ହସନ୍ତି । ତାପରେ କଣ ଗୋଟାଏ କହିବାକୁ ଯାଇ ନ କହି ମୁଣ୍ଡ ହସିଲା! ତାହା ଦେଖି ଛୋଟ ଭଉଣୀ ବି ହସିଲା ।

ସାମନା ବର୍ଷ ଇଏ ଛୁଟି ପାଇଲେ କାଶ୍ମୀର ବୁଲିବୁଁ ଆମେ ।"

ଦିଦି, ଟ୍ରେନ୍ ସାତ ନମ୍ବରରୁ ଛାଡ଼ିବ । ଜଲଦି ଜଲଦି ।"

ଦୌଡ଼ି ଦୌଡ଼ି ଆସି ହାଫପ୍ୟାଣ୍ଟ ପିନ୍ଧା ପିଲାଟା ସୁଟ୍‌କେଶଟା ଉଠାଇ ନେଲା । ବେତ ଝୁଡ଼ିଟ୍ରା ହାତରେ ଝୁଲାଇ ବୋହୂଟି କହିଲା, ଅଚ୍ଛା ଚାଲିଲି ।

ଏମାନେ ଚାଲି ଯାଉଛନ୍ତି । ସାନଭଉଣୀ ପାଦେ ପାଦେ ଆଗେଇ, କୋଲାପ୍‌ସିବଲ୍ ରେଲିଙ୍ଗରେ ହାତ ରଖି ସାତ ନମ୍ବର ପ୍ଲାଟଫର୍ମରେ ଛିଡ଼ା ହୋଇଥିବା ଟ୍ରେନ୍‌ଟା ଆଡ଼କୁ ଅନାଇ ରହିଲା ।

× × ×

ଏତେ ଶବ୍ଦ ତଥାପି କିଛି ଶୁଣି ପାରୁ ନାହିଁ । ଖୁଣ୍ଟରେ ଦିହ ଘଷି ଲୁହାପଗି ସେ ଠିଆ । ମଥାରେ ଲାଲ ଟୋପି, ଖାକି ପୋଷାକର ଲୋକଟା ଇଆଡ଼କୁ ସିଆଡ଼କୁ ଅନାଇ ତାରି ଆଡ଼କୁ ହିଁ ଆସୁଛି । ବଡ଼ ଭଉଣୀ ବର୍ତ୍ତମାନ କିଛି ଶୁଣିପାରୁ ନାହିଁ । ଲୋକଟା ଚାଲିଗଲା ପାଖ ଦେଇ । ଯିବାବେଳେ ଥରେ ଚାହିଁଥିଲା । ବଡ଼ ଭଉଣୀ ଭାବିଲା ବିଶ୍ରାମ ଘରେ ଯାଇ ଅପେକ୍ଷା କରିବା ଭଲ । ହୁଏତ ସାନଭଉଣୀ ବର୍ତ୍ତମାନ ଆସି ସେଠି ବସିଥିବ ।

ବେଂଚ୍ ଭର୍ତ୍ତି । ବଡ଼ ଭଉଣୀ କାନ୍ଥକୁ ଘଷି ଛିଡ଼ାହେଲା । ସେଇ ମହିଳାଟି କୁଆଡ଼ୁ ଘୁରି ଆସିଲେ । ବସିବାର ଜାଗା ନ ପାଇ ତା'ପାଖକୁ ଆସି କହିଲେ, "ନା ଏବେ ସୁଦ୍ଧା ଆସି ନାହିଁ ।"

ଆସୁଛନ୍ତି କିଏ ?"

ନିହାତି ଗୋଟାଏ କଥା କହିବାକୁ ହେବ, ତେଣୁ ପଚରା ପଗ୍ଭରି ଅନାଇ ରହିଲା । ଅଉ ଚହି ରହି ସେ ଦେଖି ପାରିଲା ଏତେ ବଡ଼ ଆଖି ଦିଇଟା ଯାହା ଦୁଇଟା ମୁହଁର ଆୟତନକୁ ମନାଏ, କେମିତି ତାଙ୍କ ମୁହଁକୁ ମନାଇଗଲା । ଚିବୁକ ତଳେ ବୟସର ଭଂଗ କର୍ମିଲା ।

"କିଏ ଆଉ, କେହି ନୁହେଁ ।"

ଅନ୍ୟସ୍ୱରରେ ବାରମ୍ବାର ସେଇ କଥାଟା । ଜ୍ଞାନ କରି ଉଠିଲା ମଥା

ଭିତରଟା । ଆସିବା ବେଳେ ମାଉସୀ ଦିଇଟା ଟଙ୍କାଦେଇ କହିଥିଲେ, "ଏତେ ଘନ ଘନ ଆସିଲେ ମୁଁ ବା ପାରିବି କିମିତି ?" ଘରେ ହେତେବେଳେ ପାଖ ଘରର କିଏ ଜଣେ ଥିଲା । ଫେରି ଆସିବା ସମୟରେ ବଡ଼ ଭଉଣୀ ତାଙ୍କୁ କହିବାର ଶୁଣିଥିଲା, "କିଏ ଆଉ କେହି ନୁହେଁ ।"

"ତିରିଶ ଟଙ୍କା ବେଶୀ ପାଇବ ବୋଲି ଦେଢ଼ଶ ମାଇଲ ଦୂରକୁ ଛୁଟିଗଲା । କଣ ଯେ ଦରକାର ଥିଲା ବୁଝେନା । ସ୍କୁଲରୁ ମୁଁ ଯାହା ପାଏ, ଆଉ ସିଏ ଯଦି କିଛି ଗୋଟାଏ ଜୁଟେଇ ଦେଇଥାନ୍ତା, ତାହାଲେ ସାତଟା ଲୋକର ସଂସାର ଖୁବ୍ ଚଳି ଯାଇଥାନ୍ତା ।"

ବଡ ଭଉଣୀ ମୁଣ୍ଡ ହଲାଇଲା ।

"ମୋ କଥା ତ କେବେ ଶୁଣିବେ ନାହିଁ । ଅଜିକୁ ଅଠ ବର୍ଷ ଧରି ଦେଖି ଆସୁଚି । ଅଥଚ ମୋ ଟଙ୍କା ଦାହାଘର ଆଗରୁ ଛୁଇଁବେ ନାହିଁ ।"

"ସିଏ କେଉଁଠି ଚାକିରି କରନ୍ତି ?"

"ଡ଼ି. ଭି. ସି' ରେ" ।

ମୋ ଦାଦା ସେଠି ଚେଷ୍ଟା କରିଥିଲେ, ପାଇଲେ ନାହିଁ ।"

"ସେ କଣ ? ଇଏ ତ କେତେ ଲୋକଙ୍କୁ ଚେଷ୍ଟା କରି ଚାକିରି କରାଇ ଦେଇଛି । ଆଚ୍ଛା ମୁଁ ପଚାରି ବୁଝିବି । ରହିବେ ତ ଏଇଠି ନା, ଟ୍ରେନର ସମୟ ହୋଇ ଗଲାଣି ?"

"ନା ନା ମୋର ଟ୍ରେନ୍‌ର ସମୟ ହୋଇନି ମୁଁ ଯିବି ନାହିଁ ।"

"ମୁଁ ଆଉଥରେ ବରଂ ଦେଖା ଆସେ ।"

ମହିଳାଟି ଚାଲିଯାଉଛନ୍ତି । କେତେ ପାଦ ଗଲା ସିଏ । ମହିଳାଟି ଏତେ ମଣିଷଙ୍କ ଭିତରେ କୁଆଡ଼େ ଅଦୃଶ୍ୟ ହୋଇ ଯାଇଛନ୍ତି । ବଡ ଭଉଣୀ ପଛେଇ ଆସିଲା । ଷ୍ଟେସନ ଫାଟକ ପାଖରେ ଆସି ଛିଡ଼ା ହେଲା ଉପରବେଳାଟା ଶେଷ ହୋଇ ଆସୁଚି । ଷ୍ଟାଣ୍ଡରେ ବସ୍ ମଧ୍ୟରେ ଅଫିସ ଫେରନ୍ତା ମଣିଷମାନେ ଝରକା ଦେଇ ବାହାରକୁ ଅନାଉଛନ୍ତି । ମସିଆଁଲଗା ଫଳୁଆ ପରି ସେମାନଙ୍କର ମୁହଁ । ଖରାର ଆଞ୍ଚ ଲାଗୁଛି ହାଓଡ଼ା ବ୍ରିଜ୍‌ରେ । ଷ୍ଟିମର ଗମ୍ଭୀର ଭେଁ ବଜାଇଲା । କୁଜାପିଠିଆ ଠେଲାଓ୍ୱାଲା ହଲି ହଲି ଉଠାଣି ଉପରକୁ ଉଠୁଛି । ବସ୍‌ରୁ ଓହ୍ଲାଇ ଡ୍ରାଇଭର ଆସ୍ତେ ଆସ୍ତେ ଆକାଶକୁ ବିଡ଼ିର ଧୂଆଁ ଛାଡ଼ିବାକୁ ଲାଗିଲା । ଉପରବେଳା ଶେଷ ହୋଇ ଆସୁଚି । ଲିଲୁଆରେ ସରକାରୀ ଆଶ୍ରମ ଅଛି ଝିଅମାନଙ୍କର । ପଳାଇବାକୁ ଯାଇ ଧରା ପଡ଼ିଲେ ପୁଲିଶ ପ୍ରଥମେ ସେଠି ନେଇ ରଖେ ।' କହିବୁ

ଏଇଠି ରହିବୁ । ଆମର ଘର ନାହିଁ, କେହି ନାହିଁ । ପାରିବୁ କହି ? ” କହୁ କହୁ ବାବାର ମୁହଁଟା ଏଇ ଅପରାହ୍ଣ ପରି ହୋଇ ଯାଇଥିଲା ।

ବଡ଼ ଭଉଣୀ ପୁଣି ଷ୍ଟେସନର ଘ୍ଲଲ ତଳକୁ ଫେରି ଆସିଲା ।

କୋଲପସିବଲ୍ ରେଲିଂ ଧରି ସାନ ଭଉଣୀ ଦେଖୁଛି ଟ୍ରେନ୍‌ଟା ଘ୍ଲଲି ଯାଉଛି । ଟ୍ରେନ ଝରକାରେ ମୁହଁଗୁଡ଼ାକ ପ୍ଲାଟ୍‌ଫର୍ମ ଆଡ଼କୁ ଘ୍ଲହିଁ ହସୁଛନ୍ତି ହସି ହସି ଘ୍ଲଲି ଯାଉଛନ୍ତି । ଏମିତିକରି ତାର ବି ଘ୍ଲଲିଯିବାକୁ ଇଚ୍ଛା ହୁଏ । ଲାଇନ୍ ଉପରେ ତେରେଛା ହୋଇ ଗୋଟାଏ ବ୍ରିଜ୍ । ପ୍ଲାଟ୍‌ଫର୍ମ ପାଖ ଦେଇ ଉଚ୍ଚା ହୋଇ ବ୍ରିଜଟା ଉଠିଛି । ଥକି ହାତରେ ତିନୋଟି ମଣିଷ ଗଷ୍ଡା ଦେଇ ଘ୍ଲଲିଛନ୍ତି । ସେମାନେ ଯେମିତି ପାହାଡ଼ ଉଠୁଛନ୍ତି । ତା'ପରେ ସେ ଭାବିଲା ବଡ଼ ଭଉଣୀ ଅପେକ୍ଷା କରିଛ ।

ବିଶ୍ରାମଘରେ ବଡ଼ ଭଉଣୀକୁ ନ ଦେଖି ସେ ଘ୍ଲଲ ତଳକୁ ଫେରି ଆସିଲା । ଓଜନ ଯନ୍ତ୍ରରେ ଜଣେ ବୁଢ଼ା ଓଜନ ମାପିଲା । ସେଇଆ ଦେଖିଲା । ବୁଢ଼ା କାର୍ଡ଼ ପଢ଼ି ଦୁମ୍ ଦୁମ୍ କରି ଘ୍ଲଲିଗଲା ।

"ଆଉ ତିନି ମିନିଟ୍ ବାକୀ ଅଥଚ ଏବେ ବି ଆସି ପହଂଚିଲା ନାଇ । କି ଇରେସ୍‌ପନିସ୍‌ବେଲ୍ !

ସାନ ଭଉଣୀ ମୁହଁ ଫେରାଇ ଦେଖିଲା, ଛ ସାତଟି ପୁଅ ଝିଅଙ୍କର ଗୋଟିଏ ଦଳ ।

"ତା ପାଇଁ ଅପେକ୍ଷା କଲେ ଆମେ ଟ୍ରେନ୍ ମିସ୍ କରିବା ।"

"ତା ହେଲେ ?"

ସେମାନେ ନିଜ ଭିତରେ ପରାମର୍ଶ କରି ବ୍ୟସ୍ତ ହୋଇପଡ଼ିଲେ । ଟିକିଏ ପରେଇ ଛୁଟି ଆସିଲା ଚଶମା ପିନ୍ଧା ଗୋଟିଏ ଝିଅ । ଖୁବ୍ ରୋଗା, ଦେଖି ମନେହୁଏ ଯେମିତି କ୍ଲାସ୍ ସେଭେନ୍‌ରେ ପଢେ । ଯାକୁ ଦେଖିହିଁ ସାନ ଭଉଣୀ ବୁଝିଲା ଯାରି କଥାହିଁ ଦଳଟା କହୁଥିଲା ।

"ଏମାନେ ଏଇମାତ୍ର ଘ୍ଲଲିଗଲେ ।"

"ଘ୍ଲଲିଗଲେ ।"

ଝିଅଟି ହାତର ଚମଡ଼ାର ବ୍ୟାଗଟାକୁ ଖୁବ୍ ଜୋରରେ ଘ୍ଲପି ଧରିଲା ।

ଚଶମାଟା ନାକ ଉପରେ ଠିକ୍ କରି ଗୁପି ବସାଇଲା । ତାପରେ ଏମିତି ଭାବରେ ଅନାଇଲା ଯେମିତି କି ପଚାରୁଛି ଏଥର ମୁଁ କଣ କରିବି ।

"ଏକା ଯାଇ ପାରିବେ ନାଇଁ ?"

"ପାରିବି ନାଇଁ କାହିଁକି, କିନ୍ତୁ ଏମାନଙ୍କ ସଙ୍ଗରେ ଥିଲେ ଘର ଚିହ୍ନିବାରେ କୌଣସି ଅସୁବିଧା ହୁଅନ୍ତା ନାଇଁ ।" ଏହା କହି ଝିଅଟି କହି ଉଠିଲା, "ଆରେ !"

ପୁଅଟି ବ୍ୟସ୍ତ ହୋଇ ଆସିଲା । ସେହି ପୁଅଝିଅଙ୍କ ଦଳରେ ସାନ ଭଉଣୀ ଯାକୁ ଦେଖିଥିଲା ।

"ଆପଣ କଣ ଏଇ ଆସୁଛନ୍ତି ?" ପୁଅଟି କହିଲା ।

"ହଁ, ଆପଣ ?"

"ମୁଁ ବି ।"

"ତା ହେଲେ ?" ଟ୍ରେନ୍ ତ ଛାଡ଼ି ଦେଇଛି । ଲିସ୍ ଗୋଟାଏ ପଟୁଆରରେ ଟ୍ରାମଟା ଅଟକି ଏଇ କାଣ୍ଡ ହେଲା ।"

"ଏଇ ପ୍ରଶେଷାନ କେବେ ଯେ ବନ୍ଦ ହେବ । ଆଉ ସେ କଥା । ବର୍ତ୍ତମାନ କଣ କରିବେ ? ଯିବା ତ ହେଲା ନାଇଁ ।"

"ଘରେ କହି ଆସିଚି ଫେରୁ ଫେରୁ ରାତି ଦଶଟା ଏଗାରଟା ହୋଇପାରେ, ବାହାଘରର ବ୍ୟବସ୍ଥା ତ । ଏଇ ଲାଗେ ଫେରିଗଲେ ଘରେ ହସାହସି କରିବେ ।"

"ଚାଲନ୍ତୁ ଟ୍ରେନ୍ ଧରି ବାନ୍‌ଡେଲ ଘୁରି ଆସିବା ।"

"କିନ୍ତୁ ଆଗେ ଟିକିଏ କିଛି ଖାଇନେବା ।"

ଏମାନେ ଦିଜଣ ଚାଲିଗଲେ । ସେଇ ସମୟରେ ଏତେ ବଡ଼ ଷ୍ଟେସନର ସବୁ ଆଲୁଅଗୁଡ଼ାକ ଜଳି ଉଠିଲା । ଗୋଟାଏ ଟ୍ରେନ୍ ଆସୁଚି । ହାଉଯାଉ ହୋଇ ଷ୍ଟେସନରେ ମଣିଷ ଢୁକୁଛନ୍ତି । ଏତେ ମଣିଷ ଦେଖି ସାନ ଭଉଣୀର ଭଇ ଲାଗିଲା ନାଇଁ । ପୁଣି ସେ ବିଶ୍ରାମ ଘରକୁ ଫେରି ଆସିଲା ।

× × ×

ଛୋଟ ଭାଇକୁ ମା ଚଟକଣା ମାରି କହିଥିଲା, "ପୋଡ଼ାମୁହାଁ ଆଉ ଟିକିଏ ଆଗରୁ ଯାଇ ପାରିଲୁ ନାଇଁ ?" କାହାର ବାହାଘର ଭୋଜିକୁ ବିନା ନିମନ୍ତ୍ରଣରେ ପାଇ

ମାଡ଼ ଖାଇ ଆସିଛି । ଦିଦିମାନଙ୍କ ମୁହଁକୁ ଚାହିଁ ସେ ଭେ–ଭେ କରି ଉଠିଥିଲା । ସେତେବେଳେ ଛୋଟ ଭାଇର ମୁହଁଟା କିମିତି ଚେପ୍‌ଟା ଦେଖାଯାଉଥିଲା ।

ଛବିଗୁଡ଼ାକର ଆଉ ଟିକିଏ ପାଖକୁ ବଡ଼ ଭଉଣୀ ଆଗେଇଗଲା । ଯେଉଁମାନେ ରେଲରେ କଟା ପଡ଼ିଛନ୍ତି ସେମାନଙ୍କ ଛବି । କାଚ ଉପରେ ତା ନିଜ ମୁହଁର ଛାୟା ପଡ଼ିଛି । ନିଜ ମୁହଁ ଦେଖିବାକୁ ଟିକିଏ ପଛେଇ ଯାଇ କଣେଇ ଚାହିଁବାରେ ତାର ମନେ ହେଲା, କେଡ଼େ ବିଶ୍ରୀ, କେଡେ ଭୟଙ୍କର ! ଦାଦା ଚିତ୍କାର କରି ଦିନେ କହୁଥିଲା, "ମୁଁ କଣ କରିବି, କଣ କରିବି ? ଚେଷ୍ଟା ତ କରୁଛି ।" ବଡ଼ ଭଉଣୀ ସାରା କାଚଟାରେ ଦାଦାର ମୁହଁ ଦେଖିଲା । ତା'ପରି ମମତାରେ ଦୁଃଖରେ ଟଳମଳ ହୋଇ ଉଠିଲା । ରେଲରେ କଟା ପଡ଼ିଥିବା ଲୋକଙ୍କ ପାଇଁ ଦୁଃଖ ହେଲା ।

ସେଇ ମହିଳାଟିକୁ ଦେଖିପାରିଲା ବଡ଼ ଭଉଣୀ । ପୁରୁଷଟି ହାତରେ ସୁଟ୍‌କେଶ, ବେଡ଼ିଂ, ସେମାନେ କଥା କହୁନାହାନ୍ତି । ବଡ଼ଭଉଣୀ ଛୁଟିଯାଇ ମହିଳାଟିର ହାତ ଧରିଲା ।

ମହିଳା ବେକ ହଲାଇଲେ ।

"ଯାଙ୍କ ଠିକଣାଟା ଦିଅନ୍ତୁ । ଦାଦାଙ୍କୁ ପଠାଇବି ।"

ଏଇକଥା କହି ବଡ଼ ଭଉଣୀ ଅନାଇ ରହିଲା ଆଉ ଦେଖିଲା, ଡିଟା ମୁହଁର ଆୟତନରେ ମନାଏ ଏପରି ଏକଯୋଡ଼ା ଆଖି, ଝୁଲିପଡ଼ା ଚିବୁକ, ଆଉ ଚୁଲୀର ଭଙ୍ଗା ମାଟି ପରି ଓଠ ।

"ସେଠି ଛଟାଇ ନୋଟିଶ ଦିଆ ଯାଇଛି ।"

ମହିଳାଟିର ଚାଲିଯିବା ଦେଖିଲା ବଡ଼ ଭଉଣୀ । କାନ୍ଧରେ କିଏ ଯେମିତି ବେଡ଼ିଂ ସୁଟ୍‌କେଶ ଚପାଇ ଦେଇଛି । ଦେଖୁ ଦେଖୁ ବଡ଼ ଭଉଣୀର ଦିହ ଝିମ୍ ଝିମ୍ କଲା । ଆଖିପତା ଭରୀ ଭରୀ ବୋଧ ହେଲା । କୌଣସି ପ୍ରକାରେ ଘରିଆଡ଼େ ଆଖି ବୁଲାଇ ସେ ଭାବିଲା, ସାନ ଭଉଣୀ ବୋଧହୁଏ ଅପେକ୍ଷା କରୁଛି ।

ବିଶ୍ରାମଘରକୁ ଫେରିଆସି ବଡ଼ ଭଉଣୀ ଦେଖି ପାରିଲା ସାନଭଉଣୀକୁ ।

ଏମାନେ ଦି'ଜଣ ପାଖକୁ ପାଖ ଲାଗି ଚୁପ୍‌କରି ବସି ରହିଲେ । ଥରେ ବଡ଼ ଭଉଣୀ କହିଲା, "ଏଠି ବସି କଣ ହେବ ? ଚାଲ୍ ସେପଟକୁ ଯିବା ।"

ଏମାନେ ଆସ୍ତେ ଚାଲି ଷ୍ଟେସନର ଅନ୍ୟ ଏକ ପ୍ରାନ୍ତରେ ଯାଇ ପହଂଚିଲେ ।

ସାନ ଭଉଣୀ କହିଲା, ଏଇନା ଆମେ କଣ କରିବା ? ’’

ବଡ ଭଉଣୀ ଠିଆହୋଇ ଭାବିଲା । ଭାବି କହିଲା—“ଏଇଠି ଟିକିଏ ଛିଡା ହେବା ।”

ରେଷ୍ଟୁରେଣ୍ଟର ଦରଜା ଖୋଲି ହଳେ ପୁଅ ଝିଅ ବାହାରିଲେ । ସାନ ଭଉଣୀ ଦେଖି ଭାବିଲା, ଏମାନେ ଏଇନା ବୁଲିବାକୁ ଯିବେ ,

ଛେପ ପକାଇଲା, କାଶିଲା । ପିଠି କୁଜ କରି ସେ ହାଇ ମାରିଲା । ବଡ ଭଉଣୀ ପିଠିରେ ହାତ ରଖିଲା । ଛାତି ପାଖକୁ ଟାଣି ଆଣିଲା ।

କହିଲା, “କଣ କହିବୁ ?”

ଣଁ

“ତୋତେ ଭୋକ ହେଉଛି ?”

“ନା”

ପୁଣି ରେଷ୍ଟୁରେଣ୍ଟର ଦରଜା ଖୋଲିଲା । ଶବ୍ଦଟା ଶୁଣିଲା ପୁଣି ଝିମେଇବାକୁ ଲାଗିଲା । ଟ୍ରେନ୍‌ର ଭେଁପୁ ବାଜିଲା । ଛୋଟ ଭଉଣୀ କହିଲା,

“ଶଙ୍ଖ ପରି ଶବ୍ଦ ନା ?”

“ହଁ ।”

“ଦିଦି, ମନେ ଅଛି ତୋର ? ବାବାଙ୍କ ସଙ୍ଗେ ଗଙ୍ଗାକୂଳରେ ବୁଲିବାକୁ ଯାଇ ଥରେ ଗୋଟାଏ ଇଞ୍ଜିନ୍‌ରେ ଉଠିଥିଲେଁ ।”

“ହଁ ।”

“ଡ୍ରାଇଭରର ଗୋଟାଏ ଦାଁତ ସୁନାର ଥିଲା । ମୋତେ କୋଳ କରିଥିଲା ।”

“ସେ ଯେତେବେଳେ ଇଂଜିନ ସିଟି ବଜାଉଥିଲା, ତୁ ଭୟରେ ତା ବୁକୁରେ ମୁହଁ ଗୋଂଜିଥିଲୁ ।”

ସାନ ଭଉଣୀ ହସିଲା ।

ବଡ଼ ଭଉଣୀ କହିଲା, “ହେଇ ଦେଖ୍ ।”

ବାହା ହୋଇ ବୋହୂକୁ ନେଇ ବର ଘରକୁ ଫେରୁଛି । ନୂତନ ଟ୍ରଂକ୍, ନୂତନ ଶଯ୍ୟା, ନୂତନ ଗହଣା, ଲୁଗାପଟା । ଜୁଡୁବୁଡୁ ହୋଇ ବୋହୂଟି ଗ୍ଲୁଛି । ବର ସିଗାରେଟ୍ ଟାଣୁଚି ଫୁ ଫୁ କରି ।

"ଦିଦି, ବାଇ ଦେଖୁଚୁ, ସାମନାଟା ପଡଲା ।"

"ହୁଁ ।"

"ବରଟାର କିନ୍ତୁ ଅନେକ ବୟସ ।"

"ହୁଁ ।"

'ଦାଦାର ସେଇ ବନ୍ଧୁ ଆଉ ଆସିଲ ନାଇଁ କାହିଁକି ରେ ?

'କେଜାଣି ।"

'ଖୁବ୍ ସୁନ୍ଦର କଥା କହୁଥିଲ ।'

ବଡ଼ ଭଉଣୀ ଆଉ ଜବାବ ଦେଲ ନାଇଁ ।

'ଦିନେ ଚକଲେଟ ଆଣି ଦେଇଥିଲ, ମନେ ଅଛି ?' ଜବାବ ନ ପାଇ ମଧ୍ୟ ସାନ ଭଉଣୀ ଚୁପ୍ କଲ ନାଇଁ 'ମା କହୁଥିଲ, ତୋତେ ବୋଧହୁଏ ତାର ପସନ୍ଦ ହୋଇଛି ।'

'ଚୁପ କର ଇଲାଗେ ।'

ସାନ ଭଉଣୀର ଆଖି ଛଳଛଳ ହୋଇ ଆସିଲା । କାଶର ଦମକା ଚାପିବାକୁ ଯାଇ ସେ କୁଜୀ ହୋଇଗଲା । ମୃଦୁ ସ୍ୱରରେ କହିଲା, 'ପାଣି ପିଇବି ।

'ଯା ପିଇ ଆ ।'

ସାନ ଭଉଣୀ ଗଲା ନାଇଁ । ବଡ଼ ଭଉଣୀ ଯେମିତି ଝିମେଇ ପଡ଼ୁଚି । ଏକଦୃଷ୍ଟିରେ ସେ ସାମ୍ନା ଆଡ଼କୁ ଚାହିଁଛି । ତାହା ଲକ୍ଷ୍ୟ କରି ସାନ ଭଉଣୀ କହିଲା, 'ଏଥର ଆମେ କଣ କରିବା ?'

'ଜାଣେନା ।'

"ଦାଦା, କଣ କହି ଦେଇଥିଲା ?"

ବଡ଼ ଭଉଣୀ ଭାବିବାକୁ ଚେଷ୍ଟା କଲା ।

"ସେମାନେ କଣ ଆସିବେ ?"

"କାହିଁକି ?"

"ତା ହେଲେ ଆମେ ଆସେଛେ ଜଣ ମାନ୍ସ ?"

ବଡ଼ ଭଉଣୀ ଆଖି ମେଲି ଚାରିଆଡ଼କୁ ଚାହିଁଲା । ମଣିଷ, ଶବ୍ଦ, ଆଲୁଅ ସବୁ

ଦେଖି ଶୁଣି ପୁଣି ଏକଦୃଷ୍ଟିରେ ଅନାଇ ରହିଲା । ତା'ପରେ ଝିମେଇ ପଡ଼ି କହିଲା, "ଆମେ ଅପେକ୍ଷା କରିବା । ସେମାନେ ଆସିବେ । ପଚାରିବେ; ସାଙ୍ଗରେ କିଏ ଅଛି ? କୁଆଡ଼େ ଯିବ ? କାହିଁକି ଯିବ ? ଆମେ କି ଭଉଣୀ ବାହାରିଛୁ ବଂବେ ଯିବୁଁ, ସଂଗରେ କେହିନାହିଁ, ସେଠି ସିନେମାରେ ଢୁକିବୁଁ । ସେଠୁ ସେମାନେ ଆମକୁ ଧରି ନେଇଯିବେ । ଠିକଣା ପଚାରିବେ । ଆମେ କହିବା ନାହିଁ । ସେଠୁ ସେମାନେ ଆଶ୍ରମକୁ ପଠାଇ ଦେବେ ।"

"ସେଠି କଣ କରିବା ?"

"ଜାଣେନା ।"

"ଦିଦି, ଚାଲ ପଳାଇବା ।"

ଟିକିଏ ଟିକିଏ କରି ବଡ ଭଉଣୀର ଝିମେଇବା ଭାବ କଟିଗଲା । ଥଣ୍ଡା ସ୍ୱରରେ କହିଲା, "କୁଆଡ଼େ ପଳାଇବା ?"

"ଯେଉଁଠିକି ହେଉ ।"

"ତା ପରେ ।"

ସାନ ଭଉଣୀ ଖାଲି ଅନାଇ ରହିଲା । ବଡଭଉଣୀ ହାତ ବଢାଇ ତାକୁଛାତିକୁ ଟାଣିନେଲା । ମୁହଁ ତଳକୁ କରି କହିଲା, "ଭୟ ପାଉଛୁ ? ସାନ ଭଉଣୀ ତା ଛାତିରେ ମୁହଁ ଗୁଞ୍ଜି ଥରଥର ହୋଇ କମ୍ପିବାକୁ ଲାଗିଲା । ତା ପିଠିରେ ହାତ ରଖି ବଡ ଭଉଣୀ ନିଜକୁ ସିଧା କରି ରଖିଲା ।

ସେତେବେଳେ ଜଣେ ଭାବିଲା, ମଣିଷର ମୁହଁ ମଇଳା ଲଗା ଟିଣ ଡବା ପରି ।

ଆଉ ଜଣେ ଦେଖିଲା, ହସି ହସି ଟ୍ରେନ୍‌ର ମୁହଁ ଚାଲି ଯାଉଛି ।

●

# ଝୋରା

## ସୁନୀଲ ଗଙ୍ଗୋପାଧ୍ୟାୟ

ଛିପ୍‌ଦହରୁ ଡାଲଟନ୍‌ଗଞ୍ଜ ଯିବା ବାଟରେ ଗାଡ଼ି ଖରାପ ହୋଇଗଲା । ନୂଆ ଷ୍ଟେସନ ଓ୍ୱାଗନ, ହଠାତ୍ ଖରାପ ହେବା କଥା କେହି ସ୍ୱପ୍ନରେ ହେଲେ ଭାବିନି । ବ୍ରିଜ୍ ପାର ହୋଇ ଆସି ଉଠାଣି ଉଠିବାକୁ ଯାଉଛି ଦି—ତିନି ଥର ଦୁର୍ବଳ ଶବ୍ଦ କରି ଗାଡିଟା ଯେତେବେଳେ ବନ୍ଦ ହୋଇଗଲା , ସେତେବେଳେ କେହି ଭ୍ରୂକ୍ଷେପ ମଧ୍ୟ କରି ନାହିଁ——ବନ୍ଦ ହୋଇଛି, ପୁଣି ତ ଚାଲିବ——ଏଇ ହିସାବରେ , ଝରକା ଦେଇ ଯିଏ ଯାର ନିଜସ୍ୱ ଆଖିରେ ପ୍ରକୃତି ଦେଖିବାକୁ ଲାଗିଲେ । ମିଃ ଖେମକା ସିଗାରେଟ କେସ୍ ଖୋଲି ବଢ଼ାଇ ଦେଲେ । ଜଣ ଜଣ କରି ସମସ୍ତଙ୍କୁ ଇଂରାଜୀ-ହିନ୍ଦୀ ଏବଂ ଏପରିକି ବଙ୍ଗଳାରେ ମଧ୍ୟ ଅନୁରୋଧ କଲେ । କେସ୍‌ରେ ଆଠଟା ସିଗାରେଟ୍ ଥିଲା——ଏକବାରେ ଶେଷ ହୋଇଗଲା । ମିନିଟ୍ ଦଶକ ମଧ୍ୟରେ ବି ଗାଡ଼ି ଚାଲିଲା ନାହିଁ । ପଛରୁ ଗୋଟାଏ ଟ୍ରକ୍ ଆସି ହର୍ଣ୍ଣଦେବାକୁ ଲାଗିଲା । ମି ଖେମକା ସେଠୁ ନିଜେ ଓହ୍ଲାଇ ପଡ଼ିଲେ ।

ସରୁ ବ୍ରିଜ୍ ପାର ହୋଇ ରାସ୍ତା, ନଦୀ ଧାରଠାରୁ ଉଠାଣିଆ । ନଦୀ ନା ନଦୀର କଙ୍କାଳ, ରକ୍ତ—ମାଂସ କିଛି ନାହିଁ । ଅରୁଣ ଓହ୍ଲାଇ ଛିଡା ହେଲା, ଗାଡ଼ି ଭିତରେ ବେଶ୍ ଗରମ । ଦୁଇ ହାତ ପଛକୁ କରି ବୁକୁ ଚିତ୍ କରି ଅଳସ ଭାଙ୍ଗିଲା, ଦେହଟା ଚିଡ଼ି ବିଡ଼ି କରୁଚି, ସ୍ନାନ କରି ନ ପାରିଲେ ଅସ୍ୱସ୍ତି କଟିବ ନାହିଁ । ନଦୀରେ ପାଣିଥିଲେ ଏଇଠି ହିଁ ଘାଟକୁ ଚାଲି ଯାଇଥାନ୍ତୁ । ଆବୁରିପଡା ବାଙ୍କେ-କୌତୁକ ପରି ଅସହ୍ୟ ଖରା ପଡ଼ିଚି, ଏଇ ସାଢେ ଏଗାରଟା ନ ବାଜୁଣୁ । ଏଠି ବୋଧହୁଏ ଅନେକଙ୍କର ଗାଡ଼ି ଖରାପ ହୁଏ, କିମ୍ବା କିଏ କିଏ ଇଛା କରି ହିଁ ରହିଯାନ୍ତି, କାରଣ ଚଢ଼ାଣିରେ ଅନେକ ଶିକ୍ଷିତ ହାତର ଲେଖା କାଠ କୋଇଲାରେ ଚକ୍‌ଖଡିରେ । ଦେଶ ବୁଲିବାକୁ ଗଲାବେଳେ ଲୋକେ ପକେଟରେ ଚକ୍‌ଖଡ଼ି ନେଇ ଆସନ୍ତି । ନା କଣ ? ସବୁଠ ଜ୍ୱଳ ଜଳ ଲେଖାଟି ଏଇ——ମନ୍ଦିରା, ଯୋଗଚାନ୍ଦ,

ଲାଇକମଙ୍କ, ସମ ନ ସମାନ ଚିହ୍ନ ହେଭେନସ୍ । ଅରୁଣ ଅସ୍ପଷ୍ଟ ସ୍ୱରରେ କହିଲା, ଗୁଡ୍ ହେଭେନ୍‌ସ । ହାଲୋ ।

ଡ୍ରାଇଭର ବନେଟ୍ ଉଠାଇଚି, ସେଇଠି ହିଁ ଖେମକାର ଉଙ୍କିମରା ମଥା । ଗାଡ଼ି ଭିତରୁ ହୋରାଇଡ ଟ୍ରିବ୍ୟୁନ୍'ର ଲାହିଡ଼ୀ ବିରକ୍ତ ହୋଇ ଚେଞ୍ଚେଇ ଉଠିଲେ :— ସେଇ ଖେମକା ହ୍ୱାଟ୍ ଦି ହେଲ ଇୟୁ.........

ଖେମକା ଅତ୍ୟନ୍ତ ସପ୍ରତିଭ, କେବେ ବିଚଳିତ ହୁଅନ୍ତିନାହିଁ । ଫଗେ ଫଗେ ମଥା ଟେକି କହିଲେ, ଲେଟ୍ ଅସ୍ ଡୁ ଓୟାନ ଥିଂଗ୍—ଗାଡ଼ିଟା ଯେତେବେଳେ ଟ୍ରାବଲ୍ ଦେଉଚି, ଆମେ ଚାଲ ତେବେ ଓହ୍ଲାଇ ଯିବା । ପାଖରେ ରୂପା ଟୁରିଂ ଡାକବଂଲେ । ସେଇଠି ଆମେ ଲଞ୍ଚଟା ସାରିଦେବା ।

ସେତେବେଳକୁ ଆଉ ତିନି—ଚାରି ଜଣ ଓହ୍ଲାଇ ପଡିଲେଣି ; ଲାହିଡ଼ୀଙ୍କର କେବେ ସକାଳେ ମିଜାଜ ଭଲ ରହେନା । ସକାଳ ସମୟରେ ସେ ପ୍ରାୟ ପ୍ରତି ବାକ୍ୟରେ 'ହଲ୍ ଉଚ୍ଚାରଣ କରନ୍ତି, ଅରୁଣ ଲକ୍ଷ୍ୟ କରିଚି । ଲାହିଡ଼ୀ ମୁଖ ବିକୃତ କରି ଘଡ଼ି ଦେଖିଲେ, ଘଡ଼ିରେ ସମୟ ଦେଖିବାକୁ ନୁହେଁ ତାରିଖ ଦେଖିବାକୁ । କହିଲେ, ମାଇଁ ଗୁଡ୍‌ନେସ୍, ଆଜି ଏଇଟ୍‌ଥ । ଆଜିହିଁ ମୋତେ ପାଟଣାରେ ପହଞ୍ଚିବାକୁ ହେବ——ଡମ ଟାଟା କମ୍ପାନୀ ଏଇ ରକମର ବିଲକୁଲ ଧଡ଼ଡ଼ା ଗାଡ଼ି ଦେଇଛି !——

ଖେମକା ହା—ହା କରି ହସିଲା । କହଲ, ଏକବାରେ ବ୍ରାଣ୍ଡ ନ୍ୟୁ ଗାଡ଼ି, ସେଇଥିପାଇଁ ହିଁ ଟ୍ରାବଲ ଦେଉଚି । ଚାଲନ୍ତୁ, ଚାଲନ୍ତୁ, ଇଟସ୍ ଏ ନାଇଶ୍ ଲିଟଲ୍ ବଙ୍ଗ୍‌ଲେ, ଆପଣ ମାନଙ୍କୁ ଭଲ ଲାଗିବ ମିଃ ରଙ୍ଗଚାରୀ, ହୋୟାଟ୍ ଡ୍ୟୁ ଇୟୁ ସଜେଷ୍ଟ ?

ରଙ୍ଗଚାରୀର ଆପତ୍ତି ନାଇଁ, ଆଉ କାହାରି ବି ବିଶେଷ ଆପତ୍ତି ନାଇଁ, କିନ୍ତୁ ଲାହିଡ଼ୀ ସବୁଠୁ ବଡ଼ ଇଂରାଜୀ କାଗଜର ଲୋକ, ସୁତରାଂ ତାଙ୍କ ମେଜାଜ ହିଁ ସମସ୍ତଙ୍କ-ଠାରୁବେଶୀ । ସେ ବିଡ଼ିବିଡ଼ି କଲେ, ଡାଲଟନଗଂଜର ଡ଼ି. ଏମ୍‌ଙ୍କ ସଙ୍ଗରେ ମୋର ଆପୟଣ୍ଟମେଣ୍ଟ ଥିଲା ତିନିଟା ସମୟରେ.........ଯେତେ ଖବୁ......ବଙ୍ଗଳା କେତେ ଦୂର, ଚାଲଲେ ଖଗରେ ଚାଲି ଚାଲି ଯିବା ?

-ଏଇ ତ ପାଖରେ । ଦେଖା ଯାଉଛି ।

-ସେଠି ଖାଇବା ଜିନିଷପତ୍ର ସବୁ ମିଳିବ ତ ? ଏଠି କେଉଁଠି କିଛି ଖାଇବା ଜିନିଷ ନାଇଁ ।

ଲିଭ୍ ଦ୍ୟାଟ୍ ଟୁ ମି. ମୋର ବ ସଙ୍ଗରେ ପ୍ରଭିସାନ୍ସ ଅଛି, କିଛି ଅସୁବିଧା ହେବ ନାହିଁ ।

ଖେମକା କିଛି ବି ଅପ୍ରସ୍ତୁତ ବୋଧ କରେ ନା । ଲହିଡୀ ସଙ୍ଗରେ ସାହାସ୍ୟ ମୁଖରେ କଥା କହୁଥିଲ, ଏଥର ଡ୍ରାଇଭର୍ ଆଡକୁ ମୁହଁ ବଙ୍କାଇ ସମ୍ପୂର୍ଣ୍ଣ ବଦଳି ଯାଇ ଗୋଟାଏ କର୍କଶ ମୁଖା ପିନ୍ଧି ନେଲ କ୍ରୁଧ ଗଳାରେ ଡ୍ରାଇଭରକୁ କଣ ସବୁ ଧମକାଇ ପର ମୁହୂର୍ତ୍ତରେ ପୁଣି ମୁଖାଟା ବଦଳାଇ ହସ ମୁଖରେ ଲହିଡୀକୁ କହିଲ, ମଝିରେ ମଝିରେ ଏଇ ଅନ ରୁଟିନ୍ଡ୍ ଇନ୍‌ସିଡେଣ୍ଟ ମୋତେ ବେଶ ଭଲ ଲଗେ । ଚାଲନ୍ତୁ ।

ଗାଡ଼ିର କ୍ଲିନାର ମାଲପତ୍ର ବାହାର କରି ପଛେ ପଛେ ବୋହି ଆଣିଲ । ଏକ୍ କେସ୍ ବୀୟର ଓ ତିନି ବୋତଲ ସ୍କଚ୍ ତଥାପି ବି ବାକୀ ଥିଲ, ସସେଜ୍ ବି ସବୁ ଶେଷ ହୋଇ ନଥିଲ ।

ସେଇ ଆଡକୁ ଗ୍ଲେର ଆଖିରେ ଦେଖି ନେଇ ଲାହିଡୀର ମୁହର ରେଖା ସାମାନ୍ୟ ବଦଳିଲ ।

ବଙ୍ଗଳୋରେ ଦୁଇଟି ବଖରା ଘର, ପରିଚ୍ଛନ୍ନ ବାଥ୍‌ରୁମ, ତିନି ଜଣ ଅରଦଳୀ । ଦିନଏ ଆଗରୁ ଜଣେ କେନ୍ଦ୍ରୀୟ ମନ୍ତ୍ରୀ ଦଳବଳ ନେଇ ଏଠି ରହି ଯାଇଛନ୍ତି । ସେଥିପାଇଁ ଅରଦଳୀମାନେ ଏବେ ସୁଦ୍ଧା ଉର୍ଦି ଖୋଲି ନାହାନ୍ତି । ଖେମକା କ୍ରିକେଟ ଖେଳାଳୀଙ୍କ ପରି ସାବଲୀଳ ଦ୍ରୁତତାରେ ଅବଲୀଳେ ସବୁ ବ୍ୟବସ୍ଥା କରି ପକାଇଲ, କୌଣସି ମତେ ତିନିଟାରୁ ବେଶୀ ମୁର୍ଗୀ ଯୋଗାଡ଼ କରଯାଇ ପାରିଲ ନାହିଁ, ଏଇ ଅବ୍‌ଶୋଷ ପ୍ରକାଶ କରୁ କରୁ ସେ ବୀୟରର ବୋତଲ ଖୋଲିବାକୁ ଲଗିଲ । ଲହିଡ଼ୀର କୁଞ୍ଚୁକୁଞ୍ଚିଆ ଭୂରୁ ଟିକିଏ ସରଳ ହୋଇଛି । ଟେବୁଲ ଉପରେ ଛନ୍ଦାଛନ୍ଦି ପାଦ ଦିଟାକୁ ଟେକି କହିଲ, ଆହେ ଖେମକା, ଇଆଡ଼େ ଆଖପାଖରେ ତମ ଟାଟା କୋମ୍ପାନୀର କିଛି ଲଙ୍ଗରଖାନା ଟଙ୍ଗରଖାନା ଅଛି ନା ନାହିଁ ?

ନା ଇଆଡ଼େ ନାହିଁ । ଆମେ ଗ୍ଲରିଟା ପଏଣ୍ଟ ରିଲିଫ୍ ଦେଉଛୁଁ, କାଲି ଯେଉଁଟା ଦେଖିଲ ସେଟା--

ଯାହାହେଉ ବଞ୍ଚିଗଲେ । ଯା ଅତ୍ୟାଗ୍ରର କରିଛ ଏ ତିନିଦିନ ।

ଟରଚର ? ମିଃ ଲହିଡ଼ୀ, ଇୟୁ ମଷ୍ଟ ଫେସ ଲଇଫ । ଆପଣମାନେ ଜର୍ଣ୍ଣ ଲିଷ୍ଟମାନେ--

ସକାଳ ବେଳାଟାରେ ମୁହଁ--ଖେଞ୍ଚାଖେଞ୍ଚି କରିବ ନାହିଁ । ଲାଇଫ୍- (ଛପାର ଅଯୋଗ୍ୟ)--ନିଅ, ଡାଲ ।

ଦେଶର କଣ ଅବସ୍ଥା ତା ଆପଣମାନେ ସ୍ୱଚକ୍ଷୁରେ ଦେଖିବେ ନାହିଁ ? ବିଦେଶୀ ରିପୋର୍ଟର ପର୍ଯ୍ୟନ୍ତ—

ଦେଶର ଅବସ୍ଥା ଦେଖିବା ପାଇଁ ତମର ଏତେ ଗରଜ କାହିଁକି ହେ ! ଏତେ ବକ୍‌ବକ୍ କରନା ! ଭେଗାର ! ଏଇ ଅରୁଣ, ତୋ ପାଖରେ ସ୍ୱରମିନାର ଅଛି ତ ଗୋଟାଏ ଦେ ।

ଖେମକାର ସିଗାରେଟ—କେସ୍ ପୂର୍ଣ୍ଣ ଭର୍ତ୍ତି । ସେ ଫଟାସ୍ କରି ଖୋଲି ବଢ଼ାଇ ଦେବାରୁ ଲାହିଡ଼ୀ କହିଲା, ତମର ଏଇ ଗୋଲ୍ଡ୍ ଫ୍ଲେକ୍ ଖାଇ ଖାଇ ମୁହଁ ଏକବାରେ ଆମ୍ବିଲା ଧରିଲାଣି । ଘାସ୍ ? ଦେ ଅରୁଣ ସ୍ୱରମିନାର ଦେ ।

ଅରୁଣ ଦୂରରୁ ପ୍ୟାକେଟଟା ଫିଙ୍ଗି ଦେଇ କହିଲା—ଲାହିଡ଼ୀଦା, ଆଜି ଏଠି ରହିଗଲେ ହୁଅନ୍ତା ନାହିଁ ! ଜାଗାଟା ବେଶ୍ ନିଛାଟିଆ ।

ତୋର ଆଉ କଣ, ସାତ ଦିନ ଯେତେ ଇଚ୍ଛା ଛୁଟି ମାରିବୁ । ମୋତେ ପଅରିଦିନ ହିଁ କଲିକତା ଯାଇ ପ୍ଲେନ୍ ଧରିବାକୁ ହେବ । ଗୋଟାଏ ଦିନ ଅବଶ୍ୟ—ମିଞ୍ଜାସ୍‌ଟା ଏକବାରେ ଖତରା ହୋଇଗଲା, ଭଲଲାଗେ ନା ।—

ଖେମକା କହିଲା—ସତରେ ସହ୍ୟ କରଯାଏନା । ଏମିତି କରୁଣ ଦୃଶ୍ୟ—

କେଉଁଟା କରୁଣ ? କେଉଁଟା କରୁଣ ? ୟାଁ !—

ଲାହିଡ଼ୀ ଟେବୁଲ ଉପରୁ ଗୋଡ ହଟାଇ ସୋଜା ହୋଇ ବସିଲା । ବିଶାଳ ଚେହେରର ଚୌଡ଼ା ମୁହଁ ଲାହିଡ଼ୀର—ଆଖିରେ ବେଶୀ ପାଓ୍ୱାରର ଚଷମା । ଏକ ହିସାବରେ ତାର ମୁହଁ ଖଣ୍ଡକରେ ଶିଶୁ ପରି ରାଗ, ବିସ୍ମୟ, ବିରକ୍ତି, ହତାଶା—ଏସବୁ ଅଭିବ୍ୟକ୍ତ ସ୍ପଷ୍ଟ ଫୁଟି ଉଠେ । ଏଇନା ଅଭେଜାଲ ବିସ୍ମୟରେ ପଗ୍ଗରିଲା, କେଉଁଟା କରୁଣ ? ୟାଁ ?

ବମ୍ବେ ଟ୍ରିବ୍ୟୁନାଲର ଦେଶପାଣ୍ଡେ କହିଲା, ମିଃ ଲାହିଡ଼ୀ, ଡିଡ୍ ୟୁ ନୋଟଶ—ମୁଁ ଗୋଟାଏ ସ୍ନାପ୍ ନେଇ ରଖିଛି, ବେଚଲା ରିଲିଫ୍ ସେଣ୍ଟର..... ଲାଇନ୍‌ରେ ବସି ରହି ରହି ଗୋଟିଏ ବୁଢା କୋଳରେ ମଥା ରଖି ଗୋଟିଏ ବୁଢ଼ୀ ମରିଗଲା—ନିଜ ଆଖିରେ ମଣିଷ ଏସବୁ ଦେଖିପାରେ ? ଜୟପ୍ରକାଶଜୀଙ୍କୁ ଦେଖିଲି ଲୁହ ପୋଛୁଛନ୍ତି, ମୁଁ ମଧ୍ୟ ଆଖି ବୁଜି ପକାଇଲି ।

ରଙ୍ଗାଗ୍ରୁରୀ ହସି ହସି କହିଲା, ଆଖି ବୁଜିବା ଆଗରୁ କ୍ୟାମେରାରେ ତ ଛବିଟା ଉଠାଇ ନେଇଚ । ଏଇନା ଏ ଛବିଟା ଟାଇମସ ବା ଗାର୍ଡିୟାନକୁ ବିକ୍ରି କରିବ ।—

ଦେଶପାଣ୍ଡେ ତୀବ୍ର କଂଠରେ କହିଲା—କଭି ନେହି । ମୁଁ ମୋ ଦେଶର ଏଭଳି ସବୁ ଲଜ୍ଜାର ଛବି କେବେ ବିଦେଶୀମାନଙ୍କୁ ବିକେ ନାହିଁ ।

ଲହିଡ଼ୀ ମନ ଦେଇ ଶୁଣୁଥିଲ, ଏଥର କହିଲ, ଏହା କରୁଣ ଦୃଶ୍ୟ ? ତା ଅପେକ୍ଷା ଆମମାନଙ୍କର ଅବସ୍ଥା କରୁଣ ନୁହେଁ ? ଏଇ ଶଳା ଖେମକା—

ଖେମକା ଓଠଭର୍ତ୍ତି ହସ ସମେତ ନକଲି ଭୟରେ ଚେଂଚେଇ ଉଠିଲ, ଆରେ, ଆରେ ମୁଁ କଣ ଦୋଷ କଲି ?

ତୁ ତ ଶଳା, ଯେତେ ନଷ୍ଟର ମୂଳ ।

—କାହିଁକି ? ଦେଶରେ କଣ ହେଉଚି ତା ଆପଣମାନେ—

—ଦେଶରେ କଣ ହେଉଚି ତା ଆମେ ନିଜ ଗରଜରେ ଦେଖିବୁଁ । କିଂମ୍ବା ଆମ କାଗଜ ଆମକୁ ଦେଖିବାକୁ ପଠାଇବ । ତୁ ନିମଂତ୍ରଣ କରି କାହିଁକି ଦେଖାଇବାକୁ ଆଣିଚୁ ରେ ! ନିଜେ ସବୁ ଦାନ-ଖୟରତ କରୁଚ, ତାକୁଇ ପୁଣି ଢୋଲ ପିଟି ଦେଖାଇ ହେଉଚ ! ଦିନରାତି ସତ୍ ଖୁଆଇଛୁ । ଆରାମରେ ରଖିଛୁ ଆଉ ମଝିରେ ମଝିରେ ଥରେ ଥରେ ନେଇ ମଣିଷ-ମରା ଦେଖାଇ ଆଣୁଚୁ-ହରିବୁଲ, ଭଲଗାର ଶଳା, ତମକୁ ସବୁ ଏଗୁଡ଼ାକ ଖାଉଛି ବୋଲି ଯେ ତମକୁ ସବୁ ପସନ୍ଦ କରେ, ତା ଭବ ନାଇଁ । ନିଶାଖୋର ଲୋକ, ଭଲ ମାଲ ଦେଖିଲେ ଛାଡ଼ି ପାରେନା, ତା ବୋଲି ଏତେଟା ଅତ୍ୟାଗ୍ରର !

ଖେମକା ସଂପୂର୍ଣ୍ଣ ଭଂଗି ବଦଳାଇ, ମୃଦୁ ହାତତାଳି ଦେଇ କହିଲ, ଚମତ୍କାର କହିଛନ୍ତି ଅପଣ । ମୁଁ ଆପଣଂକ ସଂଗେ ସଂପୂର୍ଣ୍ଣ ଏକମତ; କିନ୍ତୁ ମୋର ବି ତ ଗ୍ରକିରୀ ।

ଲହିଡୀ ଚେୟାର ଛାଡ଼ି ଉଠିଯାଇ ବାରାଣ୍ଡାରେ ଛେପ ପକାଇ ଆସିଲ । ପକେଟରୁ ରୁମାଲ ବାହାର କରି ନାକ ପୋଛିଲ । ଚଶମାଟା ଖୋଲି ଦେବାରୁ ମୁହଁର ଚେହେରାଟା ସଂପୂର୍ଣ୍ଣ ବଦଳି ଗଲ ତାର । ସେଇ ଅସହାୟ ଧରଣର ମୁହଁରେ କହିଲ, ସତରେ ଭଲାଗେ ନା, ଦେଖନା ରଂଧା ହୋଇଚି କି ନାଇଁ, ଭୋକ ଲାଗିଲାଣି । ଆଉ ଟିକିଏ ନିଶା ଧରିଗଲେ ଆଉ ଖାଇବାକୁ ଇଛା କରିବ ନାଇଁ ।

ଡାକବଂଗଳା ହତାରେ ମସ୍ତ ଗୋଟାଏ ଇଂଦାରା (କୂଅ) । ଦଳ ଦଳ ଲୋକ ସେଠିକି ଆସୁଛନ୍ତି ପାଣି ନେବାକୁ । ଜଣେ ଅର୍ଦଳୀ ସେଠି ଛିଡ଼ା ହୋଇ ଖବରଦାରି କରୁଚି ଯେମିତି ଗୋଟିଏ କଳସୀର ବେଶୀ ପାଣି କେହି ନ ନିଏ ! ଅରୁଣ ସେଇ ଆଡ଼କୁ ଚାହିଁଥିଲା । ଲାହିଡ଼ୀ ତା ପାଖକୁ ଆସି କହିଲା, କଣ ଦେଖୁଚୁ ? ଚିହ୍ନିପାରିଲୁ ? ସାତ ବର୍ଷ ଆଗେ ଥରେ ଏଇ ପାଲାମୌକୁ ଆସିଥିଲି, ସେତେବେଳେ

ମୋ ବୟସ ତୋ'ରି ସମାନ । ସେଥର ଦେଖିଥିଲି ଏଇ ଓର୍ଗିଓ ଝିଅଗୁଡ଼ାଙ୍କର କି ସ୍ୱାସ୍ଥ୍ୟ । ଏଇନା ଦେଖ, ଗୋଟାଏ ଝିଅର ବି ପିଗ୍ ନାଇଁ, ଛାତି ନାଇଁ ।

ଅରୁଣ କଥା ନ କହି ଲାହିଡ଼ୀ ମୁହଁ ଆଡକୁ ଅନାଇ ହସିଲା । ଲାହିଡୀ କହିଲା, ତା'ହେଲେ କ'ଣ ଭଷା ଭବି ନେଉଛୁ ? ତମ ବଂଗଳା କାଗଜରେ ତ ପୁଣି ଗୁଡ଼ାଏ କବିତ୍ୱ କରିବାକୁ ହୁଏ । ନେ, ମୁଁ କହି ଦେଉଛି, ଲେଖିବୁ, ଅଗଣିତ ଜନତାର ମୁଖେ ମୁଖେ ବିଷାଦର ଛବି......ନା ଛବି ନୁହେଁ, ଛବି କଥାଟା ପୁରୁଣା, ଝାଙ୍କ, ବିଷାଦର ଝାଙ୍କ, ଆହୁରି ଭଲ ହେଇ ବିଷାଦର ସ୍ୱେଦ, ଫାଷ୍ଟକ୍ଲାସ୍ ଖର, ବଧିର ରୌଦ୍ର, ନେ ଚମତ୍କାର୍ ହେଡ଼ିଂ ପର୍ଯ୍ୟନ୍ତ କହି ଦେଉଛି ଆକାଶରେ ବଧିର ରୌଦ୍ର, ତଳେ ବିଷାଦର ସ୍ୱେଦ-ପୋଏଟ୍ରି !

ଅରୁଣ କଥା ନ କହି ପୁଣି ହସିଲା । ଏ ହସଟା ଟିକିଏ ଅନ୍ୟ ରକମ । ଲାହିଡ଼ୀ ତାହା ଲକ୍ଷ୍ୟ କଲା । କହିଲା, ଟିକିଏ ବେଶୀ ବକ୍‌ବକ୍ କରୁଚି, ନା ? ସିଲି ଏଂଡ୍ ଷ୍ଟୁପିଡ୍ । ଭବି ଦେଖ ଟ୍ର୍ୟାଜେଡିଟା । ହଜାର ହଜାର ମଣିଷ ନଖାଇ ଡ଼ୁକଉଛନ୍ତି । ଆଉ ଆମର କାମ କଣ ନା ସେଟାକୁ ବର୍ଣ୍ଣନା କରିବା ସମୟରେ କେଉଁ ଭଷାଟା ହେବ ତା ନେଇ ମୁଣ୍ଡ ଖେଳାଇବା, ସେଇଆ ନା । ଭଲ୍ଲାଗେନା ।

ଲାହିଡ଼ୀଦା; ଆଖପାଖରେ କେଉଁଠି ଜଣେ ସାଧୁ ଆସି ଖୁବ୍ କାମ କରୁଛନ୍ତି ଶୁଣିଲି ।

ସାଧୁ ! କିଭଳି ସାଧୁ ।

ବମ୍ବେରୁ ଜଣେ ସାଧୁ ଆସି କୁଆଡ଼େ ରୋଜ ଏକ ହଜାର ଲୋକଙ୍କୁ ଖୁଆଉଛନ୍ତି । ସାଧୁର ବଡ଼ଲୋକ ଭକ୍ତମାନେ ଟଙ୍କା ଆଉ ଚାଉଳ ପଠାଉଛନ୍ତି । ବ୍ୟାପାରଟା ଇଣ୍ଟେରେଷ୍ଟିଙ୍ଗ୍ । ଚାଲନ୍ତୁନା ଯେବେ ଏଠି ରହିବାର ହେଲା, ତେବେ ବ୍ୟାପାରଟାକୁ କଭର୍ କରିପକାଇବା ।

ସାଧୁଲୋକ ଖୁଆଉଛି, ସେଥିରେ ତୋର ପୁଣି କଣ ରେ ଶଙ୍କା ?

ସେଟା ନା କଣ ଗୋଟାଏ ଏଲାହି (ବୃହତ୍) କାଣ୍ଡ । ଆପଣଙ୍କ ଇଂରଜି କାଗଜ ପକ୍ଷରେ ଖୁବ୍ ଭଲ ଷ୍ଟୋରି ହୁଏ ।

ଆ', ଚୁପ୍ କରନା । ବୀୟରଟା ଏତେ ପିତା-ମନେହୁଏ ଯେମିତି ଆମାଶୟ ରୋଗର ପାଂଚନ ଖାଉଛି । ଭେଜାଲ ଦେଇଛି ବୋଧହୁଏ ।

ବୀୟର ତ ଟିକିଏ ପିତା ହେବା କଥା !

ବାଜେ ବକବୁ ନାହିଁ । ତୁ ଦୁଧଖିଆ ବଚ୍ଚା । ତୁ ମୋତେ ଶିଖାଇବୁ ବୀୟର ପିଡା ହେବ କି ନାହିଁ ।

ଲହିଡ଼ୀ ମୁହଁଟା ଭୁକୁଞ୍ଚା କରି ରହିଲ । ଚଷମା ଖୋଲ ଅସହାୟ ମୁଖ ।

ଥରେ ଯା ପାଖକୁ ଥରେ ତା ପାଖକୁ ଯାଉଛି, ଆବୋଲତାବୋଲ ବକ୍‌ବକ୍ ଲଗୁଛି ଅନବରତ, ଅନ୍ୟ କେହି କିଛି କହିବାକୁ ଗଲେଇ ପାଟି କରୁଚି, ଆଃ ଚୁପ୍ କରନା । ଷଟ୍ ହାଉଲିଂ, ଉଇଲ ୟୁ ? ହଠାତ୍ ଲହିଡ଼ୀ ଖେମକା ଉଦ୍ଦେଶ୍ୟରେ ପ୍ରଚଣ୍ଡ ଚେଞ୍ଚେଇ ଉଠି କହିଲ, ଏଇ ଶଳା ଖେମକା, ତୋ ନାଁରେ ମୁଁ ରୁସ୍ତମଜୀ ପାଖରେ ଲଗାଇବି । ତୋତେ ମୁଁ ରାଂଚିକୁ ଟ୍ରାନ୍‌ସଫର କରାଇବି !

ଖେମକା ବସିଚି ବାରଣ୍ଡାର ଗୋଟାଏ କଣରେ, ତା ଆଖିରେ, ମୁହଁରେ ଖରା, ମୁହଁଟା ଏକ ପ୍ରକାର ଜ୍ୱଳନ୍ତ, ମିଠା ସ୍ୱରରେ ଖେମକା କହିଲ, ତା ଯଦି କରନ୍ତି, ୟୁଆର ଅଲଓୟେଜ୍ ମାଇ ଫ୍ରେଣ୍ଡ୍ ।

ଫ୍ରେଣ୍ଡ ନା କଚୁ ।

ଅଲଓୟେଜ । କିନ୍ତୁ ଏଇ ମୁହୂର୍ତ୍ତରେ ମୋର ଦୋଷଟା କଣ ?

ଲହିଡ଼ୀ ଅଣ୍ଡାରେ ହାତ ଦେଇ ଛିଡ଼ା ହୋଇଗଲ । ତୀବ୍ର ଚକ୍ଷୁରେ ଗୁହିଁ ଖେମକାର ଦୋଷ ଖୋଜୁଚି । ଇଆଡକୁ ସିଆଡ଼କୁ ଅନାଇଲ, ଆଖି ପଡ଼ିଲ ନିଜ ହାତରେ ଖାଲି ଗ୍ଲାସ । କହିଲ, ଖାଲି ସେତିକିବେଳୁ ଦେଶୀ ବୀୟର ଖୁଆଉଛୁ, ସଚ୍ ଗୁଡ଼ାକ କଣ ତୋ ମାଇକିନିଆକୁ ଖୁଆଇବୁ ? ଯାଁ ?

ଖେମକା ଝଟତି ଉଠି ଟେବୁଲ ତଳୁ ସଚ୍ ବାହାର କରି କହିଲ, ମୁଁ ଲକ୍ଷ୍ୟ କରିଚି, ମନ ଖରାପ ହେଲେ ଆପଣ ହୁଇସ୍କି ବଦଳରେ ବୀୟର ହିଁ ଖାଇବାକୁ ଭଲ ପାଆନ୍ତି ସେଥିପାଇଁ——

ମୋ ମନ ଖରାପ ତୋତେ କିଏ କହିଲା, ଗାଣ୍ଡୁ ? ମୋତେ ଭୋକ ହେଲଣି । ସେତିକିବେଳୁ କହୁଚି ଖାଇବାର ବ୍ୟବସ୍ଥା କରିବାକୁ——

ଖାଇବା ବର୍ତ୍ତମାନ ପ୍ରସ୍ତୁତ ଧବ୍ ଧବ୍ ସାଦା ସରୁ ଚାଉଳର ଭାତ, ଚିଣର ନହୁଣି, ଆଳୁଭଜା, ଆଉ ଗରମ ମୁର୍ଗୀର ଝୋଲ । ରଙ୍ଗଗୁରୀ ଫିସ୍‌ଫିସ୍ କରି ଅରୁଣକୁ କହିଲ, ଏଇ କେତେଦିନ ଭିତରେ ଆଜିର ଚାଉଳଟାଇ ସବୁଠୁ ଭଲ । ସବୁଠୁ ଖରା ଅଞ୍ଚଳରେ ଆମେ ସବୁଠୁ ଭଲ ଚାଉଳ ପାଇଲେ——ନା କ'ଣ ?

ଅରୁଣ କହିଲ, ମୁର୍ଗୀର ସ୍ୱାଦ ବି ଖୁବ୍ ଭଲ । ଗନ୍ଧିଛି ଯା——

ଟିକିଏ ବେଶୀ ଗଗ ଦେଇଛି ।

ସେତେବେଳକୁ ମାତ୍ର ଗୋଟାଏ ବାଜିଛି । ଲହିଡୀ ଲଆ ଭିତରେ ନିଶାରେ ମସଗୁଲ । ଆଙ୍ଗୁଠି ଦେଇ ଖାଇବା ଘଣ୍ଟାଘଣ୍ଟି କରୁଚି, କିଛି ଖାଇବା ପ୍ରତି ମନ ନାହିଁ । ଆଖି ଦିଇଟା ଘୋଳିଆ ହୋଇ ଆସିଛି । ଆଜି ସାରାଦିନ ଯାର ଏମିତି ଗ୍ଭଲିବ । ଅଥଚ ଅରୁଣ ଦେଖିଚି ଏ ମଣିଷଟା ଯେତେବେଳେ ରିପୋର୍ଟ ଟାଇପ୍ କରି ବସେ ସେତେବେଳେ ଅନ୍ୟ ରକମ ଚେହେରା । ଅସାଧାରଣ ସ୍ମୃତିଶକ୍ତି ଏବଂ ଭାଷାର ଜୋର୍ । କି ଏକାଗ୍ର ମୁଖ ସେତେବେଳେ ! ଅରୁଣ କହିଲ, ଲହିଡ଼ୀ ଦା, ଆପଣ କିଛିଇ ଖାଉନାହାନ୍ତି ।

ନା—ଧୁତ୍ । କଣ ଖାଇବି ? ଭଲ ଲଗେନା । ପଗ୍ଭ ମୁର୍ଗୀର ମାଂସଟା ପଗ୍ଭ ।

ଖେମକା ଅଦ୍ଭୁତ ମୁଖଭଙ୍ଗୀ କରି କହିଲ—ଜୀଅନ୍ତା ମୁର୍ଗୀ ପଗ୍ଭ ? ହାଃ—ହାଃ, ସମସ୍ତ ହସି ଉଠିଲେ । ଲହିଡ଼ୀ କ୍ରୁଦ୍ଧ ଗଳାରେ କହିଲ, ହ୍ୱାଟସ୍ ଫନୀ ? ୟାଁ ? ଅଲବତ୍ ପଗ୍ଭ ! ଧ୍ୟାତ୍—

ଲହିଡ଼ୀ ଆଙ୍ଗୁଠି ଦେଇ ଭାତ ଆଉ ମାଂସ ତଳେ ଫିଙ୍ଗିବାର ଦେଖି ଦେଶପାଣ୍ଡେ କହିଲ, ଦାଦା, ନ ଖାଇବେ ତ ଥାଉ, ଖାଇବା ଜିନିଷ ନଷ୍ଟ କରିବେ ନାହିଁ ।

ବେଶ୍ କରିବି ନଷ୍ଟ କରିବି । ତୋର ସେଥିରେ କଣ ?

ଏଟା ଅନ୍ୟାୟ ! ଏତେ ଲୋକ ଖାଇବାକୁ ପାଉନାହାନ୍ତି, ଆଉ ଆମେ ଏଇ ଯେ ପେଟଭରି ଖାଉଛୁଁ, ସେଟା ବି ତ ଅନ୍ୟାୟ । ତା ଉପରେ ପୁଣି ନଷ୍ଟ କରିବା—

ଆଃ ଚୁପ୍ କରନା । ବେଶ୍ କରିବି ନଷ୍ଟ କରିବି ।

କୌଣସି ମାନେ ହୁଏନା । ବଙ୍ଗଳାର ବେହେରାମାନେ ଖାଇପାରନ୍ତି—କିମ୍ବା କୌଣସି ଭିକାରୀକୁ ଦେଲେ—

ସଟ୍ ଅପ୍ । ମୁଁ କିଛି ଶୁଣିବାକୁ ଗ୍ଭହେଁନା । ଖାଇବାକୁ ପାଉନାହାନ୍ତି, ଭିଖାରୀ—ଭଲ ଲଗେନା, ଆଉ ସହ୍ୟକରି ପାରୁନାହିଁ । ନୂଆ ନା କଣ ? ......ଆଗେ ବୋଧେ ନଖାଇ କିଏ......ପୁଣି ଡାକି ଦେଖାଇବା । ଏଇ ଖେମକା, ମୁଁ ତୋତେ ଓ୍ୱାର୍ଣିଂ ଦେଇ ଦେଉଚି—ଆଜି ସାରା ଦିନ ଏଠି କେହି ଏସବୁ ଖାଇବାକୁ ନପାଇବା —

ଫାଇବା କଥା ଉଠାଇ ପାରିବେ ନାହିଁ ! ଏନଫ ! ଆଜି ସାରାଦିନ ଛୁଟି, ବୁଝିଲ ! ଆଜି ଦର୍ଭିକ୍ଷ ଠାରୁ ଛୁଟି, ବୁଝିଲ ତ ସମସ୍ତେ ! ଆଜି ଖାଲି ମଦ ଆଉ ଝିଅପିଲାଙ୍କ ଗଳ୍ପ କରିବ । ଖବର୍ଦାର । କେହି ଆଉ ଏସବୁ କଥା—

ତାର ଦରକାର ହେବ ନାହିଁ ମିଃ ଲାହିଡୀ, ଗାଡ଼ି ଠିକ୍ ହୋଇଯାଇଛି. ଖାଇସାରିହିଁ ଆମେ ଷ୍ଟାର୍ଟ କରିପାରିବା ।

ମଲା, ମଲା, ଆଉ କଣ ! ଖାଇ ଉଠିଇ ଏଇନା ତମର ସେଇ ଝଙ୍କା-ଝଙ୍କା ଗାଡ଼ିରେ ଉଠୁଚି ନା ଆଉ କଣ ! ଆଜି ଆମେ ଏଇଠି ରହିବା !

କିନ୍ତୁ ଆପଣ କହୁଥିଲେ ପଅରିଦିନ ଆପଣଙ୍କୁ କଲିକତାରେ ପ୍ଲେନ୍ ଧରିବାକୁ ହେବ ।

ମୋତେ ପ୍ଲେନ ଧରିବାକୁ ହେବ ତ ତୋର ଏତେ ଭାବନା କିଆଁ ? କହିଚି ତ ଆଜି ଛୁଟି ।

ଦିଲ୍ଲୀର ସାମ୍ବାଦିକ ଦିଜଣ ଅବଶ୍ୟ ଏଇନା ଚାଲିଯିବାକୁ ଚାହାଁନ୍ତି । ଦେଶପାଣ୍ଡେର ମଧ୍ୟ ଆଉ ରହିବାକୁ ଇଚ୍ଛା ନାହିଁ । ସେ ଉଠାଇଥିବା ଛବିଗୁଡ଼ାକ ଟଟ୍‌କା ଛାଡ଼ି ନ ପାରିଲେ ତାର ମୂଲ୍ୟ ରହିବ ନାହିଁ । ଶେଷ ପର୍ଯ୍ୟନ୍ତ ଚାରିଜଣ ଚାଲିଗଲେ । ବାକୀ ଚାରିଜଣ ରହିଗଲେ । ଗାଡ଼ି ପୁଣି ଫେରିଆସିବ ।

ବାରାଣ୍ଡାରେ ଛଜି ଚେୟାରରେ ବସିଛନ୍ତି ଏମାନେ । ଲାହିଡ଼ୀ ପୁଣି ଗ୍ଲାସରେ ହୁଇସ୍କି ଢାଳିଛି, ଜୋରକରି ଅନ୍ୟମାନଙ୍କ ଗ୍ଲାସରେ ମଧ୍ୟ ଢାଳିଛି । ଆଲକୋହଲ ଏକ୍ଷଣି ରକ୍ତରେ ମିଶିଚି । ଶରୀରରେ ସବୁ ଧମନୀ ମଧ୍ୟ ଦେଇ ଛୁଟିଛି ଆଲକୋହଲ, ଲାହିଡ଼ୀ ଏକବାରେ ଛଟପଟ କରୁଚି । କେବେ ଚେୟାର ଛାଡ଼ି ଉଠୁଚି, କେବେ ଟହଲୁଚି, ପୁଣି ବସୁଚି । ଖାଁ ଖାଁ କରୁଚି ଖରା, ଏଇ ଖରାରେ ହାଓ୍ୱା ଉଠିଲେ ଅଲୌକିକ ଶବ୍ଦ ହୁଏ । ଜଙ୍ଗଲ ଭିତରୁ ଛୁଟି ଆସେ ସେହି ଶବ୍ଦକାରୀ ହାଓ୍ୱା ।

ଇଂଦାରାରୁ ପାଣି ନେବାକୁ ସେତେବେଳେ ଅନବରତ ନାରୀ ପୁରୁଷ ଆସୁଛନ୍ତି । କପିକଳର ଘଡଘଡ଼ ଶବ୍ଦ, ଏମାନଙ୍କର ଦୁର୍ବୋଧ୍ୟ ଭାଷାରେ ଝଗଡା । ଲାହିଡ଼ୀ ନିଜ ସାଙ୍ଗମାନଙ୍କ ଉଦ୍ଦେଶ୍ୟରେ କହିଲା, କଣ ? ଚୁପ୍‌ଚାପ୍ କାହିଁକି, ଗଳ୍ପ ହେଉ । ଏଇ ରଙ୍ଗଗୁରୀ, ଏଥର ଯେ ଋଷିଆରୁ ଘୂରି ଆସିଛି, ସେଠି ଝିଅମାନେ କିପରି? ମିଳନ୍ତି ?

ରଙ୍ଗଗୁରୀ ହାଇ ମାରି କହିଲା, ମୋର ଖୋଜି ଦେଖିବାର ସମୟ କାହିଁ ? ଏମିତି ଟାଇଟ୍ ପ୍ରୋଗ୍ରାମ ।

ତୁ ଝିଅପିଲାଙ୍କ ସନ୍ଧାନ କରିନ୍, ଏହା ବିଶ୍ୱାସ କରିବି ? ସେଥର ଜର୍ମାନୀକୁ ଯାଇ ତ, କହନା. ସେ ଗଳ୍ପଟା କହ ନା ।

ମୁଁ ଆଉ କଣ କହିବି ! ପାଣିନାଙ୍କାଗୁଡ଼ାକ ସବୁ ପାକଳ ହୋଇଗଲା । ଏଇ ଯା ଦୁଃଖ । ଏଇନା ଆଉ--ଏ ଅରୁଣ, ତୋର କଞ୍ଚା ବୟସ, ବାହାଘେରା ବି ହୋଇ ନାହିଁ । ପ୍ରେମ—ପ୍ରେମର ଗଳ୍ପ ଗୋଟାଏ ଦିଟା ଛାଡ଼ ନା ।

ବାହାଦ୍ଦୀଦା. ଆପଣ ବରଂ ଆପଣଙ୍କର ସେ ସ୍ୱେନ ଆଫାୟାରଟା ।

ରାମଯଶ ସିଂ ଅତ୍ୟନ୍ତ ସିରିୟସ ଧରଣର ଲୋକ । କାହାର ଇଣ୍ଟରଭ୍ୟୁ ଦେବା ଛଡ଼ା ଅନ୍ୟ ସମୟରେ ପ୍ରାୟ ମହଁ ଖୋଲେନାଁ । ମଦ ଖାଇଯାଏ ଚୁପ୍ ଚାପ । ରଙ୍ଗଚାରୀ ତାକୁ ଫିସ ଫିସ୍ କରି ପଚାରିଲା, ବିହାରର କେତେ ପରସେଣ୍ଟ ପପୁଲେଶନ ଡ୍ରାଉଟ୍ ଆଫେକ୍‌ଟେଡ଼ ?

ରାମଯଶ ସିଂ ସଂକ୍ଷେପରେ କହିଲ, ଫିଫଟ—ଫୋର ପରସେଣ୍ଟ, ଏପର୍ଯ୍ୟନ୍ତ ।

ଷ୍ଟାରଭେଶନ୍ ମୃତ୍ୟୁ ସଂଖ୍ୟା ?

କୌଣସି ଅଫିସିଆଲ ରେକର୍ଡ଼ ନାହିଁ । ଅନଅଫସିଆଲୀ—

ଲହିଡୀ ହୁଙ୍କାର ଦେଇ ଉଠ ଲ, ପୁଣି ସେଇକଥା । ପାଗଳ କରି ଛାଡ଼ିବ ଦେଖୁଚି । କହିଲି ନା ଆଜି ଛୁଟି । ଗୋଟାଏ ଦିନ ପାଇଁ ବି ଚାକିରୀ ଭୁଲି ପାରୁନା ।

ମିଃ ଲହିଡ଼ୀ, ଏହା ଖାଲି ଚାକିରୀର ଇଣ୍ଟରେଷ୍ଟରେ ନୁହେଁ । ହିଉମାନ୍ ଇଣ୍ଟରେଷ୍ଟ୍ ।

ସଟ୍ ଅପ୍ । କୌଣସି କଥା ଶୁଣିବାକୁ ଚାହେଁନା ।

ନୋ ୟୁଜ୍ ଆର୍‌ଗୁଇଙ୍ଗ୍ ଉଇଥ୍ ଏ ଡ୍ରଙ୍କ୍ ।

ମୋଟେଇ ଡ୍ରଙ୍କ୍ ନୁହେଁ । ପର ପଇସାରେ ମଦ ମୁର୍ଗୀ ଚଢାଇ ଏଇନା ପୁଣି ହିଉମାନ ଇଣ୍ଟରେଷ୍ଟ । ବୁଲ୍ ଶୀଟ୍ । ଏଇନା ଖାଲି ଝିଅପିଲଙ୍କ ଗଳ୍ପ ହେବ । ମଦମାଂସ ପରେ ଝିଅପିଲଙ୍କ ଗଳ୍ପଇ ଠିକ୍ ।

କହନ୍ତୁନା, ଆମେ ତ ସବୁ ଶୁଣିବାକୁ ରାଜି ଅଛୁଁ ।

ଲଷ୍ଟ ଇଅର ଜାନୁଆରୀରେ, ମାଡ୍ରିଡ୍‌ରେ ଥିଲି । ସେତେବେଳେ, ହୋଟେଲ-ରେ--ରାତି ବେଳା--ଝିଅଟା ବାଥ୍‌ଟବରେ ଦେହ ଡ଼ବାଇ ଥିଲ--ମୁଁ ନକ୍

କରିବାର୍ ତାଓୟେଲ ଜଡ଼ାଇ—ମୋର ସେତେବେଳେ ପ୍ରଚଣ୍ଡ ନିଶା—ଏଇ ଦେଖ, ଘୁମାଉଛି—ଏ ରଙ୍ଗଗ୍ରରୀ—ଏଇ ।

ରଙ୍ଗଗ୍ରରୀର ଦିବ୍ୟ ନାକ ଡାକିବାର ଶବ୍ଦ ଶୁଣା'ଯାଉଛି । ଲାହିଡ଼ୀ ତିନି-ଗ୍ରରି ବାର ତାଙ୍କୁ ଚେଞ୍ଚାଇ ଡାକିଲା, କିଛି ସାଡ଼ା ଦେଲା । ନାଇଁ ଟର୍ଚ୍ଚ ଟର୍ଚ୍ଚ ଆଗେଇ ଯାଇ ତା ବାଳ ଟାଣି କହିଲା. ଏଇ ଶଳା. ରଙ୍ଗଗରୀ.........। ରଙ୍ଗଗରୀ ଧଡ଼ପଡ଼ କରି ଉଠି କହିଲା, ଓ ନିଦ ଆସି ଯାଇଥିଲା—। ଦେଖନ୍ତୁ ନା, ଖେମକା ବି ଶୋଇଯାଇଛି ।

ଶଳା ଖେମକା ନାଁରେ.ମୁଁ ରୁସ୍ତମଜୀ ପାଖରେ ଲଗାଇବି । ଏଇ (ଛାପାର ଅଯୋଗ୍ୟ) ଖେମକା—

ଖେମକା ଆଖି ଖୋଲି କହିଲା. ମୁଁ ଘୁମାଉ ନାଇଁ । ଏମିତି ଆଖିବୁଜିଚି । ଆପଣ କହନ୍ତୁ ନା, ମୁଁ ଶୁଣୁଚି । ତାପରେ ସେଇ ତାଓୟେଲ ଜଡ଼େଇଥିବା ଝିଅ—

ମୁଁ ଝପ୍‌କରି ତାଓୟେଲଟା ଖୋଲି ଦେଲି । ମୁଁ ଦେଖିଲି, ଜଗଜ୍ଜନନୀର ରୂପ, ଓଫ୍ । ବାଜି ମାରି କହିପାରେଁ ଏ ରକମ ଝିଅ କୋଟିକରେ ଗୋଟିଏ ବି ନାଇଁ । ସାରା ଦିହରେ ଛୁରିର ଧାର । ବୁକୁ ତ-ଦିଟା ସର୍ଚଲାଇଟ ଆଉ ଉର E—ଝିଅଟା ପ୍ରଥମେ କଣ କହିଲା, କହିଲା ? ଝିଅଟା ସେତେବେଳେ ମୋତେ କଣ କହିଲା ?

କିଏ ଜବାବ ଦେବ ? ତିନି ଜଣଙ୍କ ନାକ ଦେଇ ଫିଚ୍ ଫିଚ୍ ନିଜର ନିଶ୍ୱାସ । ଏକମାତ୍ର ଅରୁଣ ଜାଗିଥିଲା, ଅଳ୍ପ ଅଳ୍ପ ହସୁଥିଲା ।

ଲହିଡ଼ୀ ମୁହଁରେ ସ୍ପଷ୍ଟ ବେଦନାର ଛାୟା । ଆଖି ବିସ୍ଫାରିତ କରି କହିଲା, ସମସ୍ତେ ଶୋଇ ପଡ଼ିଲ, ୟାଁ ? ପୁରୁଷପିଲା ? ଝିଅପିଲାର ଗଳ୍ପ ଶୁଣୁ ଶୁଣୁ ଶୋଇପଡ଼େ ? ହିଉମ୍ୟାନ୍ ଇଂଟରେଷ୍ଟ ? ଶଳାଏ—

ଅରୁଣ କହିଲା, ଲହିଡ଼ୀଦା, ଆପଣ କହନ୍ତୁନା କଣ କହିଲା ଝିଅଟା ?

ଶୁଣିବୁ ! ମୋ ହ ତରେ ତାଓୟେଲ, ଝିଅଟା ବଂକା ହସହସି କହିଲା, ମୋ ପିଠିଟା ଭିଜା, ପୋଛି ଦିଅ । ମିଁ ସେଠୁ—ଧ୍ୟାତ୍ ଭଲ୍ଲାଗେନା । ତିନି ତିନିଟା ମଇଁଷିର ନାକ ଡକା—ୟା ମଧ୍ୟରେ ଏ ସବୁ ଗଳ୍ପ ହୁଏ ? ଗ୍ଲ, ଉଠି ପଡ଼ିବା, ଟିକିଏ ଘୂରି ଆସିବା ।

କୁଆଡ଼େ ଆଉ ଯିବେ ଏଇ ଖରରେ । ବସନ୍ତୁ ନା । ଲହିଡ଼ୀଦା, ଆପଣଂକ ଜନ୍ମ ହୋଇଥିଲା କେଉଁଠି ?

'ଏଲ୍‌ହାବାଦରେ ମୋ ବାବା ଏଠି ପ୍ରଫେସର ଥିଲେ । କାହିଁକି, ସେଥିରେ ତୋର କଣ ଦରକାର ?

ଏମିତି ପଚାରିଲି ।

ଏଇ ହୁଇସ୍କିର ବୋତଲଟା ଇଆଡ଼କୁ ନେଇ ଆ ତ ! ଆଚ୍ଛା, ଥାଉ, ଆଉ ଖାଇବି ନାହିଁ । ଭଲାଗେନା ଏଇନା କଣ କରିବା କହତ ।

ଆପଣ ବି ଶୋଇ ପଡ଼ନ୍ତୁ ନା ।

ଦିପହର ଶେଷ ହେବା ଉପରେ, ଶୋଇବି ? ଧୁତ୍ । ତା ଅପେକ୍ଷା ଘୁଲି-ଗଲେ ବରଂ ହୋଇଥାନ୍ତା ଦେଖୁଚି—ଏଇ କେତେ ଗୁଡ଼ାଏ ଘୁଂଘୁଡ଼ିମରା ମଈଷିଂକ ସଙ୍ଗରେ ରହିବା—ତୁ ଏଇନା କଣ କରିବୁ ?

କିଛି ନାହିଁ । ମୁଁ ଏଠି ଚୁପଚାପ ବସି ରହିବି । ମୋର ଅନେକ କଥା ମନେ ପଡିଲା ଏଠିକି ଆସି......

କି କଥା ? ପ୍ରେମିକା—

ନା ନା ମୁଁ ଜନ୍ମ ହୋଇଥିଲି ପୂର୍ବ ବଙ୍ଗରେ । ବାଂଲା ଦେଶରେ ସେଇ ପଚାଶର ମନ୍ୱନ୍ତର ବର୍ଷର କଥା । ୧୯୪୩ ସାଲରେ-ମୁଁ ପୂର୍ବବଙ୍ଗରେଇ ଥିଲି । ସେଇ ସବୁ ଦିନର କଥା ମନେ ପଡ଼ୁଚି ହଠାତ୍— ।

ସେତେବେଳେ ତ ତୁ ବଚ୍ଚା ଥିଲୁ ।

ହଁ । ମୋର ଖୁବ ପେଟର ବେମାରି ଥିଲା । କ୍ଷୁଧା ବି ପାଉଥିଲା ସବୁ ସମୟରେ । ସାରାଦିନ ଖାଇବି—ଖାଇବି କରୁଥିଲି ଆଉ କାଂଦୁଥିଲି । ଘରର ଲୋକଙ୍କୁ ଖୁବ୍ କଷ୍ଟ ଦେଇଛି ।

ଆ ମର । ......ହଠାତ୍ ଏଠିକି ଆସି ତୋର ସେ ସବୁ କଥା ମନେ ପଡ଼ୁଚି କାହିଁକି ?

ବାବା କଲିକତାରେ ମାଷ୍ଟାରି କରୁଥିଲେ । ସେ ଅମଳର ବ୍ୟାପାର ତ ଜାଣନ୍ତି, ବାବା ମାସକୁ ମାସ କୋଡ଼ିଏ ଟଂକା କରି ପଠାନ୍ତି, ସେତେବେଳେ ପୂର୍ବ ବଙ୍ଗଳାରେ ଆମ ଗାଁରେ ଚାଉଳ ମହଣ ଛପନ ଟଂକା । ଘରେ ପାଂଚ ଜଣ ଲୋକ ' ସାରା ଦିନରେ ଥରେ ମାଣ୍ଡ ଭାତ ଆଉ ଫେଣ ମିଶାଇ ଖାଇବା ଜୁଟୁଥିଲା । ଆଉ ଆଳୁ ସିଝା । ପକେଟରେ ଆଳୁ ସିଝା ରଖୁଥିଲି ସବୁବେଳେ । ସେତେବେଳେ

କ୍ଲାସ୍ ଫୋର୍‌ରେ ପଢ଼ୁଥିଛି । ଇସ୍କୁଲକୁ ଯାଇ ମଧ୍ୟ ପକେଟରୁ ସିଝା ଆଳୁ ବାହାର କରି ଖାଉଥିଲି ।

କ୍ଲାସରେ ସବୁ ପିଲ ଘରୁ ସିଝା ଆଳୁ ଆଣନ୍ତି-ବେଂଚ ଉପରେ ଲୁଣ—ମୋର ସହ୍ୟ ହେଉ ନ ଥିଲ । ପେଟର ବେମାରିର ରୋଗୀ ତ, ପେଶଭାତ ସହ୍ୟ ହେଉ ନଥିଲ । ତଥାପି କ୍ଷୁଧା, ମାଙ୍କୁ ଜଳାଉଥିଲି । ମା ଖାଇ ବସିଲେ ତାଙ୍କ ଖାଇବା ଛଡ଼ାଇ ନେଇ ଖାଉଥିଲି ।

ଲାହିଡ଼ୀ ଅକାରଣରେ ମୁହଁ ବଙ୍କାଇ ବସିଲା । କହିବାକୁ ଲାଗିଲା ! ଲାହିଡ଼ୀ ସେଠୁ ଉଠି ବାରାଣ୍ଡା କୋଣକୁ ଚାଲିଗଲା । ଅନ୍ୟ ଆଡକୁ ଚାହିଁ କହିଲା, ବୁଝିଛି ତୋ ମା ବଂଚି ନାହାନ୍ତି ନା !

ନା ମୋର ମା ସେଇ ବର୍ଷ ଟି. ବି. ରେ. ମରିଯାନ୍ତି । ରାକ୍ଷସର କ୍ଷୁଧା ଥିଲା ମୋର । ପେଟରେ କିଛି ସହ୍ୟ ହେଉ ନ ଥିଲା । ତଥାପି ମାଙ୍କ ଖାଇବା ଛଡ଼ାଇ ଖାଉଥିଲି । ମା କାହାକୁ କିଛି ନ କହି ରୋଜ୍ ନଖାଇ ରହୁଥିଲେ । ସେଇ ଦିନଠୁ ଟି, ବି: ହୁଏ । ସେତେବେଳେ କିନ୍ତୁ ବୁଝି ନଥିଲି । ବର୍ତମାନ ସବୁ ମନେ ପଡୁଚି । କାଲି ଲଙ୍ଗରଖାନାର ଲାଇନ୍ ଦେଖି ମୋତେ କିମିତିକା ଲଗିଲ । ଟିକିଏ ମଜା ବି ଲାଗିଲ କହିବାକୁ ଗଲେ । ମନେ ହେଲ, କି ଆଶ୍ଚର୍ଯ୍ୟଭାବରେ, ମୁଁ ତ ଠିକ୍ ବଂଚି ରହିଚି ।

ଲହିଡ଼ୀ ହୁଙ୍କାର ଦେଇ କହିଲ, ମଜା ଲାଗିଲ ମାନେ ? ଏଟା କଣ ମଜାର ବ୍ୟାପାର ?

ଅରୁଣ ସେଇ ରକମ ଦୁର୍ବୋଧ୍ୟ ହସ ହସି କହିଲା, ହଁ, ସେଇ ପଚାଶର ଦୁର୍ଭିକ୍ଷରେ ମୁଁ ବି ତ ମରି ଯାଇ ପାରିଥାନ୍ତି । ମରିନି ମୋ ମାଙ୍କୁ ମାରି ପକାଇ ମୁଁ ବଂଚିଛି । ବଂଚି ରହିବାଟା ଗୋଟାଏ ମଜାର ବ୍ୟାପାର ନା !

ଲାହିଡ଼ୀ ସିଗାରେଟର ଶେଷ ଟୁକୁରଟା ଆଙ୍ଗୁଠରେ ଦୂରକୁ ଫିଙ୍ଗି ଦେଲା । ପ୍ୟାଣ୍ଟ ପକେଟରୁ ଖୁଚୁରା ପଇସାଗୁଡାକ ନେଇ ଝଣ ଝଣ କଲା । ଗୋଟାଏ ହାତ ରଖିଲା ମୁଣ୍ଡ ବାଳରେ । ହଠାତ୍ ଲମ୍ଫ ମାରି ବାରଣ୍ଡାରୁ ଓହ୍ଲାଇ ପଡ଼ିଲା ତଳକୁ, ଗୋଟାଏ ଫୁଲ ଛିଣ୍ଡାଇଲା । ଚେଞ୍ଚେଇ କହିଲା, ଯା ଅରୁଣ, ତୁ ଘରକୁ ଯା— କିଛି କ୍ଷଣ ଘର ଅନ୍ଧକାର କରି ଶୋଇ ପଡ଼ ବରଂ । ଭଲ ଲାଗିବ ।

ଅରୁଣ ଆଖି ଦେଇ ଲାହିଡ଼ୀର ଗତି ଅନୁସରଣ କରୁଥିଲା । ଜବାବ ଦେଲା, ନା ଠିକ୍ ଅଛି, ଏଇଠି ଖୁବ୍ ଭଲ ଲାଗୁଛି ।

ଲାହିଡ଼ୀ ଆଗେଇ ଗଲା ଇଂଦାର (କୂଅ) ଆଡ଼କୁ । ଗୋଟିଏ ଝିଅ ସଦ୍ୟ କଳସୀରେ ପାଣ ଭରି ଫେରୁଚି, ତାକୁ କହିଲା, ଦେ ତ ମାଈଜିନ୍, ଟିକିଏ ପାଣି ଦେ, ମୁହଁଟା ଧୋଇ ନିଏଁ ।

ଝିଅଟା ଟିକିଏ ଥତମତ ଖାଇ ଛିଡା ହେଲା । ଅନାଇଲା ଲାହଡ଼ୀର ନିଶାଗ୍ରସ୍ତ ଲାଲ ଚକ୍ଷୁ ଆଡ଼କୁ । ତା'ପରେ କାଖରୁ କଳସୀଟା ବଙ୍କାଇ ଢାଳି ଦେଲା କିଛି ଜଳ । ଅଞ୍ଜଳି ପାତି ଟଳମଳ ଥଣ୍ଡାଜଳ ନେଇ ଲାହିଡୀ ଝାମଟା ମାରି ତାର ଚଶମା-ଖୋଲା ମୁହଁଟାକୁ ଧୋଇ ନେଲା । ପୁଣି ମାଗିନେଇ ଆଉ କିଛି ପାଣି ପିଇ ବି ଦେଲା । ତା'ପରେ ଝିଅଟିକୁ କହିଲା, ଆ, ମୁଁ ତୋତେ ପାଣି ଭରି ଦେଉଛି ।

ଅରଦଳୀକୁ ହଟିଯିବାକୁ କହି କହିଲା, ଠିକ୍ ହ୍ୟାୟ, ତୁମ୍ ଯାଓ । ମୁଁଇ ଏ ସମସ୍ତଙ୍କୁ ପାଣି ଟେକି ଦେବି ।

ଉଂକି ମାରି ଦେଖିଲା, କୂଅର ଅନେକ ତଳେ ଜଳ, ତା ହେଉ, ସରିବ ନାଇଁ ।

# ବଂଶବାପାଇଁ

## ପ୍ରଫୁଲ୍ଲ ରାୟ

ମାଘ ମାସ ଶେଷ ହୋଇ ଆସିଲା । ତଥାପି ଶୀତ ଯିବାର ନାଁ ଧରୁ ନାହିଁ । ତା ଉପରେ ଆଜି ସକାଳଠାରୁ ଆକାଶର ଏ-ପାଖରେ ସେ-ପାଖରେ ପଥର ଢାଲୁ ପରି ମେଘ ଝୁଲି ରହିଛି । ମଝିରେ ମଝିରେ ଟିକିଏ ଅଧେ ଖରା ଦେଖା ଦେଉଛି , ମେଘାଛନ୍ନ ଭରୀ ଆକାଶଟାକୁ ଅଗ୍ନନକ ଚମକ ଲଗାଇ ଦେଇ, ପରକ୍ଷଣରେ କିନ୍ତୁ ତାହା ମଉଳି ଯାଉଛି ।

ବିଷ୍ଣୁପଦ ଯେତେବେଳେ ବଡ଼ ମାଠର ଉତ୍ତର ଦିଗରେ ପହଁଚିଲା, ଶୀତ ଦିନ ସରି ଆସିଲାଣି । ଗଛ ବୃକ୍ଷର ଛାଇ ଲମ୍ବା ହେବାକୁ ଆରମ୍ଭ କରିଛି ।

ବିଷ୍ଣୁପଦର ବୟସ ପଚାଶର ପାଖାପାଖି । ପୁଆ ପରି ମୋଟା ନାକଟାର ଦୁଇପଟେ ଘୋଳିଆ ଆଖି ଭ୍ରୁ ନାହିଁ କହିଲେ ଚଳେ । ଲମ୍ବା ମୋଟା ଓଠ ତଳକୁ ଝୁଲି ପଡ଼ିଛି । ଗଳାଟା ଭଙ୍ଗା । ଅସ୍ୱାଭାବିକ ଡେଙ୍ଗା । ଦେହରେ ଖସ୍ ଖସ୍ କଳା ଚମଡ଼ା ଉପରେ ଖଇ ଉଡ଼ୁଚି । ସବୁ ମିଳାଇ ଗୋଟାଏ ବାଜେ ପୋଡ଼ା ତାଳଗଛ ଯେମିତି । ଲୋକଟାର ସମସ୍ତ ଦେହରେ ମୋଟା ଚଉଡ଼ା ହାଡ ଗୁଡ଼ାକ ଖାଲି । ଏଇ ଠାଟରେ ଯଦି ଟିକିଏ ମାଉଁସ ଲାଗନ୍ତା ବିଷ୍ଣୁପଦ ପାହାଡ଼ ପରି ପ୍ରକାଣ୍ଡ ବଳଶାଳୀ ମଣିଷ ହୋଇ ଉଠି ପାରନ୍ତା ।

ଆଛାଦନ କହିଲେ ତା ଅଣ୍ଟାରେ ମଇଳା ଛିଣ୍ଡା ନେଙ୍ଗୁଟି ଆଉ ହଜାର ତାଳି ପକା ଚିତ୍ର-ବିଚିତ୍ର ଜାମା । ମୁଣ୍ଡରେ ଗାମୁଛା ବନ୍ଧା । ଏହା ଛଡ଼ା କାନ୍ଧରେ ଗୋଟାଏ ଟାଙ୍ଗିଆ ରହିଛି ବିଷ୍ଣୁର । ଅଣ୍ଟାରେ ଧାରୁଆ ଦାଆ ଗୁଞ୍ଜା ।

ଆଜିକି ତିନି ଦିନ ହେଲା କାମ ନାହିଁ ବିଷ୍ଣୁପଦର । କାମ ନାହିଁ, ଫଳରେ ରୋଜଗାର ବି ନାହିଁ । ତା'ପରି ଭୂମିହୀନ ଦିନ-ମଜୁରିଆ ଘରେ କାଣ୍ଡି କାଣ୍ଡି ସୁନା ଦାନା ମହଜୁତ ନାହିଁ ଯେ ବସି ବସି ଖାଇ ପାରିବ ।

ଦି ମୁଠି ଦାନା ଯାହା ଚାଉଳ ଟାଉଳ ଥିଲା ତାହା କାଲି ପର୍ଯ୍ୟନ୍ତ ଗଲା ।

ଆଜି ଯଦି କିଛି ଯୁଟେଇ ପାରେ ତେବେ ପିଲାଙ୍କ ଖାଇ ପାରିବେ । ନହେଲେ ଉପାସ ।

ନିଦରୁ ଉଠି ହିଁ କାମ ଖୋଜିବାକୁ ବାହାରି ପଡ଼ିଥିଲା ବିଷ୍ଣୁପଦ । କିନ୍ତୁ କାମ କାହିଁ ? ଘୂରି ଘୂରି ସେ ଯେତେବେଳେ କ୍ଳାନ୍ତ ଓ ହତାସ ସେତେବେଳେ ଏଇ ଉତ୍ତରର ମାଠଟା କଥା ମନେ ପଡିଲା ତାର ।

ଉତ୍ତରର ଏଇ ମାଠ ଅନେକ ସମୟରେ ବିଷ୍ଣୁପଦକୁ ବଞ୍ଚାଇଛି । ଏଠୁ କେବେ ଫଳ ମୂଳ, କେବେ ଶାଗପତ୍ର, କେବେ ବା ପଖୀଟାଏ, କେଉଁଥର ଗେଣ୍ଡା କଇଁଚ, କେଉଁଥର ଖରଗୋଶ ନେଇଯାଇ ପିଲାକବିଲାଙ୍କର ପ୍ରାଣରକ୍ଷା କରିଛି ସିଏ । ଆଜି ବି ବହୁତ ଆଶା କରି ଆସିଛି ।

ମାଠରେ ପହଁଚି କିଛିକ୍ଷଣ ଛିଡ଼ା ହୋଇ ରହିଲା ବିଷ୍ଣୁପଦ । ଜାଗାଟା ନିର୍ଜନ । ଡାହାଣ-ବାଆଁ ଯେଉଁ ଆଡେ ଦୃଷ୍ଟି ଯାଏ ଘାସଭରା ଜମି । ଏଇ ଶୀତ ଘାସ ଅବଶ୍ୟ ହଳୀବ ସତେଜ ଉଜ୍ଜ୍ୱଳ ନାଇଁ, ବିବର୍ଣ୍ଣ ଫିକାଳିଆ ହୋଇ ଯାଇଛି । ମଝିରେ ମଝିରେ ଝାଡ଼, ଝୋପ, ଗଛ, ବନ୍ଦା ! ମାଠ ମଝିରେ ଗୋଟାଏ ଖାଲ ବି ରହିଛି ।

ଗ୍ଳୁ ଗ୍ଳୁ ସେ ଝୋପ ବା ଗଛ ଯାହା କିଛି ଆଖିରେ ପଡ଼ିଛି ସବୁ ଦେଖି ନେଉଛି ବିଷ୍ଣୁପଦ ତୀକ୍ଷଣ ଦୃଷ୍ଟିରେ । ଘାସ ଜମିରେ ତାର ଯାହା କାମ୍ୟ ସେମିତି କିଛି ଆଖିରେ ପଡୁନାଇଁ । ଅନେକ ଗ୍ଳିଲା ପରେ ହଠାତ୍ ମାଠ ମଝିରେ ଥିବା ଖାଲଟା ଆଡ଼କୁ ନଜର ଯିବାମାତ୍ରକେ ଥମି ଗଲା ବିଷ୍ଣୁପଦ । ଖାଲଧାରରେ ଗୋଟାଏ ତିରିଲା ଲୋକ ଛିଡା ହୋଇ ରହିଚି । ଦଶ ପାଦ ଆଗେଇଲେଇ ତାକୁ ଧରଯାଏ । ଏତେ ପାଖରେ ବୋଲି ସ୍ପଷ୍ଟ ଦେଖା ଯାଉଥିଲା । ଝିଅପିଲାଟାର ଆଖି ଭ୍ରସ୍ତ, ସନ୍ଦିଗଧର ।

ଏଇ ନିର୍ଜନ ମାଠରେ ଶୀତ ଅବେଳାରେ କୁଆଡୁ ଆଇଲା ସ୍ତ୍ରୀଲୋକଟା । ବିଷ୍ଣୁପଦ ଭବି ପାଇଲା ନାଇଁ । ବି ସେ ଅନାଇ ରହଛି । ସ୍ତ୍ରୀଲୋକଟି ବଡ଼ ଶ୍ୟାମଳା, ଗୋଲଗାଲ ଫୁଟବଲ୍‌ଟି ପରି ଗଢ଼ଣ, ବସା ନାକ; ପୁଷ୍ଟ ବୁକୁ ସ୍ୱାସ୍ଥ୍ୟ ଏତେ ଉଦ୍ଦାମ ଆଉ ଚଟପଟ ଯେ ପିନ୍ଧିଥିବା ଛୋଟ ଶାଢ଼ୀଟା ଦିହରେ ବାଗ ମାନୁ ନାଇଁ । ନା ହାତରେ ଗୋଟାଏ ବଡ଼ କଟୁରି ।

ଅନେକ କ୍ଷଣ ପରେ ବିଷ୍ଣୁପଦ ପଗ୍ଗରିଲା, "ତୁ କିଏ ଗୋ ମାଇପିପିଲା ?"

ତୀକ୍ଷ୍ଣ ଗ୍ରୂପା ଗଳାରେ ସ୍ତ୍ରୀଲୋକଟି କହିଲା, "ଯିଏ ହୁଏନା । ତୁ ଏଠୁ ଯା ଦେଖିନି ।"

"ଯା କହିଲେ ଯିବି ନାଁ କଣ ? ଏଠି ମୋର କାମ ଅଛି ।"

"କି କାମ ? "

"ହଁ ଅଛି ।" କହି ଟିକିଏ ରହିଗଲା ବିଷ୍ଣୁପଦ । "ଏଇ ନିଛାଟିଆ ମାଠରେ ଏକା ଏକା ତୁ ଆଇଚୁ ? "

ସ୍ତ୍ରୀ ଲୋକଟି କହିଲା, "ମୋର ବି କାମ ଅଛି ।"

ନିଜର ଅଜାଣତରେ ଗୋଡ଼ ବଢାଇବାକୁ ଯାଉଥିଲା ବିଷ୍ଣୁପଦ । ସ୍ତ୍ରୀ ଲୋକଟି ତୀବ୍ର କଣ୍ଠରେ କହିଲା ଚିତ୍କାର କରି; 'ଖବରଦାର ମିଣିଷି ପିଲା, ପାଦେ ବି ଆଗେଇବୁ ନାଇଁ । କୁଟୁରି ଚଲାଇ ଦେବି କିନ୍ତୁ ।'

ବିଷ୍ଣୁପଦ ଚମକି ଉଠିଲା । ଲଜ୍ଜା ହେଲା ତାର । ଲକ୍ଷ୍ୟ କଲା, ଟିକିଏ, ଆଗର ଭୟ ଆଉ ନାଇଁ ସ୍ତ୍ରୀଲୋକଟିର । ତା ଆଖିର ତାରା ଏଇଲାଗେ ଦପ୍ ଦପ୍ କରୁଚି ।

ଭୟ ଭୟରେ ବିଷ୍ଣୁପଦ କହିଲା, 'ବେଶ୍, ତୋର ଯେତେବେଳେ ଇଚ୍ଛା ନାଇଁ, ଆଗେଇବି ନାଇଁ । କିନ୍ତୁ ତୁ ମାଇପିଟା କେଉଁଠାର, କୁଆଡ଼ୁ ଏଠିକି ଆସିଲୁ ? ତା କହିବାରେ ଦୋଷ କଣ?'

କଣ ଭାବି ସ୍ତ୍ରୀଲୋକଟି ଟିକିଏ ନରମ ହେଲା, 'ମୁଁ ତାଳଡ଼ାଙ୍ଗାରେ ଥାଏ । ହୋଇ ଉତ୍ତରେ ।'......

"ସି ତ ଅନେକ ଦୂର । ପରଏ ଦ୍ଦକୋଶ ରସ୍ତା ହେବ ।'

'ହଁ ।

'ଏତେ ଦୂରରୁ ଆଇଚୁ ?'

ଦରକାର ହେଲେ ଆଇବି ନି ।'

ଦରକାରଟା କଣ କହନି ।'

ସ୍ତ୍ରୀ ଲୋକଟି କହିଲା, 'ଏତେ ଯେବେ ଶୁଣିବାର ଇଚ୍ଛା ଶୁଣ୍ । ମୁଁ ଶାଗ ପଚର ଫଳମୂଳ ପାଇଁ ଏଠିକି ଆସିଛି ।'

ବିଷ୍ଣୁପଦ ଅବାକ୍ ହୋଇଗଲା । ବିସ୍ମୟର ସ୍ୱରରେ କହିଲା, କି 'ଆଶ୍ଚର୍ଯ୍ୟ! ମୁଁ ବି ତ ସେଇଥିପାଇଁ ଆସିଛି ।

ସ୍ତ୍ରୀ ଲୋକଟିର ଆଖିର ତାରା ପୁଣି ଦପ୍ ଦପ୍ କରି ଉଠିଲା । 'ମିଛ କଥା ।'

'ସତ କହୁଚି, ମିଛ କଥା ନୁହେଁ-ବିଷ୍ଣୁପଦ ଆକୁଳ ଭାବରେ କହିଲା । ଭଗବାନଙ୍କ ରାଣ । ସକାଳୁ ପିଲାକବିଲା ଉପାସ ଅଛନ୍ତି । ତିନି ଦିନ ହେଲା ଗୋଟାଏ ପଇସା ରୋଜଗାର ନାଇଁ । ଏଇ ମାଠରୁ କିଛି ନ ନେଇ ଘରକୁ ଫେରିଲେ ପିଲାଗୁଡ଼ାକ ଆଉ ବଂଚିବେ ନାଇଁ ।'

ବିଷ୍ଣୁପଦର କଂଠସ୍ୱର ଶୁଣ, ତାର ଆକୁଳତା ଦେଖି ବିଶ୍ୱାସ କଲା ସ୍ତ୍ରୀ ଲୋକଟି । କହିଲା, କିଛି ଖରାପ ମତଲବ ନାଇଁ ତ ତୋର ।'

'ଏଇ ଦେଖ, ଭଗବାନଙ୍କ ରାଣ ଦେଇ କହିଲି । ବେଶ୍, ପାଖକୁ ଆଗେଇ ଆସ୍ । ତୋ ଦିହ ଛୁଇଁ କହୁଛି ।'

'ଦିହ ଛୁଇଁବାକୁ ହେବ ନାଇଁ । ତା ଘର କୁଉଠି ତୋର ?'

'ପୟାରପୁରରେ–ହୋଇ ଦକ୍ଷିଣ– ।' ଦକ୍ଷିଣ ଦିଗକୁ ଆଂଗୁଠି ବଢ଼ାଇ ଦେଲା ବିଷ୍ଣୁପଦ ।

'ତୋ ଘର ବି ତ ଅନେକ ଦୂର ।'

ବଂକା ଟଙ୍କା ହଳଦିଆ ଦାନ୍ତ ବାହାର କରି ବିଷ୍ଣୁପଦ ହସିଲା । ହଁ । ଏଇ ନେ ତୁ କହିଲୁ ଦରକାର ପୁଡ଼ିଲେ ଆସିବାକୁ ହୁଏ ।

ସ୍ତ୍ରୀ ଲୋକଟି କହିଲା; ତା ସତ ।'

ବିଷ୍ଣୁପଦ କହିଲା, 'ଏତେ କଥାବାର୍ତ୍ତା ହେଲା । କିନ୍ତୁ ତ କେହି କାହାର ନାମ ଜାଣିଲୁନି । ମୋ ନାଆଁ ବିଷ୍ଣୁପଦ । ତୋର ?'

'ନିଶି ନିଶିବାଲା ।'

ଟିକିଏ ଚୁପ୍ । ତାପରେ ବିଷ୍ଣୁପଦ କହିଲା, 'ଏଟା କଥା କହିବି ଜିଅପିଲା ?'

'କଣ ?'

"ତୁ ଯାହା ତରେ (ପୋଇଁ) ଆଇଚୁ, ମୁଁ ବି ତାରି ତରେ ଆଇଚି । ଆସ୍ ନା ଦିହଣ ଯାକ ଏକାସଂଗରେ ଶାଗପତର ଫଳମୂଳ ଖୋଜିବା । ଶୀତ ଦିନ, ଏଇନା ସଂଧିଆ ହୋଇଯିବ । ତୁ ଯୁବତୀ ତିରିଲୋକଟା ଏକା ଏକା ମାଠରେ ବୁଲିବା ଠିକ୍ ନୁହେଁ ।

କିଛିକ୍ଷଣ ଇତସ୍ତତ କରି ନିଶି କହିଲା, "ସେଇ ଭଲ । ଚାଲ ତୋ ସଙ୍ଗରେଇ

ଯାଏଁ ।" ସେ ନିଜେ ବିଷ୍ଣୁପଦ ପାଖକୁ ଆଗେଇ ଆସିଲା ।

ତା'ପରେ ମାଠ ଭିତରେ ବୁଲି ବୁଲି ତିନିଜଣ ଗୋଟାଏ ଅଲିଖିତ ଚୁକ୍ତି କରି ପକାଇଲେ । ଏଠି ଯାହା ମିଳିବ ସେମାନେ ସମାନ ଦୁଇ ଭାଗ କରି ନେବେ ।

ଏଇ ମାଠର ପ୍ରତିଟି ଝୋପ ଝାଡ଼, ପ୍ରତିଟି ଖଣାଖନ୍ଦ ବିଷ୍ଣୁପଦ ଆଉ ନିଶି ଖୋଜିବାକୁ ଲାଗିଲେ । କିନ୍ତୁ ଗୋଟା ଗ୍ଧରି ଛୋଟ ଛୋଟ କଇଚ ଛଡ଼ା କିଛି ମିଳିଲା ନାହିଁ । ଏଗୁଡ଼ାଙ୍କର ଶକ୍ତ ଖୋଳ ଛଡ଼ାଇଲେ ଆଉ କେତେଟିକେ ବା ମାଂସ ବାହାରିବ ?

ମୁହିଁ ବୁଜି ସେମାନେ ଘୁରୁ ନ ଥିଲେ ଖାଦ୍ୟ ସନ୍ଧାନରେ । କେତେବେଳେ ନିଶି ପଗରୁଥିଲା, ଘରେ ତୋର କିଏ କିଏ ଅଛନ୍ତି ରେ ମଦିପିଲା ? ଏଇ ଅଳ୍ପ ସମୟ ମଧ୍ୟରେ ବିଷ୍ଣୁପଦ ସମ୍ବନ୍ଧରେ ତା ମନରୁ ଭୟ ଓ ସନ୍ଦେହ ଯାଇଚି । ତାକୁ ମୋଟା ମୋଟି ବିଶ୍ୱାସ କରି ପାରିଚି ନିଶି ।

ବିଷ୍ଣୁପଦ କହେ, "ପିଲାଝିଲା ଆଉ ସ୍ତ୍ରୀ ! '

'କେତୁଟା ପିଲାଝିଲା ?"

'ତିନିଟା । ଦିଟା ମରଦ ପିଲା, ଗୋଟାଏ ଝିଅ ।'

'ତାହେଲେ ପାଞ୍ଚ ଜଣର ସୋମସାର (ସଂସାର ) ତୋର ?

'ହଁ ।'

'କଣ କରୁ ତୁ ?'

'ମଜୁରୀ ଖଟେ । '

'ସେଥିରେ ଚଳେ ? '

'ଚଳେ ଆଉ କୁଆଡ଼ୁ ? '.ପଗଯେ ଦିନକୁ ଅଧପେଟେ ଖାଏ, ନୋହେଲେ ଉପାସ ।'

ଟିକିଏ ଭାବି ନିଶି କହେ, ଜମିଜମା ଅଛି ?'

ବିଷ୍ଣୁପଦ କହେ, ' ଜମି କେଉଁଠୁ ପାଇବି ଲୋ ?'

ଖାଲି ଗତର ଉପରେ ଭରସା କରି ତାହାଲେ ବଂଚିବା ?

'ହଁ ।'

'ସି ଯେ ବଡ କଷ୍ଟ ! '

'କଷ୍ଟ ହେଲେ ଆଉ କଣ କରଯିବ ?'

କେବେ ବା ବିଷ୍ଣୁପଦ ପଚାରେ, 'ମୋ କଥା ଖାଲି ଶୁଣିବୁ । ତୋ କଥା କହ ।'

ନିର୍ଶି କହେ, 'ମୋର କିଛି ନୂଆ କଥା ଅଛି ନା କଣ ! ଖଟଖ ଉପରେ ମୋର ବି ଭରସା ।'

ସି ତ କଣ ଆଉ ବୁଝି ପାରୁନି ଭବିଚୁ ?

ଠିକଇ ପାରିଚି । ମୁଁ ସେକଥା ପଚାରୁ ନାଇଁ ଲୋ ଝିଅଟିଲା ।

'ତେବେ କଣ ପଚାରୁଚ ?'

ବେଳ ଭଙ୍ଗି ସଙ୍ଗିନୀକୁ ଥରେ ଦେଖିନେଲା ବିଷ୍ଣୁପଦ । ତାପରେ କହିଲା, ଶଙ୍ଖା ସିନ୍ଦୂର ଦେଖ ନାଇଁତ ।' ଝିଅ ପିଲାର କଣ ଏପର୍ଯ୍ୟନ୍ତ (ବାହା) ହୋଇ ନାଇଁ ?'

ଅନ୍ୟମନସ୍କ ଭବେ ନିର୍ଶି କହିଲା' ହୋଇଥିଲା । ।'

'ତା ହେଲେ ?'

ବିଷ୍ଣୁପଦ କଣ ଜାଣିବାକୁ ଚାହେଁ ନିର୍ଶି ବୁଝିପାରିଲା, ବାହା ହୋଇଥିଲା । ଅଥଚ ତା ହାତରେ ଶଙ୍ଖା ନାଇଁକି କପାଳରେ ସିନ୍ଦୂର ନାଇଁ । ତେଣୁ ବୋଧହୁଏ ବିଷ୍ଣୁପଦର ଧନ୍ଦା ଲାଗିଛି । ଭରି ବିଷ ଗଳାରେ ନିର୍ଶି କହିଲା, 'ମୋ ମରଦଟା ନାଇଁ ।

ନିର୍ଶି ଉତ୍ତର ଦେଲା ନାଇଁ ।

ବିଷ୍ଣୁପଦ ପୁଣି ପଚାରିଲା, ତା କଣ ହୋଇଥିଲା ? ରୋଗ–ବେୟାରମ ?

ନିର୍ଶି କହିଲା, 'ନା' । ଜୋତଦାରମାନଙ୍କ ସଙ୍ଗେ ଲଢ଼ାଇ କରିବାକୁ ଯାଇ ମରିଚି । ପେଟରେ ବର୍ଚ୍ଛା ଭୁଷି ଦେଇଥିଲେ ସେମାନେ, ନାହି ବୁଜୁଳି ସବୁ ବାହାରି ଆସିଥିଲା । ତା ଆଖିରେ ଦେଖି ହେବ ନାଇଁ ଗୋ ।' କହୁ କହୁ ହଠାତ୍ ଏଇ ଜନହୀନ ସ୍ତବ୍ଧ ପ୍ରାନ୍ତରକୁ ଚମକାଇ ଦେଇ ଗଳା ଫଟାଇ ବାନ୍ଦି ଉଠଲା । 'ଆ ବାବା ଗୋ, ମୋର ଏତେ ବଡ଼ ଜୁଆନ ମରଦଟାକୁ ସେମାନେ ମାରି ଦେଲେ ଗୋ ।'

ବିଷ୍ଣୁପଦ ଟିକିଏ ଦ୍ୱିଧା କଲା । ତାପରେ ନିର୍ଶିର ରକ୍ଷ ବାଳରେ ହାତ ବୁଲାଇ ସାନ୍ତ୍ୱନା ଦେବାକୁ ଲାଗିଲା; କାଂଦନା ଝିଅଟିଲା, କାଂଦ ନା । କ୍ଷେତି (କ୍ଷତି); ଯା ହବାର ତା ହୋଇ ଯାଇଛି ।'

ଅନେକକ୍ଷଣ ପରେ ଶୋକୋଚ୍ଛ୍ୱାସ ଶାନ୍ତ ହେବା ପରେ ବିଷ୍ଣୁପଦ ପଚାରିଲା, ପୁଅଝିଅ କେଟୁଟା ଗୋ ତୋର ?'

ଅସ୍ପଷ୍ଟ ଗଳାରେ ନିଶି କହିଲା, 'ନାଇଁ ।'

ତେବେ ରକ୍ଷା ।'

ନିଶି ଚୁପ୍ କରି ରହିଲା ।

ବିଷ୍ଣୁପଦ ପଣି ପଚାରିଲା, 'ସୋମସାରେ (ସଂସାରେ) ଆଉ କିଏ ଅଛି ?

ବୁଢ଼ୀ ଶାଶୁ ଅଛି । ଦିନ-ରାତି ଆଁ କରି ଥାଏ । ବଡ଼ କ୍ଷୁଧା ବୁଢ଼ୀର । ଏତେ ବଡ଼ ପାହାଡ଼ ପରି ପୁଅଟାକୁ ଖାଇଲା, ତଥାପି କ୍ଷୁଧା ମେଂଟେନା । ଯାର ଆଁ ବୁଜୁ ବୁଜୁ ମୁଁ ବି ଦିନେ ସାବାଡ଼ ହୋଇଯିବି ।'

ଜମିବାଡ଼ି ଅଛି ?'

ଥିଲେ କଣ ଆଉ ଶାଗ ଗଣ୍ଡାଏ ପାଇଁ ମାଠଘାଟରେ ଘୂରି ବୁଲୁଚି ?'

ଦି'ଜଣ ଯାକ ଖୋଜୁଛନ୍ତି । ଖୋଜି ଖୋଜି ଚାଲିଛନ୍ତି । କିନ୍ତୁ ଜନନୀଟି ପରି ଏହି ବିଶାଳ ମାଠ ଆଜି ବଡ଼ କୃପଣ ବଡ଼ ନିର୍ଦ୍ଦୟ । ଘରିଟା କଇଁଚ ପରେ ଗୋଟା ପାଂଚଟା ପାଚିଲା ବେଲ ଛଡ଼ା ଏ ପର୍ଯ୍ୟନ୍ତ ଆଉ କିଛି ମିଳିନାଇଁ । ଅଧା ଅଧି କଲେ ଭାଗରେ କେତେ ଟିକିଏ ବା ପଡ଼ିବ ?

ଇଆଡ଼େ ଶୀତର ଅପରାହ୍ନ ଆହୁରି ଗଡ଼ି ଗଲାଣି । ଖରା-ଟରା ଏବେ ଆଉ ନାଇଁ । ସୂର୍ଯ୍ୟଟା ପଶ୍ଚିମ ଦିଗର ଗଛପତ୍ର ଆଡୁଆଳରେ କେତେବେଳେ ଟୁବ୍ କରି ବୁଡ଼ି ଯାଇଛି ବିଷ୍ଣୁପଦ ବା ନିଶି କେହି ଟେର୍ ପାଇ ନାହାନ୍ତି । ଦ୍ରୁତ ଗତରେ ଚାରିଆଡ଼ଟା ବେଶ ଝାପ୍ସା ହୋଇ ଉଠୁଛି ।

ସକାଳୁ ଆକାଶର ଏଠି ସେଠି ମେଘର ଗୁଙ୍ଗଡ଼ିଗୁଡ଼ାକ ଝୁଲୁଥିଲା । ବର୍ତ୍ତମାନ ସେ ସବୁ ଆହୁରି ତଳକୁ ନଇଁ ଆସିଲାଣି । ଟୋପା ଟୋପା ବୃଷ୍ଟି ବି ପଡ଼ୁଚି । ତାପରେ କନକନିଆ ଉତ୍ତର ପବନ । ଚମଡ଼ା ମାଂସ ଭେଦ କରି ବତାସଟା ହାଡ଼ରେ ଯାଇ ବିନ୍ଧୁଛି । ଥଣ୍ଡା ତୃଣଭୂମିରୁ ହିମ ଉଠି ଆସୁଥିଲା ।

ଡାହାଣ ପାଖରୁ ନିଶି କହିଲା, 'ଆଜି ବଡ଼ ଶୀତନୁହେଁ ?'

ଅନ୍ୟମନସ୍କ ଭାବେ ବିଷ୍ଣୁପଦ ଉତ୍ତର ଦେଲା, 'ହଁ' ।

ପୁଣି ବୃଷ୍ଟି ବି ଆରମ୍ଭ ହେଲା ।'

'ହୁଁ' ।

ବିଷ୍ଣୁପଦ ନିଶି କଥାର ଉତ୍ତର ଦେଇ ଯାଉଛି ଠିକ୍ କିନ୍ତୁ ମନେ ମନେ ଅନ୍ୟ କଥା ଭାବୁଛି ଘରର ଭାଗେ କଇଁଚ ଆଉ ଅଢେଇଟା ବେଲ ଘରକୁ ନେଇ କାହା

ମୁହଁରେ ଦେବ ? ସେ କହିଲ, 'ଆଉ କିଛି ନ ହେଲେ ତ ଚଳିବ ନାଇଁ ଝିଅପିଲ । ମୋ ସୋମସାରେ (ସଂସାରେ) ପୁଣି ପାଂଚଟା ମୁହଁ ।'

ନିଶି କହିଲା, 'ଠିକ୍ କଥା । କିନ୍ତୁ ସଂଜ ହୋଇ ଆସିଲଣି । ବର୍ଷା ବି ପଡିବାକୁ ଲାଗିଲାଣି । ଏଇନା ଆଉ କଣ କିଛି ମିଳିବ ?' ତାର ଆଖିରେ ମୁହଁରେ ଗଳାରେ ସଂଦେହ ।

'ଦେଖେଁ'—କହୁ କହୁ ବିଷ୍ଣୁପଦର ଆଖି ତୀକ୍ଷ୍ଣ ହୋଇ ଉଠିଲା । ସାମନାକୁ ଆଂଗୁଠି ବଢ଼ାଇ ଇଷତ୍ ଉତ୍ତେଜିତ ଗଳାରେ ପଗ୍ଭରିଲା, 'ଏଇଟା କଣ ଗୋ ?'

ନିଶି ସିଆଡ଼କୁ ଅନାଇ କହିଲା, 'ଶୁଅର୍' (ଘୁଷୁରି) ମନେ ହେଉଛି ।

'ହଁ' ।

'ଜାନୋୟାରଟା ଏଠି କଣ କରୁଚି ?'

ଭଲ କରି ଲକ୍ଷ୍ୟ କଲ ବିଷ୍ଣୁପଦ । ତାପରେ କହିଲ, 'ମାଟି ତାଡ଼ୁଛି ।'

ନିଶି ଜଣାଇଲ, 'ଶୁଅରଟା ଯେତେବେଳେ ମାଟି ତାଡ଼ୁଚି ନିଶ୍ଚୟ କିଛି ପାଇଛି । ମାଟି ତଳେ କିଛି ନ ପାଇଲେ ଅକାରଣରେ ଏମାନେ ତାଡ଼ନ୍ତି ନାଇଁ ।

ବିଷ୍ଣୁପଦ କହିଲ, 'ଗ୍ଭଲ ନା ଆଗେଇ ଦେଖିବା ।' ତା ମୁଣ୍ଡରେ ବିଦ୍ୟୁତ୍ ଝଲକ ପରି ଆଉ ଗୋଟାଏ କଥା ଖେଳି ଯାଉଛି । କିଛି ଯେତେବେଳେ ନ ମିଳିଲ ଏଇ ଶୁଅରଟାକୁ ହତ୍ୟା କରିବ ବିଷ୍ଣୁପଦ । ଜାନୋୟାରଟାର ଓଜନ ଅତି କମରେ ମହଣେ ହେବ । ନିଶିବାଛାକୁ ଅଧେ ଭାଗ ଦେଇ ଯାହା ମିଳିବ, ତିନି ଗ୍ଭରି ଦିନ ସେମାନେ ପାଂଚ ପ୍ରାଣୀ ଫିଙ୍ଗି—ଫୋପାଡ଼ି ବି ତାହା ଶେଷ କରି ପାରିବେ ନାଇଁ । ତିନି ଗ୍ଭରି ଦିନ ବଂଚି ରହି ପାରିଲେ ପର କଥା ପରେ ଚିନ୍ତା କରଯିବ ।

ମନ କଥାଟା ନିଶିକୁ ଜଣାଇବାରୁ ସେ ଭୀତ ସ୍ୱରରେ କହିଲ, 'କଥାଟା ଭଲ । କିନ୍ତୁ—'

'କଣ ?'

'ଏତେ ବଡ଼ ଧୁମୁସା ଜାହାନ୍ନୋହର (ଜାନୋୟାର) ସଙ୍ଗରେ ପାରିବୁ ନି ମିଣିପି ପିଲ । ତା' ଉପରେ ଶୁଅରଟା ଯଦି ଦନ୍ତ ହୁଏ, ରକ୍ଷା ପାଇବୁ ନାଇଁ ।

ବିଷ୍ଣୁପଦ କହିଲ 'ମୋର ଟାଙ୍ଗିଆ ଅଛି, ଦା ଅଛି ।'

ନିଶି କହିଲ, 'ଟାଙ୍ଗିଆ ଦା ଦେଇ ଏ ଯମଟାକୁ ଘାଇଆ କରି ପାରିବୁ ?

ବିଷ୍ଣୁପଦ ମାମୁଲି ଶବ୍ଦରେ କହିଲ, 'ପାରିଲେ ପାରିବି, ନୋହିଲେ ନାଇଁ ।

ତେବେ ଥରେ ଚେଷ୍ଟା କରି ଦେଖିବି । ନ ଖାଇ ମରିବା ଅପେକ୍ଷା ଶୂଅର ସଙ୍ଗରେ ଗୋଟାଏ ଲଢ଼ାଇ ଦିଏଁନା ।' ନିଶିକୁ ଆଉ କିଛି ଭବିବାର ବା କହିବାର ସୁଯୋଗ ନ ଦେଇ ବିଷ୍ଣୁପଦ ଆଗେଇ ଗଲା । ନିଶି ଆଉ କଣ କରିବ ? ତା ପିଛା ନେଲା ।

ପାଖକୁ ଯାଇ ଦେଖିଲେ ଏଟା ଦନ୍ତା ନୁହି । ତଥାପି ଜଙ୍ଗଲୀ ଶୂକର । ମାଟି ତାଡ଼ି ତାଡ଼ି ଜନ୍ତୁଟା ଅନେକ ଗାଡ଼ କରି ପକାଇଛି । ଗାଡ ଭିତରକୁ ଚାହିଁ ଆଖି ଦୁଇଟା ଚକଚକ୍ ହୋଇ ଉଠ ଲା ବିଷ୍ଣୁପଦର । ଗୋଟାଏ ପ୍ରକାଣ୍ଡ ଖମଆଳୁ, ଅଧେ ତଳେ ପୋତା, ବାକୀ ଅଧକ ଉପରକୁ ବାହାରିଚି, ଦେଖାଗଲା । ଶୂଅରଟା ମାଟି ଖୋଳି ଖୋଳି ଖମ୍ବ ଆଳୁଟାକୁ ବାହାର କରୁଚି ।

ବିଷ୍ଣୁପଦ ଅନ୍ଦାଜ କଲା, ଆଳୁଟାର ଓଜନ ଖୁବ୍ କମରେ ଦଶ ସେର ହେବ । ଶୂଅରଟାକୁ ମାରି ନ ପାରିଲେ ବି ଖାଲି ଆଳୁଟା ଯଦି ମିଳେ, ତା ବି' କମ ନୁହେଁ । ମନେ ମନେ ସେ ହଠାତ୍ ଠିକ୍ କରି ପକାଇଲା, ଶୂଅର ସଙ୍ଗେ ରକ୍ତାରକ୍ତି ହୋଇ କାମ ନାହିଁ । ଏଟାକୁ ତଡ଼ି ବରଂ ଆଳୁଟାକୁ ନେବା ଭଲ ।

ପଛରୁ ଲୋଭୀ ଗଳାରେ ନିଶି କହିଉଠିଲା, 'କେତେ ବଡ଼ ଖମ୍ବ ଆଳୁ, ଦେଖୁଚୁ ମରଦପିଲା ?'

ବିଷ୍ଣୁପଦ କହିଲା, 'ହଁ ।'

ନିଜ ମନରେ ମାଟି ଖୋଳି ଯାଉଥିଲା ଶୂଅରଟା । ମଣିଷର ଆଓୟାଜରେ ଚମକି ମୁଣ୍ଡ ଟେକି ଚାହିଁଲା । ଶୂଅରର ଛୋଟ ଛୋଟ ଆଖି ଦିଇଟା ଘୋଳିଆଲାଲ । ସାରା ଦିହରେ ଆଉ ମୁହଁରେ ମାଟି ମଖା ।

ବିଷ୍ଣୁପଦ ଏଟାକୁ ତଡ଼ିବା ପାଇଁ ମୁହଁ ଭିତରୁ ଶବ୍ଦ କରି ଉଠିଲା, 'ଉର୍-ଗ-ଗ, ହଟ୍-ହଟ୍-ହୁଇ ।

ଶୂଅରଟା ଚଂକିଲା ନାହିଁ । ଏକ ଦୃଷ୍ଟିରେ ବିଷ୍ଣୁପଦ ଆଡ଼କୁ ଅନାଇ ରହିଲା । ତାର ଛୋଟ-ଛୋଟ ଆଖିରେ ସନ୍ଦେହ ଘନ ହେବାକୁ ଲାଗିଲା ।

ବିଷ୍ଣୁପଦ ପୁଣି ଶବ୍ଦ କଲା । ତା ସଙ୍ଗରେ ନିଶି ମଧ୍ୟ । କିନ୍ତୁ ଶୂଅରଟା ଚଂକୁ ନାହିଁ ।

ବିଷ୍ଣୁପଦ କହିଲା, 'ଶଳା, ଖଚ୍ଚଡ଼ ଅଛି । ହଟିବ ବୋଲି ମନେ ହୁଏନା ।'

ନିଶି କହିଲା, "ଆମେ ଖମ୍ବ ଆଳୁଟା ନେବୁଁ ବୋଲି ବୋଧେ ଟେର୍ ପାଇଛି ।'

'ତା ହବ ।' ବିଷ୍ଣୁପଦ କହିଲା, ହଲ୍ଲା କରି କିଛି ହେବ ନାଇଁ ଝିଅପିଲା । ବେଟାର ଟ ଙ୍ଗିଆ ଘେଟ ଖାଇବାକୁ ଦିହ ଶୁଳଉଛି କହି ଆଗେଇ ଯାଇ କାଂଧରୁ ଟାଙ୍ଗିଆ କାଢି ଶୁଅରଟା ବେକରେ ବସାଇଲା ଗୋଟାଏ ଘେଟ ।

ଘେଟଟା ଠିକ୍ ଭବରେ ବସି ନାଇଁ । ଶୁଅରଟା ବେକରୁ ଟିକିଏ ଛାଲ ଛିଣ୍ଡିଗଲା ମାତ୍ର । ହିଂସ୍ର କୁଟିଳ ଚକ୍ଷୁରେ ଟିକିଏ ଅନାଇ ଜନ୍ତୁଟା ହଠାତ୍ ତଡ଼ି ଆସିଲ ।

ଅଘନକ ଏମିତ ଚଡ଼ି ଆସିବ ବିଷ୍ଣୁପଦ ଓ ନିଶି କେହି ଭବି ନ ଥିଲେ । ସେମାନେ ଉର୍ଦ୍ଧ୍ୱଶ୍ୱାସରେ ଦୌଡ଼ିବାକୁ ଲଗିଲେ ।

ଅନେକ ଦୂର ତଡ଼ି ନେଇ ଶୁଅରଟା ଫେରି ଆସି ଖମ୍ବ ଆଳୁ ପାଖରେ ଯାଇ ଛିଡ଼ା ହେଲ । ବିଷ୍ଣୁପଦ ନିଶି କିନ୍ତୁ ଦବିଲେ ନାଇଁ । ଟିକିଏ ପରେ ସେମାନେ ବି ଶୁଅରଟା ପାଖକୁ ଫେରି ଆସିଲେ । ଆସିଇ ପୁଣି ଘେଟ ବସାଇଲ । ବିଷ୍ଣୁପଦ । ଏଥର ପିଠ ଉପରୁ ଅନେକଟା କଟିଗଲ । ରକ୍ତାକ୍ତ ଜାନୋଆରଟା ପୁଣି ବିଷ୍ଣୁପଦକୁ ତଡ଼ା କଲ ।

ତଡ଼ା ଖାଇ ବିଷ୍ଣୁପଦ ଓ ନିଶି ଦୂରକୁ ଘୁଞ୍ଚଗଲେ । ତାପରେ ଫେରି ଆସି ଶୁଅରଟାକୁ ଗୋଟାଏ ଗୋଟାଏ ଘେଟ ବସାନ୍ତି । ଏମିତି କିଛି କ୍ଷଣ ଗ୍ଲଲିଲ ।

ଇଆଡ଼େ ଶୀତର ସନ୍ଧ୍ୟା ଆହୁରି ନିବିଡ଼ ହୋଇଛି ଗଛ ବୃକ୍ଷ ଫାଙ୍କରେ ଛାୟା ଘନ ହୋଇ ଜମାଟ ବାନ୍ଧି ଯାଇଛି । ଟିକିଏ ଆଗରୁ ଟପ ଟପ ବର୍ଷା ପଡୁଥିଲ, ଇଲଗେ ବେଶ୍ ଜୋରରେ ପଡୁଛି । ତା ସଙ୍ଗରେ ଉଭ଼ଗ ପବନ ତ ଅଛିଇ ।

ନିଶି ହତାଶ ହୋଇ ପଡ଼ିଛି । ସେ କହିଲ, 'ଛାଡ଼ି ଦେ ମରଦପିଲ । ଏଇ ଯମମୁହଁରୁ ତୁ ଖମ୍ବ ଆଳୁ ନେଇ ପାରିବୁ ?'

ବିଷ୍ଣୁପଦ ଜିଦି ଗ୍ରପିଥିଲ । ସେ କହିଲ, 'କଦାପି ନୁହେଁ, ଖମ୍ବ ଆଳୁଟା ନ ନେଇ ମୁଁ ଛାଡ଼ୁ ନାଇଁ । ସୁବିଧା ହେଲେ ଆଳୁଟା ବି ନେବି, ଶୁଅର ବଚ୍ଚାକୁ ବି ଶେଷ,କରିବି ।' ମୋ ମୁଣ୍ଡକୁ ଗୋଟାଏ ବୁଦ୍ଧି ଆସିଛି । ଏଥର ବିଜଣ ଭଆ ସାମ୍ନା–ରେ ରହିବା ନାଇଁ । ମୁଁ ସାମ୍ନାରେ ଛିଡ଼ା ହେବି, ତୁ ଏଟାର ପଛରେ । ମୋତେ ତଡ଼ି ଆସିଲେ ତୁ ପଛରୁ ଘେଟ ବସାଇବୁ । ତୋତେ ତଡ଼ି ନେଲେ ମୁଁ ଘେଟ ବସାଇବି ।'

ପରିକଳ୍ପନା ଅନୁଯାୟୀ ବିଷ୍ଣୁପଦ ଆଉ ନିଶି ଶୁଅରଟାର ସାମନାରେ ପଛରେ

ଛିଡ଼ା ହେଲେ । ଶୂଅରଟା କଣ ବୁଝିଲା କେଜାଣି । ହୁଏତ ଅନ୍ଦାଜ କଲା—ତାର ଏତେ କଷ୍ଟର ଶସ୍ୟ ଆଜୁର ଦାବୀଦାର ଜୁଟିଛନ୍ତି ।

ଗ୍ଲେଟ ବସଇବା ଆଗରୁ ଶୂଅରଟା ହଠାତ୍ ବେକ ଗୁଞ୍ଜି ବିଷ୍ଣୁପଦ ଆଡ଼କୁ ଛୁଟି ଆସିଲା । ଜନ୍ତୁଟା ଏତେ ଦ୍ରୁତ ବେଗରେ ଘୁଲି ଆସୁଚି ଯେ ଆତ୍ମରକ୍ଷାର ସମୟ ମିଳିଲା ନାହିଁ । ସକାଳୁ ଗୋଟାଏ ଦାନା ବି ପଡ଼ି ନାହିଁ ବିଷ୍ଣୁପଦ ପେଟରେ । ଦିହଟା ଏମିତି ଦୁର୍ବଳ ହୋଇ ଅଛି । ମହଣେ ଓଜନର ଶୂଅରଟାର ଧକ୍କାରେ ସେ ଛିଟିକି ପଡ଼ିଗଲା । ତାପରେ ଅନୁଭବ କଲା ଉର ଭିତରେ ଧାରୁଆ ଦାନ୍ତ ଢୁକି ଯାଉଛି ।

ବିଷ୍ଣୁପଦ ଚିତ୍କାର କରି ଉଠିଲା, 'ମାରି ପକାଇଲା, ମୋତେ ମାରି ପକାଇଲା । ବଂଗ୍ଲଅ–' । କହୁ କହୁ ତା ହାତ ଅଣ୍ଟା ଆଡ଼କୁ ଘୁଲିଗଲା । ଧାରୁଆ ଦାଆଟାକୁ ଚଟପଟ ଟାଣି ନେଇ ଜନ୍ତୁଟାର ନାକ ପାଖରେ ସବୁ ଶକ୍ତି ଠୁଳ କରି ହାଣିଦେଲା । ସଂଗେ ସଂଗେ ରକ୍ତ ଝରିବ କୁ ଲଗିଲା ଜନ୍ତୁଟାର ନାକପୁଡ଼ାରୁ ।

ଇମାଡ଼େ ପଛରୁ ନିଶି ଶୂଅରଟା ଉପରେ ଗ୍ଲେଟ ହାଣୁଚି । କ୍ଷତବିକ୍ଷତ ଜାନୋଆରଟା ବିଷ୍ଣୁପଦକୁ ଛାଡି ନିଶ ଉପରେ ଝାଂପି ପଡ଼ିଲା । ଧକ୍କା ସଂଭାଳି ନ ପାରି ସେ ବି ଛିଟିକି ପଡିଲା, ଶୂଅରର ଦାନ୍ତରେ ତାର ଶାଢୀ, ତାର ଦେହ ଖଣ୍ଡିଆ ମାଣ୍ଡିଆ ହୋଇଯିବାକୁ ଲଗିଲା । ସେଇ ଅବସ୍ଥାରେ ଅନ୍ଧ ପରି ସେ ହାତର କଟୁରିଟାକୁ ଚଳାଇ ଯାଉଛି ।

ଉର ବେଶ ଜଖମ ହୋଇଥିଲା ବିଷ୍ଣୁପଦର । ଝରଝର କରି ରକ୍ତ ବାହାରୁଥାଏ । କିନ୍ତୁ ସେଥିପାଇଁ ବସି ରହିଲା ନାହିଁ ସିଏ । ଉନ୍ମାଦ ପରି ଛୁଟି ଆସି ଶୂଅର ମଥାରେ ଖୁବ୍ ଜୋରରେ ଟାଙ୍ଗିଆ ଗ୍ଲେଟ ବସାଇଲା । ନିଶିକୁ ଛାଡ଼ି ଶୂଅରଟା ପୁଣି ବିଷ୍ଣୁପଦ ଉପରକୁ ତେଡ଼ି ଆସିଲା । ମାଟି ତଳୁ ଉଠି ନିଶି ପଛରୁ ଆଘାତ ହାଣିଲା ।

ଶୂଅରଟା ଆଘାତ ଖାଇ ଥରେ ଯାଏ ବିଷ୍ଣୁପଦ ଆଡକୁ, ଥରେ ଯାଏ ନିଶି ଆଡ଼କୁ । ଦେଖୁ ଦେଖୁ ଶୀତର ଝାପ୍‌ସା ବେଳା ଶେଷରେ ଏଇ ନିର୍ଜନ ପ୍ରାନ୍ତର ପୃଥିବୀର ଆଦିମ ରଣଭୂମି ହୋଇ ଉଠିଲା । ଖାଦ୍ୟ ପାଇଁ ଦୁଇ ମାନବ-ମାନବୀ ଏକ ହିଂସ୍ର ଜନ୍ତୁସଂଗେ ଲଢ଼ାଇ ଚଳାଇ ଯାଉଛନ୍ତି ।

ଅନେକ ସମୟ ଯୁଦ୍ଧ ପରେ ମୁହଁରେ ପ୍ରଚଣ୍ଡ ଟାଙ୍ଗିଆ ଗ୍ଲେଟ ଖାଇ ଶୂଅରଟା ଗାଙ୍ଗାଙ୍କ ଚିତ୍କାର କରି ଉଠିଲା । ଅସହ୍ୟ ଯନ୍ତ୍ରଣାରେ କିଛି ସମୟ ମାଟିରେ ଗଡ଼ାଗଡି

କରି ତୀର ପରି ପଶ୍ଚିମ ଦିଗର ଜଙ୍ଗଲ ଭିତରକୁ ଛୁଟି ଯାଇ ଅଦୃଶ୍ୟ ହୋଇଗଲା ।

ଶମ୍ବରଟା ପକାଇଯିବା ପରେ ବିଷ୍ଣୁପଦ ଓ ନିଶି ଅନେକ କ୍ଷଣ ନିର୍ଜୀବ ପରି ପଡ଼ି ରହିଲେ । ତା'ପରେ ଧୁକେଇ ଧୁକେଇ ଉଠି ଖମ୍ବଆଳୁଟାର ବାକୀଟା ଖୋଳି ମାଟି ଭିତରୁ ବାହାର କରି ପକାଇଲେ ।

ଖମ୍ବଆଳୁ, କଇଁଚ ଆଉ ବେଲ ଗୋଟାଏ ଗୋଟାଏ ଜାଗାରେ ଠୁଳ କରି ଏମାନେ ଭଗାଭଗି କରିବାକୁ ଯାଉଛନ୍ତି, ବୃଷ୍ଟି ଝପଟି ଆସିଲା । ଯେତେବେଳେ ଯାଏ ଲଢ଼ାଇ ଚାଲିଥିଲା ବୁଝା ଯାଉ ନଥିଲା । ଉତ୍ତେଜନା ଓ ଆଦିମ ହିଂସ୍ରତା ଛଡ଼ା ଶରୀର ବା ମନରେ ଅନ୍ୟ କୌଣସି ବୋଧ ନଥିଲା । ଏବେ ନା ବିଷ୍ଣୁପଦ ଟେର ପାଇବାକୁ ଲାଗିଲା, ଭୀଷଣ ଶୀତ କରୁଛି । ହାଡ଼ ଭିତରୁ ଦୁରନ୍ତ କଂପ ବାହାରୁଛି । ଦାନ୍ତରେ ଦାନ୍ତ ଠକ ଠକ ବାଜୁଛି ।

ବିଷ୍ଣୁପଦ କହିଲା, 'କି ଘନ ଘୋଟିଆ ବର୍ଷା ଆସିଲା !'

ନିଶି କଂପି କଂପି କହିଲା, ଏମିତି ଛିଡ଼ା ହୋଇ ରହିଲେ ନିର୍ଘାତ ମରିଯିବା ମାରଦପୁଅ । ଗୋଟାଏ କିଛି ବ୍ୟବସ୍ଥା କର ।

'କୁଆଡ଼େ ଯିବା କହ ଦେଖିନି ।'

'କଣ ଭାବି ନିଶି କହିଲା, ପଶ୍ଚିମ ଦିଗରେ ଗୋଟାଏ ଶ୍ମଶାନଘାଟ ଅଛି । ସେଠି ତ ଗୋଟେ ଘର ଅଛି । ଚାଲ, ସେଇଠିକି ଯିବା ।'

ବିଷ୍ଣୁପଦର ମନେ ପଡ଼ିଗଲା । 'ହଁ, ହଁ, ଚାଲ ।'

ଦିଜଣ ଦୌଡ଼ି ଦୌଡ଼ି ଶ୍ମଶାନର ଖୁଙ୍କଘରେ ଆସି ପହଂଚିଲେ । ଘରଟା ଶବଯାତ୍ରୀଙ୍କ ବସିବା ପାଇଁ କେବେ ତୋଳା ଯାଇଥିଲା ।

ଦିହର ରକ୍ତ ପୋଛି ନେଇ ନିଶି ଆଉ ବିଷ୍ଣୁପଦ କିଛିକ୍ଷଣ ହାଁପେଇଲେ । ତା'ପରେ ବିଷ୍ଣୁପଦ କହିଲା ବଡ଼ ଭୋକ ହେଉଛି ଝିଅପିଲା ।'

ନିଶି କହିଲା, 'ମୋର ବି ।'

'ଖାଇବାର ଯୋଗାଡ଼ କରିବା ଚାଲ ।'

ଖମ୍ବଆଳୁର କିଛିଟା କାଟି ପକାଇଲା ନିଶି । ବିଷ୍ଣୁପଦ ଗୋଟାଏ କଇଁଚର ଖୋଳ ଛଡ଼ାଇ ମାଂସ ବାହାର କଲା ।

କିଛିକ୍ଷଣ ଆଗରୁ କିଏ ଗୋଟାଏ ମଡ଼ା ପୋଡ଼ି ଯାଇଥିଲେ । ସେଠାରୁ ନିଆଁ ଆଣି ମାଂସ ଆଉ ଆଳୁ ସିଝେଇ ନେଲେ ଦି ଜଣ । ତାପରେ ଖାଇ ଦେଇ ପରିତୃପ୍ତିର ହାଲୁଚି ପାରିଲେ ଦି'ଜଣ ଯାକ ।

ବିଷ୍ଣୁପଦ କହିଲା, 'ସାରା ଦିନରେ ଏଇ ଯା ପେଟରେ ପଡ଼ିଲା ।

ନିଶି କହିଲା, 'ମୋର ବି ।'

'ଖାଇବା ହେଲା । ଇଲେ ଯଦି ଗୋଟାଏ ବିଡ଼ି ମିଳନ୍ତା ।'

'ହଁ ମୋର ବି ମନର ଚଢ ସଉଚ । ଯଦି ପାଆନ୍ତି ଗୋ ।'

ଇଆଡ଼େ ବର୍ଷାର ଜୋର ଆହୁରି ବଢ଼ିଛି । ଆକାଶ ଫାଙ୍କ୍ ଫାଙ୍କ୍ କରି ବିଜୁଳି ଚମକି ଉଠୁଚି ।

ନିଶି କହିଲା, 'ଏ ବୃଷ୍ଟି ଆଜି ଛାଡ଼ିବ ନାଇଁ ମନେ ହେଉଚି ।'

'ହଁ', ବିଷ୍ଣୁପଦ ମୁଣ୍ଡ ହଲାଇଲା ।

,ଆଜି ରାତିଟା ଏଇଠି କଟାଇବାକୁ ହେବ ।

'ହଁ ।'

ଆଉ କିଛି ସମୟ ପରେ ବିଷ୍ଣୁପଦ କହିଲା, 'ବସି ରହିଲେ କଣ ହେବ ? ମୁଁ ଶୋଉଚି ।'

ନିଶି କହିଲା, 'ମୁଁ ବି ଶୋଇବି ।'

ଦି'ଜଣ ଘରର ଦଇ ଆଡେ ଶୋଇଗଲେ । ମଝିରେ ବେଶ କିଛିଟା ଦୂରତ୍ୱ ।

ରାତ ଆହୁରି ଗାଢ଼ ହେଲା' ନିଶି ହଠାତ୍ 'ଏ ମରଦ ପୁଅ– '

ଘରର ଅନ୍ୟ ପ୍ରାନ୍ତରୁ ବିଷ୍ଣୁପଦ ଜବାବ ଦେଲା,–'କଣ କହୁଛୁ ?'

'ମୋ ପାଖକୁ ଆ ।'

'କାହିଁକି ?'

ବଡ ଶୀତ , ମୋତେ ଟିକିଏ ଜଡ଼େଇ ଧରି ଦେଖିନ ।'

ଏଇ ଦୁର୍ଯୋଗଭରା ଶୀତ ରାତିରେ ପରସ୍ପର ଦେହର ଉତ୍ତାପ ରକ୍ଷା ଲାଗି ବିଷ୍ଣୁପଦ ଓ ନିଶି ଜଡ଼ାଜଡ଼ି ହୋଇ ଶୋଇ ରହିଲେ ।

ପରଦିନ ସକାଳେ କଇଁଚ ଆଉ ଯୁଦ୍ଧ–କରି–ଜିଣା ଖମ୍ବଆଳୁଟା ଭାଗାଭାଗି କରି ନେଇ ନିଶି ଗଲା ଉତ୍ତରକୁ, ବିଷ୍ଣୁପଦ ଦକ୍ଷିଣକୁ ।

# ମୋତେ ଦେଖନ୍ତୁ

## ଶୀର୍ଷେନ୍ଦୁ ମୁଖୋପାଧ୍ୟାୟ

ଦୟାକରି ମୋତେ ଥରେ ଦେଖନ୍ତୁ । ଏଇ ଯେ ମୁଁ ଏଇଠି । ଟିକିଏ ଆଗରୁ ମୁଁ ବସ୍‌ର ପାଦଦାନୀରେ ଝୁଲି ଝୁଲି ଉଠିଲି, ତା'ପରେ ଭିଡ଼ ଭିତରେ ଯା କାଖ ତା କାଖ ତଳେ ଠିକ୍ ମୂଷା ପରି ଗୋଟାଏ ଗର୍ତ କରି ଏତେ ଦୂର ଚାଲି ଆସିଛି ! ବସ୍‌ର ରଡ଼୍‌ଗୁଡାକ ବଡ଼ ଉଚ୍ଚାରେ—ମୁଁ ଗେଡ଼ା ମଣିଷ —ଏତେଦୂର ହାତ ପାଏନା । ମୁଁ ସିଟ୍‌ର ପଛ ପଟେ ଛିଡ଼ା ହୁଏ ତା'ପରେ ଦିହ ମେଲାଇ ଦିଏ । ବସ୍ ଝୁଲିଲେ ଯେତେବେଳେ ମୁଁ ଦୋହଲି ଉଠେ ଆଖ ପାଖ ମଣିଷଙ୍କ ଦିହରେ ଭର ଦେଇ ମୁଁ ସମ୍ଭାଳି ନିଏ । ସେତେବେଳେ ମୋ ଆଖ ପାଖ ଲୋକମାନେ ସେମିତି କିଛି ରାଗି ପାନ୍ତି ନାଇଁ । କାରଣ ମୋ ଓଜନ ଏତେ କମ୍ ଯେ କାହା ଉପରେ ଟଳି ପଡିଲେ ସେ ମୋର ଧକ୍‌କା ବା ଓଜନର ଟେର ପାଏନା । ହଁ, ଏଇନା ମୁଁ ବସ୍‌ର ପଛ ଆଡ଼ର ଗୋଟାଏ ସିଟ ର ପଛ ଭାଗକୁ ଖୁପି ଧରି ଛିଡ଼ା ହୋଇଛି । ମୋର ଦିପାଖରେ ପାହାଡ ପରି ଉଚ୍ଚା ସବୁ ମଣିଷ । ସେମାନେ ମୋତେ ଏତେ ଢ଼ାଙ୍କି ଦେଇଛନ୍ତି ଯେ ବୋଧ ହୁଏ ମୁଁ ଦେଖା ଯାଉ ନାହିଁ । କିମ୍ବା ଦେଖିଲେ ବି କେହି ଲକ୍ଷ୍ୟ କରୁ ନାଇଁ । ଏଇଟା ମୁସକିଲ । ମୋତେ ଅନେକ ଦେଖନ୍ତି, କିନ୍ତୁ କେହି ଲକ୍ଷ୍ୟ କରନ୍ତି ନାଇଁ । ଏଇନା ମୁଁ ଯାହା ପାଖରେ ଛିଡ଼ା ହୋଇଛି କିମ୍ବା ଯାହାର ମୁହାଁ ମୁହିଁ ଛିଡ଼ା ହୋଇଛି ସେମାନେ ମୋତେ ହୁଏତ ଦେଖିଛନ୍ତି, କିନ୍ତୁ ନିର୍ଲିପ୍ତ ଭାବରେ । ଯେମିତିକି ମୁଁ ଥିଲେ କିଛି କ୍ଷତି ନାଇଁ ବା ଲାଭ ନାହିଁ । ତାର କାରଣ ବୋଧ ହୁଏ ଏଇ ଯେ ମୋ, ଚେହେରା ଏମିତି କିଛି ନାଇଁ ଯେଉଁଥିରୁ ମୋତେ ଅଲଗା କରି ଚିହ୍ନି ହେବ । ହଁ, ମହାଶୟ ! ମୁଁ ଜମା ପାଞ୍ଚ ଫୁଟ ଦୁଇ ଇଞ୍ଚ୍ ଲମ୍ବା, ଗେଗା, ତେବେ ଖୁବ୍ ଗୋରା ନୁହେଁ ଯାହା ଆଖିରେ ପଡିବ ; କଳା, ତେବେ ଖୁବ୍ କଳା ନୁହେଁ ଯେ ଆଉ ଥରେ ଚାହିଁଲେ ଦେଖିବ କିଏ । ଚାଳିଶ ବର୍ଷ ପରେ ମୋ ମଥା କ୍ରମେ ଫାଙ୍କା ହୋଇ ବାଳ ପାଚି ଆସିଛି—ଅଥଚ ବଳା

ହୋଇନି– ଚନ୍ଦା ମଣିଷଙ୍କୁ ବି କେବେ କେହି କେହି ଦେଖନ୍ତି । ତା ଉପରେ ମୋ ମୁହଁ ଖଣ୍ଡକ–ସେଟା ନା ଖୁବ୍ କୁତ୍ସିତ ନା ସୁନ୍ଦର । ମୋ ନାକ ଖୁବ୍ ଉଚ୍ଚା ନୁହେଁ, ଛୋଟ ବି ନୁହେଁ, ଆଖି ବଡ଼ ବି ନୁହେଁ । ଅଥଚ ଛୋଟ ବି ନୁହେଁ । ତେଣୁ ଏଇ ଯେ ଅଛି ଭିଡ଼ ଭିତରେ, କିଏ କଣ ମୋତେ ଦେଖୁଛନ୍ତି ? ଦେଖୁ ନାହାନ୍ତି କିମ୍ବା ଦେଖିଲେ ବି ଲକ୍ଷ୍ୟ କରୁ ନାହାନ୍ତି–ମୁଁ ଜାଣେ ।

ମୋ ବାହାଘର ପରେ ଗୋଟାଏ ଖୁବ ମର୍ମାନ୍ତିକ ମଜା ଘଟନା ଘଟି ଯାଇଥିଲା । ବୋହୂଭାତର ଦିନେ ଦିଦିନ ପରେ ମୁଁ ମୋ ବୋହୂକୁ ନେଇ ଟିକିଏ ବଜାର କରିବାକୁ ଯାଇଥିଲି । ଆଉ କେତୁଟା ଦିନପରେ ଦ୍ୱିରାଗମନ, ଶଶୁରଘର ଯିବି । ସେଇ କାରଣରୁ କିଛି ନମସ୍କାରୀ ଲୁଗାପଟା କିଣିବା ଦରକାର ଥିଲା । ରାସ୍ତାରେ ବାହାରି ମୁଁ ମୋ ବୋହୂକୁ ପଚାରିଲି, "ନ୍ୟୁ ମାର୍କେଟ ଯିବ ?" ମୋର ଯା ଅବସ୍ଥା ସେଥିରେ ନ୍ୟୁ ମାର୍କେଟକୁ ବଜାର କରି ଯିବାର କୌଣସି ଅର୍ଥ ହୁଏନା । ବଗବର ଆମେ ବସା ପାଖ କାଟାରରେ ଶସ୍ତାରେ ଲୁଗାପଟା କିଣୁଁ । ତଥାପି ମୁଁ ଯେ ଏ କଥାଟା କହିଥିଲି ତାର ଏକ ନମ୍ବର କାରଣ ହେଲା, ମୋ ବୋହୂଟି ମଫସଲର ଝିଅ, ନ୍ୟୁ ମାର୍କେଟ ଦେଖିନି । ଆଉ ଦୁଇ ନମ୍ବର କାରଣ ହେଲା, ମୋ ଶଶୁରଘର ଲୋକମାନେ ଆମ ତୁଳନାରେ, ବେଶ୍ ପଇସାବାଲା । ମୁଁ ନ୍ୟୁ ମାର୍କେଟର କଥା କହିଲି କ ହିଁକି ନା ମୋ ନୂତନ ବୋହୂଟି ଯେମିତି ଟିକିଏ ଖୁସି ହେବ, ଆଉ ଶଶୁରଘର ଲୋକେ ଯେତେବେଳେ ଶୁଣିବେ ଲୁଗାପଟା ସବୁ ନ୍ୟୁ ମାର୍କେଟରୁ କିଣା, ସେତେବେଳେ ସେମାନଙ୍କ ଆଖି ଟିକିଏ ଊର୍ଦ୍ଧ୍ୱଗାମୀ ହେବ । କିନ୍ତୁ ଏଇ ନ୍ୟୁ ମାର୍କେଟର ପ୍ରସ୍ତାବଟାଇ ଗୋଟାଏ ମାରତ୍ମକ ଭୁଲ ହୋଇଥିଲା । କାରଣ ସେଠିକି ନ ଯାଇଥିଲେ ଘଟନାଟା ବୋଧହୁଏ ଘଟି ନଥାନ୍ତା । ବ୍ୟାପାରଟା ହୋଇଥିଲା କଣ ନା ନ୍ୟୁ ମାର୍କେଟରେ ଢୁକିବା ପରେ ଝଲମଲ ଦୋକାନ ପସର ଦେଖି ମୋ ବୋହୂ ମୁଗ୍ଧ ହୋଇଗଲା । ସେ କେଉଁ ଦୋକାନ ସାମନାରେ ଛିଡ଼ା ହୋଇପଡ଼େ, ତାପରେ ଶୋ-କେସ୍‌ରେ ଆଖି ରଖି ଏକ ପାଦ–ଏକପାଦ କରି ଆଗେଇ ଚାଲେ । ମୋ ଆଡ଼କୁ ଅନାଇବାକୁ ହିଁ ଭୁଲିଗଲା । ସେତେବେଳେ ମୋର ନୂତନ ବୋହୂ, ଫଳରେ ମୋର ଅଭିମାନ ହେବା ହିଁ ସ୍ୱାଭାବିକ । ମୁଁ ତାକୁ ଏଇଟା ସେଇଟା ଦେଖାଇ ଟିକିଏ ମାତବ୍ବରି କରିବାକୁ ଚେଷ୍ଟା କଲି ସତ, କିନ୍ତୁ ସେ ବିଶେଷ କେଉଁ ଜିନିଷ ପ୍ରତି ମନଯୋଗ ନ ଦେଇ ସବୁ କିଛି ହିଁ ଦେଖିବାକୁ ଲାଗିଲା । ଅଭିମାନଟା ଟିକିଏ ପ୍ରବଳ ହେବାରୁ ଏକ ସମୟରେ ମୁଁ ଇଚ୍ଛାକରି ଚାଲିବାର ଗତି ଖୁବ୍ କମାଇ ଦେଲି,

କିନ୍ତୁ ବୋହୂ ସେଟା ଲକ୍ଷ୍ୟ ନକରି ନିଜ ମନକୁ ଆଗେଇ ଚାଲିଲା । ତାହା ଦେଖି ମୁଁ ଥରେ ଏକାବେଳକେ ରହିଗଲି । କିନ୍ତୁ ମୋ ବୋହୂ ଚାଲିଥାଏ । ଦୋକାନ ବଜାର ଆଡ଼କୁ ତାର ଚିହ୍ନକ ଆର୍ମି ଥାଏ ଗାର୍ଡ଼ ଅଫ୍ ଅନର୍ ଦେବା ସମୟରେ ସୈନିକ–ମାନେ ଯେମିତି ଚାଲନ୍ତି ସେମିତି ତାର ଚାଲିବାର ଭଙ୍ଗି । ମୁଁ ଦୂରରୁ ଦେଖୁଥାଏ ମୋ ବୋହୂ ସେ ଝଲମଲ ଆଲୁଅ ଭିତରେ ଲୋକବାକଙ୍କ ଭିଡ଼ ଠେଲି ଏକା ଚାଲି ଯାଉଚି । ମଝିରେ ମଝିରେ ସେ କଥା କହୁଥିଲା ସତ ମୁଁ ତା ସଙ୍ଗରେ ଅଛି ଭାବି, କିନ୍ତୁ ସତରେ ଅଛି କି ନାହିଁ ତା ସେ ଲକ୍ଷ୍ୟ କରି ନାହିଁ । ଏଇପରି ବେଶ୍ କିଛି ଦୂର ଆଗେଇ ଯିବା ପରେ ଗୋଟାଏ ଜିନିଷ ଦେଖି ଖୁବ୍ ଉତ୍ତେଜିତ ଭାବରେ ମୋତେ ଦେଖାଇବା ପାଇଁ ମୁହ ଫେରାଇ ମୋତେ ଖୋଜିବାକୁ ଯାଇ ଛିଡ଼ା ହୋଇ ପଡ଼ିଲା । ସେତେବେଳେ ମଜା କରିବାର ଗୋଟାଏ ଲୋଭ ମୁଁ ସମ୍ଭାଳି ପାରିଲି ନାହିଁ । ନ୍ୟୁ ମାର୍କେଟରେ ଯେଉଁ ଗୋଲକଧନ୍ଦା ଭଳି ଗଳିଗୁଡ଼ାକ ଅଛି ତା ଭିତରୁ ଯେଉଁଟା ମୋ ସାମନାରେ ଥିଲା ମୁଁ ତାରି ଭିତରେ ଚଟ୍ କରି ଢୁକି ଗଲି । ଏଥର ମଫସଲ ଝିଅଟା ଖୋଜୁ ମୋତେ । ମୋତେ ସେ ଲକ୍ଷ୍ୟ ନକରିବାର ମଜାଟା ବୁଝୁ ଏଥର । ମୁଁ ନିଜ ମନକୁ ହସିଲି । ଆଉ ଭଙ୍ଗମାରି ଦେଖିଲି ମୋ ବୋହୂଟା କାନ୍ଦ କାନ୍ଦ ମୁହଁରେ ଚାରିଆଡ଼କୁ ଚାହିଁ ଚାହିଁ ଫେରି ଆସୁଚି ଦ୍ରୁତ ପାଦରେ । ମୁଁ ଏବଂ କୁଣ୍ଡେଇ ଦୋକାନଗୁଡ଼ାକ ଥିବା ଗଳିରେ । କିନ୍ତୁ ସେ ମୋତେ କୌଣସି ଥର ହିଁ ଚିହ୍ନି ପାରିଲା ନାହିଁ । ଉଦ୍‌ଭ୍ରାନ୍ତ ଭାବରେ ମୋତେ ଖୋଜି ଖୋଜି ମୋତେ ଅତିକ୍ରମ କରିଗଲା । ସେଠୁ ମୁଁ ଭାବିଲି ମଫସଲର ଏଇ ଝିଅଟା ଖୁବ୍ ଚତୁରୀ । ମୁଁ ଇଚ୍ଛା କରି ଲୁଚିଥିଲି ବୋଲି ବୁଝି ପାରି ସେ ବୋଧହୁଏ ଇଚ୍ଛାକରି ମୋତେ ଚିହ୍ନିବାକୁ ଚାହିଁଲା ନାହିଁ । କିନ୍ତୁ ଯା ମୁହଁରକରୁଣ ଏବଂ କ୍ରମେ କରୁଣତର ଅବସ୍ଥା ଦେଖି ସେ କଥାଟା ସତ୍ୟ ବୋଲି ମନେ ହେଉ ନ ଥିଲା । ତଥାପି ଶେଷରେ ମୁଁ ଗୋଟାଏ ଘଡ଼ି ଦୋକାନ ସାମନାରେ ଯାର ରାସ୍ତା ଅବରୋଧ କରି ଛିଡ଼ା ହୋଇଗଲି । କହିଲି—ଏଇ ଯେ ! ଯେ ଭୀଷଣ ଚମକି ଉଠି ଅବାକ୍ ହୋଇ ମୋତେ ଦେଖିଲା । ବେଶ କିଛି ସମୟ ଦେଖିଦେଲା ପରେ ତାପରେ ଭୀଷଣ ଜୋରରେ ଶ୍ୱାସ ଛାଡ଼ି କାଂପି କାଂପି ହସି କହିଲା—ତୁମେ ! ତୁମେ ! କେଉଁଠି ଥିଲ ତୁମେ ? ମୁଁ କେତେବେଳୁ ତୁମକୁ ଖୋଜୁଚି ! ଆଶ୍ଚର୍ଯ୍ୟର କଥା ଏଇ ଯେ ସେତେବେଳେ ମୋର ମନେହେଲା ଯେ ସତ କଥାହିଁ କହୁଚି । ରାସ୍ତାକୁ ଫେରିବା ସମୟରେ ମୁଁ ଯାକୁ କହିଲି, ଯା ସଙ୍ଗରେ ବାରମ୍ବାର ଲୁଚକାଳି ଖେଳିବା ସମୟରେ ମୁଁ ବାରବାର

ଯାକୁ ମୋତେ ଧରିବାର ସୁଯୋଗ ଦେଇଛି, ଯା ସାମନାରେ ହିଁ ଛିଡ଼ା ହୋଇଥିଲି ମୁଁ । ସେ ପ୍ରଥମେ ବିଶ୍ୱାସ କଲାନାହିଁ; କିନ୍ତୁ ମୁଁ ତାଗିଦ୍ କରିବାରୁ ସେ ଖୁବ୍ ଅବାକ୍ ହୋଇ କହିଲା—ସତରେ ! ତାହେଲେ ତୁମେ ଆଉ କେବେ ଭୁଲିବ ନାହିଁ । ଏ ଭଳମ କରିବ ଟା ବିପଜ୍ଜନକ ।

ଝାଂଧି, ଭଇ କଣ୍ଡକ୍ଟର...ଏଇଠି ମୁଁ ଓହ୍ଲାଇ ଯିବି...ଦେଖି ଦାଦା... ଦେଖିବେ ଭଇ ମୋ ଚଶମାଟା ଯିମିତି ନ ଭାଂଗେ ! ଏଇ ଦେଖନ୍ତୁ ମୋ କଥା କେହି ଶୁଣିଲେ ନାହିଁ । ମୁଁ ଓହ୍ଲାଇବା ଆଗରୁ କଣ୍ଡକ୍ଟର ବସ୍ ଛାଡ଼ିବାର ଘଣ୍ଟି ଦେଇଦେଲା, ଗେଟ ଅଟକାଇ ଧମସା ଲୋକଟା ଅଚଳ ହୋଇ ରହିଲା, ଆଉ ହାଓଯାଇ ସାର୍ଟ ପନ୍ଧା ଲୋକଟା କହୁଣିରେ ଚଶମାଟାକୁ ଦେଲା ଚଟାଇ । ସେଥିପାଇଁ କହୁଥିଲି ଯେ କେହି ହିଁ ମୋତେ ଲକ୍ଷ କରନ୍ତି ନାହିଁ, ରାସ୍ତା ଘାଟରେ ବି ନୁହେଁ ।

ଆଜି ଦିନଟା ବେଶ୍ ଭଲ । ଫୁରୁ ଫୁରୁ ହାଓଯା ଆଉ ଖରା ମଝା ମୋଟିଏ ଆଦରଭରା ଦିନ । ବର୍ଷାଦିନ ବୋଲି ମନମଟା ବେଶ ବିଷଣ୍ଣ । ଏଭଳି ରାସ୍ତା ଦେଇ ଚାଲିବାକୁ ମୋତେ ଖୁବ୍ ଭଲ ଲାଗୁଛି । ଏଇତ ଟିକିଏ ଦୂରରେ ଗୋଟାଏ କ୍ରସିଂ ଆଉ ତାପରେ ହିଁ ମୋ ଅଫିସ । ଏଇ ଦେଖ, ମୁଁ କ୍ରସିଂଟା ପାଖକୁ ଆସି ରାସ୍ତା ପାର ହେବାକୁ ଯାଉଛି, ଟ୍ରାଫିକ ପୁଲିସ ହାତ ପକାଇଦେଲା, ମୋର ପାର ହେବା ରାସ୍ତାଟାକୁ ଅଟକାଇ ଏଭଳା ଖାଲି ଗାଡ଼ି ଆଉ ଗାଡ଼ି । କାହିଁକି ଭଇ ଟ୍ରାଫିକ୍ ପୁଲିଶ୍, ମୁଁ ଯେ ରାସ୍ତା ପାର ହଉଚି କଣ ଦେଖିବାକୁ ପାଉନ ! ଆଉ ଟିକିଏ ହାତଟା ଟେକି ରଖିଥିଲେ କଣ ହାତଟା ଭାଙ୍ଗି ଯାଉଥିଲା !

ଯେଉଁ ଲିଫ୍ଟଟା ଦେଇ ମୁଁ ଉପରକୁ ଉଠୁଚି ଏଇ ଲିଫ୍ଟଟା ବୋଧହୁଏ ଦୁଇଶହ ବର୍ଷର ପୁରୁଣା । ଏହା ଚାରି ଦିଗରେ କଳା ଲୁହାର ଗ୍ରିଲ । ଠିକ୍ ଗୋଟାଏ ଖୋଲା ପଞ୍ଜୁରି ପରି । ମଝରେ ମଝରେ ଟିକିଏ କାଂପେ ଏବଂ ଖୁବ୍ ଧୀରେ ଧୀରେ ଉଠେ । ଗତ ତେର ବର୍ଷ ଧରି ମୁଁ ଏଇ ଲିଫ୍ଟରେ ଉଠୁଛି । ଏଇ ତେର ବର୍ଷ ଲିଫ୍ଟମ୍ୟାନ୍ ରାମସ୍ୱରୂପ ମୋତେ ଉପରକୁ ଉଠାଇଛି । କଣ କହୁଚ ଭଇ ରାମସ୍ୱରୂପ, ତୁମେ ତ ମୋତେ ଖୁବ୍ ଛୋଟବେଳୁ ଦେଖିଛ—ଯେତେବେଳେ ମୋର ବୟସ ଛବିଶ କି ସତେଇଶ । ସେତେବେଳକୁ ମୁହଁରେ ଭଲ କରି ବୁଢ଼ାଳିଆ ଦାଗ ପଡ଼ିନାହିଁ । ଏଭଳା କହ ତ ମୋ ନାଆଁଟା କ'ଣ ? ସତରେ କିନ୍ତୁ ପଚାରିଲେ ରାମସ୍ୱରୂପ ଖାଁ ହାଁ କରି ହସି ଉଠି କହିବ,—ଆରେ ଡକ୍ଟର୍, ଆପଣ ତ ଅରବିନ୍ଦ-

ବାବୁ । କିନ୍ତୁ ମୋତେ ତା ନୁହେଁ । କେବେ ହେଲେ ମୁଁ ଅରବିନ୍ଦ ନ ଥିଲି । ମୁଁ ଚିରକାଳ—ସେଇ ପିଲାଟି ଦିନରୁ ଅରିନ୍ଦମ ବସୁ ।

ମୋ ଚାକିରୀ ବ୍ୟାଙ୍କରେ । ଦୋତାଲାରେ ମୋ ଅଫିସ୍ । ଆଗେ ମୁଁ ଅନ୍ୟାନ୍ୟ ଡ଼ିପାର୍ଟମେଣ୍ଟରେ ଥିଲି, ଗତ ଦଶ ବର୍ଷ ଧରି ମୁଁ ବସୁଚି କ୍ୟାଶ୍‌ରେ । ମୁଁ ଖୁବ୍ ଚଟପଟ୍ ଟଙ୍କା ଗଣିପାରେ । ହିସାବରେ ମୁଁ ଖୁବ୍ ପକ୍‌କା । ତେଣୁ କ୍ୟଶ୍‌ରୁ ମୋତେ ଅନ୍ୟ କେଉଁଠିକି ଦିଆ ହେଉନାହିଁ । ଦେଲେ ବି ଫେରଇ ଅଣାହୁଏ । ଦଶ ବର୍ଷ ଧରି ମୁଁ ଦକ୍ଷତାର ସହିତ କ୍ୟାସ୍‌ର କାମ କରୁଛି । କେବେ ପେମେଣ୍ଟ, କେବେ ରିଶିଭିଂରେ । ପେମେଣ୍ଟରେହିଁ ବେଶୀ, କାରଣ ଏଇଠି ସବୁଠୁଁ ସତର୍କ ଲୋକର ଦରକାର ହୁଏ । ଗୋଟାଏ ଛଡ଼ର ପଞ୍ଜୁରି ଭିତରେ ମୁଁ ବସେ, ମୋ ଛାତି ପାଖରେ ଥାଏ ଅନେକ ଖୋପଥିବା ଗୋଟାଏ ଡ୍ରୟର । ତାର କେଉଁଟାରେ କେତେ ଟଙ୍କାର ନୋଟ୍, ଆଉ କେଉଁଟାରେ କେଉଁ ଖୁଚୁରା ପଇସା ରହିଛି ତା ମୁଁ ନିର୍ଭୁଲ ଭାବରେ ଆଖି ବୁଜି କହିଦେଇପାରେ । ପେମେଣ୍ଟ ସମୟରେ ମୁଁ ଡ୍ରୟର ଖୋଲି ଗଣି ଟଙ୍କା ବାହାର କରେ, ତାପରେ ଡ୍ରୟର ବନ୍ଦକରେ. ତାପରେ ପୁଣି ଗଣେ,...ଆଉ ଥରେ... ଟଙ୍କାଦେଇ ପର ପେମେଣ୍ଟ ପାଇଁ ହାତ ବଢାଏ, ଟୋକେନଟା ନେଇ ପୁଣି ଡ୍ରୟର ଖୋଲେ, ଟଙ୍କାବାହାର କରି ଗଣେ ....···ତା'ପରେ ଏଇପରି ଭାବରେ ଚାଲିଥାଏ । ସାମନାର ଛଡ଼ ଜାଲି ଯେଉଁମାନେ ମୋତେ ଦେଖନ୍ତି ସେମାନଙ୍କୁ ସମ୍ଭବତଃ ଖୁବ୍ କ୍ଲାନ୍ତିକର ଲାଗେ ମୋର ବ୍ୟବହାର—ଇସ୍ ଲୋକଟା କି ଏକଘେଇଁଆ ଭାବେ କାମ କରି ଯାଉଚି । କି ଏକଘେଇଁଆ ସତେ! ଛଡ଼ ଘେର ଦେଇ ସେମାନେ ମୋତେ ଦେଖନ୍ତି କିନ୍ତୁ ମନେରଖନ୍ତି ନାହିଁ । ରାମବାବୁ ଆମର ପୁରୁଣା ବଡ଼ ଗ୍ରାହକ — ପ୍ରକାଣ୍ଡ କାରଖାନା ଅଛି, ଏଜେଣ୍ଟ ବି ତାଙ୍କୁ ଖାତିର କରେ । ଖୁବ୍ କୁନ୍ତୁକୁନ୍ତିଆ ଲୋକ, ବେଶୀ ବେଳ ଲୋକ ନ ପଠାଇ ନିଜେ ଆସି ଚେକ୍ ଭଙ୍ଗାଇ ନେଇଯାନ୍ତି । ମୁଁ କେତେଥର ତାଙ୍କୁ ପେମେଣ୍ଟ ଦେଇଛି, ସେ ଛଡ଼ ଘର ବାହାରେ ପ୍ରସନ୍ନ ହସହସ ମୁହଁରେ ଧନ୍ୟବାଦ ଦେଇଛନ୍ତି । ଥରେ ମୋର ବଡ଼ ଶଳା କଲିକତା ବୁଲିବାକୁ ଆସି ଅନେକ ଟଙ୍କା ଉଡ଼ାଇଥିଲା । ସେଥିରୁ ସେ ମୋତେ ନେଇଯାଏ ପାର୍କ ଷ୍ଟ୍ରୀଟ୍‌ର ଗୋଟାଏ ରେଷ୍ଟୋରାଁକୁ । ସେଠି ଯାଇ ଦେଖେ ରାମବାବୁ । ଏକା ବସିଛନ୍ତି, ହାତରେ ସାଦା ସ୍ୱଚ୍ଛ ଜିନ୍, ଖୁବ୍ ସ୍ୱପ୍ନାଳୁ ଆଖି । ସତ କହିବାକୁ ଗଲେ ମୁଁ ଭଦ୍ରେତରତର କଥା ଖୁବ ବେଶୀ ଭାବେ ନାହିଁ । ଅନ୍ତତ ସେଇ କାରଣରୁ ରାମବାବୁଙ୍କ ସଙ୍ଗେ ଦେଖା କରିବା କଥା ମୋର ମନକୁ ଆସିନାହିଁ । ମୁଁ ପୁରୁଣା ଚିହ୍ନା ଲୋକ ଦେଖି ଆଗେଇ ଯାଇଥିଲି । ରାମବାବୁ ଭ୍ରୂରୁ ଟେକି ପଚାରିଲେ,-କେଉଁଠି ଦେଖିଚି କହନ୍ତୁ ତ । ମନେ ପଡ଼ୁନାହିଁ । ସେତେବେଳେ ମୋ' ଶଳା ସାମନାରେ ଖୁବ୍ ଲଜ୍ଜା ଲାଗୁଥିଲା

ମୋତେ । ଲୋକଟା ଯଦି ଧନରେ ଚିହ୍ନି ନପାରେ, ଯଦି ସତରେ ଅହଂକାରୀ ହୋଇଥାଏ ଲୋକଟା—ତେବେ ମୋର ବେଇଜ୍ଜତୀ ହୋଇଯିବ । ମୁଁ ସେତେବେଳେ ଜଡ଼ସଡ଼ ହୋଇ ବ୍ୟାଙ୍କର ନାମ କଲି, କହିଲି ଯେ ମୁଁ କ୍ୟାଶ୍‌ରେ ଥାଏ.........ସଙ୍ଗେ ସଙ୍ଗେ ପରିଷ୍କାର ଜିନ୍ ପରି ସ୍ୱଚ୍ଛ ହୋଇଗଲା ତାଙ୍କ ମୁହଁ, ପ୍ରସନ୍ନ ହସି କହିଲେ—ଚିହ୍ନିଛି । କଣ ଜାଣନ୍ତି, ଏଇ ଛଡ଼ଘେର ଆଉ ଏଇ ପଞ୍ଜୁରି ଯାରି ଭିତରେ ଦେଖି ଦେଖି ଅଭ୍ୟସ୍ତ ହୋଇ ଯାଇଛି, ତେଣୁ ହଠାତ୍ ଏ ଯାଗାରେ—ବୁଝିଲେ ନା ! ଅସଲ କଥା ହେଲ, ଏଇ ପରସ୍‌ପେକ୍‌ଟିଭ—ଏହା ଛଡ଼ା ଆଉ ମଣିଷର ଅଛି କଣ ଯେ ତାକୁ ଚିହ୍ନା ଯିବ ? ଏଇ ପଞ୍ଜୁରି ଭିତରେ ଯେମିତି ଆପଣ, ସେମିତି ଦେଖନ୍ତୁ ଏଇ କୋର୍ଟ-ପ୍ୟାଣ୍ଟ ଟାଇ ଆଉ ଚନ୍ଦା ମୁଣ୍ଡ—ଇଆ ଭିତର ଦେଇ ମୁଁ । ଏ ସବୁଠୁ ଯଦି ଅଲଗା କରି ନିଅନ୍ତି, ତେବେ ଦେଖିବେ ଆପଣ ଓ ମଁ—ଆମରୁ କିଛି ପ୍ରକୃତ ପରିଚୟହିଁ ନାହିଁ । ଏଇ ଦେଖନ୍ତୁ ନା ଟିକିଏ ଆଗରୁ ମୁଁ ପରସ ପେକ୍‌ଟିଭର କଥା ଭବୁଥିଲି । ପିଲାଦିନେ ଆମେ ରହୁଥିଲୁଁ ରେଲ-କଲୋନୀରେ । ମୋ ବାବାଙ୍କର ଥିଲା ଟ୍ରଲୀ-କ୍ଲର୍କର ଚାକିରୀ । କାଟିହାରରେ ଆମର ରେଲ କୋୟାର୍ଟରସ୍‌ର ପଡିଶା ଘରୁ ପ୍ରାୟ ଗୋଟିଏ ଝିଅ ଆସୁଥିଲା ଆମ ଘରକୁ, ତାର ସାବତମା ବୋଲି ଘରେ କେହି ଆଦର କରୁନଥିଲେ ତାକୁ । ସେ ଆସି ମା'ଙ୍କ ପାଖରେ ଗେଷେଇ ଘରେ ମଝିରେ ମଝିରେ ବସେ, ଜଡ଼ସଡ଼ ହୋଇ ଛିଣ୍ଡା ଫ୍ରକରେ ଅଣ୍ଟୁ ଢାଙ୍କି ପରଟା ବେଲି ଦିଏ, ମୋର କାନ୍ଦୁଣୀ ଛୋଟ ଭଉଣୀଟାକୁ କୋଳରେ ନେଇ ଘୂରି ଘୂରି ବୁଲେ, ଶୁଆଇ ପକାଏ । ମା ମୋତେ କହନ୍ତି, ଇୟା ସଙ୍ଗରେ ତୋର ବାହା ହେବ । ନା ଶୁଣି ମୁଁ ଝିଅଟାକୁ ଭଲ କରି ଦେଖିଥିଲି—ଆଉ କି ଯେ ନିଶା ଲଗିଯାଇଥିଲା । କି କରୁଣ କୃଶ ଖଡ଼ି ଗୋଟାକି ପରି ମୁହଁ ଖଣ୍ଡିକ—ଆଉ କି ଚକଚକ୍ ସୁନ୍ଦର । ଯେମିତି ପୃଥିବୀରେ ବେଶୀଦିନ ରହିବାକୁ ଆସିନି । ରମବାବୁ ଏତିକି କହି ଦୀର୍ଘଶ୍ୱାସ ଛାଡ଼ିଲେ, ଆଉ ମୁଁ ବ୍ୟଗ୍ର ହୋଇ ପଗ୍ଚରିଲି,—ତାପରେ କଣ ହେଲା, ସେ କଣ ମରିଗଲା ? ରମବାବୁ ମୁଣ୍ଡ ହଲାଇଲେ—ନା, ନା ମରିବ କାହିଁକି ? ତାକୁ ମୁଁ ବାହା ହୋଇଛି ବଡ଼ ହୋଇ । ସେ ବର୍ତ୍ତମାନ ମୋ ବୋହୂ । ଇୟା ମୋଟା ହୋଇଯାଇଚି; ବଦ୍-ମେଜାଜୀ, ମୋତେ ଖୁବ୍ ଶାସନରେ ରଖେ । କିନ୍ତୁ ଯେତେବେଳେ ଦେଖେ ଫ୍ରିଜ୍ ଖୋଲୁଛି, ଗହଣା ସଜାଡ଼ୁଛି, ଚାକର ମାନଙ୍କୁ ବକୁଛି କିମ୍ବା ସୋଫାରକୁ କହୁଛି ଗାଡ଼ି ବାହାର କରିବାକୁ, ସେତେ-ବେଳେ କେବେ ବିଶ୍ୱାସ ହୁଏନା ଯେ ଏ ସେଇ ଝିଅ—ଯାହାର ବେମାରି ସମୟରେ ମାଆ ଡିଇଟା ...ଲୋ ଲେମ୍ବୁ ଦେଇଆସିଥିଲା ବୋଲି ଏକ ଗାଲ ହସିଥିଲା । ଆଜି

ଦେଖନ୍ତୁ, ଖୁବ୍ ଝଗଡ଼ା କରି ବାହାରିଛି ଯା ସଙ୍ଗରେ । ମନଟା ବିଗିଡ଼ି ଥିଲା ସେ ଭଲପାଇବା କେଉଁଠି ଉଭେଇ ଯାଇଚି ଏବେ ? କିନ୍ତୁ ଏଠି ନିର୍ଜନରେ ବସି ସେଇ ପୁରୁଣା ଦିନ, ରୋଷେଇ ଘରେ ଚୁଲୀ ପାଖରେ ବସିଥିବା, ଛିଣ୍ଡା ଫ୍ରକରେ ଆଣ୍ଠୁ ଢାଙ୍କି ଯାର ବସିବାର ଭଙ୍ଗି ମନେ ପଡ଼ିଗଲା । ମନେ ପଡ଼ିଲା ମୋ ମାଆଙ୍କ ମୁହଁ— ସେ ମୁହଁ ବଡ଼ ମାୟା-ମମତାରେ ଯାର ବସିବାର ଦୀନ ଭଙ୍ଗିଟିକୁ ଦେଖିଚି । ଏମିତି ପୁଣି ମୋ ମନ ଭଲ ପାଇବାରେ ଭରି ଉଠିଛି । ବସାକୁ ଫେରିଯାଇ ହିଁ ଭଲାଗେ ତାର ରାଗ ଭଙ୍ଗିବି । ବୁଝିଲେ ନା ? ......କହି ଚାମବାବୁ ସେଇ ସାଦା ଝକ ଜିନ୍ ମୁହଁରେ ଦେଇ ହସିଲେ, କହିଲେ, ଏଇ ଯେଉଁ ଲୁହାଛଡ଼ ଘେରା ଟୁର୍ଗଟା—ଯାହା ଭିତର ଦେଇ ଆପଣଙ୍କୁ ଦେଖେଁ ସେଇଟାଇ ଅସଲ—ଏଇ ଛଡ଼ ଟୁର୍ଗଟା ।

ଏଇ ଯେ ତେଇଶ ଚବିଶ ବର୍ଷର ପିଲାଟି ଏଇନା ପେମେଣ୍ଟ ପାଇଁ ଛିଡ଼ା ହୋଇଛି, ପତଳା ଟୋକେନ ଟାକୁ ଠକ୍ ଠକ୍ କରୁଚି ଅନ୍ୟମନସ୍କ ଭାବେ କାଉଣ୍ଟର କାଠରେ, ଇଏ ମୋତେ ଚିହ୍ନେ । ଯାର ବାବାର ଅଛି ପୁରୁଣା ଗାଡ଼ି କିଣା ବିକା ବ୍ୟବସାୟ । ଆଗେ ଯା ବାବା ଆସୁଥିଲେ, ଏବେ ଇଏ ଆସୁଚି ବ୍ୟାଙ୍କ୍ । ବେଳେ ବେଳେ ଆଖି ପଡ଼ିଲେ ମୁଁ ହସି ପଚାରେ—କଣ ବାବା ଭଲ ତ ! ଖୁସି ହୋଇ ବେକ ସିଧା କରି କହେ—ହଁ—। କିନ୍ତୁ ମୋର ସନ୍ଦେହ ହୁଏ ଯେ, ଦିନେ ଯଦି ଧରନ୍ତୁ ହଠାତ୍ କରି ମୋତେ ଏଠୁ ଅନ୍ୟତ୍ର ପଠାଇ ଦିଆଯାଏ, ଏବଂ ମୋଟାମୋଟି ସାଧାରଣ ଚେହେରାର କୌଣସି ଲୋକକୁ ବସାଇ ଦିଆହୁଏ ଏ ଜାଗାଟାରେ, ତେବେ ଏ ହୁଏତ ବୁଝି ପାରିବ ନାହିଁ ତଫାତ୍‌ଟା । ସେତେବେଳେ ବି ଅନ୍ୟମନସ୍କ ଭାବରେ ପିତଳର ଟୋକେନଟାକୁ ଠକିବ କାଠର କାଉଣ୍ଟରରେ, ଅନ୍ୟମନସ୍କ ଭାବେ ଚାହିଁ ରହିବ, ନୂଆ ଲୋକଟି ଆଡକୁ, ଆଖିରେ ଆଖି ପଡ଼ିଲେ ସେହି ନୂଆ ଲୋକଟି ଆଡ଼କୁ ଚାହିଁ ପରିଚିତ ପରି ଟିକିଏ ହସିଦେବ । ଭଲଟା ଧରାପଡ଼ିବାକୁ ଟିକିଏ ସମୟ ଲାଗିବ ଯାର । କାରଣ, ଇଏ ତ, ସତରେ କେବେ ମୋତେ ଦେଖେ ନା । ଇଏ ହୁଏତ ଯାର ନୂଆ ପ୍ରେମିକାଟି କଥା ଭାବୁଛି ?ଇନା । ଭାବୁଚି ଶୀଘ୍ର ଯେ ଗୋଟାଏ ସ୍କୁଟର କିଣିବ । ଇଏ ବେକ ଭାଙ୍ଗି ରିସେପସନ ର ଝିଅଟି ଆଡ଼କୁ କେତେଥର ଚାହିଁଲା । ଥରେ ଟୋକେନ୍‌ଟାର ନମ୍ବର ଦେଖିନେଲା ଛଡ଼ଘର ଭିତର ଦେଇ ଦେଖିଲା ମୋର ଦୁଇହାତ କ୍ଲାନ୍ତିକର ଭାବେ ମୋଟା ଗୋଛାଏ ଟଙ୍କା ଗଣୁଛି । ଯେ ମୋ ମୁହଁଟାକୁ ଏକ ପଲକ ଚାହିଁ ହିଁ ଆଖି ଫେରାଇ ନେଲା । କିନ୍ତୁ ମୁଁ ଜାଣେ ସେ ମୋତେ ଦେଖିଲା ନାହିଁ । ଆଉ ପନ୍ଦର ମିନିଟ ପରେ ହିଁ ଦୁଇଟା ବାଜିବ ।

ସେତେବେଳେ ମୁଁ କ୍ୟାଶ୍ ବନ୍ଦ କରି ତଳକୁ ଯିବି ଟିଫିନ୍ କରିବାକୁ । ସେତେବେଳେ ଇଏ ଯଦି ମୋତେ ରାସ୍ତାରେ ଦେଖିବାକୁ ପାଏ, ମୁଁ ଫୁଟପାଥ୍‌ର ଥିନ୍ ଆରାରୁଟ୍ ଆଉ ଭଣ୍ଡରେ ଗ୍ଲ ଖାଉଛି, ସେତେବେଳେ କଣ ମୋତେ ଚିହ୍ନିବ ଇଏ ?

କଦଳୀ କେତେ କରି ହେ ? ଗ୍ରୁଳିଶ ପଇସା ଯୋଡ଼ା—କହୁଚ କଣ ? ହଁ, ହଁ, ମର୍ତମାନ ଯେ ମୁଁ ତା ଜାଣେ । ମର୍ତମାନ ମୁଁ କଣ ଚିହ୍ନେନା ? ଏଇ ସୁନ୍ଦର ହଳଦିଆ ରଙ୍ଗ, ମସୃଣ ଚୋପା, ପ୍ରକାଣ୍ଡ ବଡ଼ ମର୍ତମାନ ଦେଖିଲେ ହିଁ ବୁଝାଯିବ । ତା ଅବଶ୍ୟ ଆଜି ମୋର କଦଳୀ ଖାଇବାର ତାରିଖ ନୁହେଁ । ଗତକାଲି ତ ଖାଇଛି । ମୁଁ ଦିଦିନ ପରେ ପରେ କଦଳୀ ଖାଏ । ହଉ ଦିଅ ଗୋଟାଏ । ନା, ନା, ଏଇ ଗୋଟାକ ହିଁ—ଏଇ ଯେଁ କୋଡ଼ିଏ ପଇସା ଭଇ । ଆହା ବେଶ କଦଳୀ । ଚମତ୍କାର, ଖିଆ ପରେ ବି ମୁଁ ଅନେକ ସମୟ ଚୋପାଟା ଧରି ରଖିଲି ହାତରେ, ସ୍ମୃତି—ଚିହ୍ନ ହିସାବରେ । ଦଶ—ପନ୍ଦର ମିନିଟ୍ ଟିକିଏ ଇଆଡ଼େ ସିଆଡେ ଘୂରି ବୁଲିଲି । କଦଳୀର ଚୋପାଟା ମୋ ହାତରେ ରହିଛି । ମୋ ଗ୍ରିପଟେ ନିରୁଦ୍ବେଗ ଭବରେ ଲୋକ ବାକ ଗ୍ଲି ଯାଉଛନ୍ତି । ଖୁବ୍ ନିର୍ବିକାର ସେମାନଙ୍କ ମୁହଁ ଓ ଆଖି । ଏମାନେ କେବେ ଯୁଦ୍ଧ ବିଗ୍ରହ କରି ନାହାନ୍ତି, ଦେଶ ବା ଜାତି ପାଇଁ ପ୍ରାଣ ଦେବାକୁ ହୋଇ ନାଇଁ ଏମାନଙ୍କୁ । ଏମିତିକି କୌଣସି କଠିନ କାମର ସମାଧାନ କରି ନାହାନ୍ତି ଏମାନେ ସମସ୍ତେ ମିଳି । ଜାତିଟା ମରି ଆସୁଚି ଆସ୍ତେ ଆସ୍ତେ ଅନ୍ତର୍ଭବନାରେ ମସ୍ତ ହୋଇ ଗ୍ଲିଛନ୍ତି ଏମାନେ, ଗ୍ଲିଛନ୍ତି, ଗ୍ଲିଛନ୍ତି—ଜଣେ ଅନ୍ୟ ସମ୍ବନ୍ଧରେ ନିସ୍ପୃହ ରହି । ଏମାନଙ୍କର ସମୟ ଜ୍ଞାନ ନାଇଁ—ଉଣିଶଶ ଅଣଷଠି କହିଲେ ଏମାନେ ଗୋଟାଏ ସଂଖ୍ୟା ମାତ୍ର ବୁଝନ୍ତି, ତିନିହଜାର ବର୍ଷର ଇତିହାସ ବୁଝନ୍ତି ନାଇଁ । ଏମାନଙ୍କ ପାଖରେ 'ଟେଲିପାଥୀ' ବା କ୍ରୀକ୍ ରୋ ଯେମିତିକା ଶବ୍ଦ, 'ଭରତବର୍ଷ ବି ସେମିତି ଏକ ଶବ୍ଦ ।

ଦୟା କରି ମୋତେ ଦେଖନ୍ତୁ । ଏଇ ଯେ ମୁଁ—ଅରିନ୍ଦମ ବସୁ ଅରିନ୍ଦମ ବସୁ-ଏଇ ଯେ ନାଁ—ଲମ୍ବା' ନା—ଗେଗା' ନା—ଗୋର ଜଣେ ଲୋକ । ମୁଁ ଟେଲିପାଥୀ ନୁହେଁ—କ୍ରୀକ୍ ରୋ ନୁହେଁ, ଭରତବର୍ଷ ବି ନୁହେଁ ଏଇ ଶବ୍ଦ ଗୁଡ଼ାକ ସଂଗେ ଅରିନ୍ଦମ ବସୁ— ଏଇ ଶବ୍ଦଟାର ଟିକିଏ ତଫାତ୍ ଅଛି, କିନ୍ତୁ ତା କଣ ଆପଣ ଧରି ପାରିବେ ?

ଆଉ ସେ ସବୁ କଥା । ମଝିରେ ମଝିରେ ମୋର ବି ସନ୍ଦେହ ହୁଏ—ମୁଁ କଣ ସତରେ ଅଛି ? ନା, ନାଇଁ ? ବ୍ୟାଙ୍କର ଏଇ ଛତ ଟୁଙ୍ଗି ଦେଇ ଲୋକେ ହାତ

ବଢ଼ାଇ ଟଙ୍କା ଗଣି ନିଅନ୍ତି, କେହି କେହି ମୃଦୁ ହସି ଧନ୍ୟବାଦ ଦେଇ ଯାନ୍ତି, ଖିଆଲ ବି କରନ୍ତି ନାହିଁ ବେଢ଼ା ଏପଟେ ବିଶାଳ ପରିବର୍ତ୍ତନ ଘଟି ଯାଇଛି । ସେଇ ନ୍ୟୁ ମାର୍କେଟର ଘଟନାର କଥା ଧରନ୍ତୁନା । ମୋ ବୋହୂ ବୁଲି ବୁଲି ମୋତେ ଖୋଜୁଚି, ମୋତେ ସାମନାରେ ଦେଖି ଆଖିରେ ଆଖି ରଖି ବି ପାର୍ ହୋଇ ଯାଉଛି ମୋତେ, ଭାବୁଚି—କି ଆଶ୍ଚର୍ଯ୍ୟ, ଲୋକଟା ଗଲା କୁଆଡ଼େ ?

ଖୁବ୍ ଯତ୍ନର ସହିତ ମୁଁ କଦଳୀ ଚୋପାଟା ଫୁଟ ପାଥ୍ ମଝିରେ ରଖିଦେଲି । ଉଦାସୀନ ମହାଶୟଗଣ, ଯଦି ଇଆ ଉପରେ କେହି ପାଦ ଦିଅନ୍ତି ତାହେଲେ ଗୋଡ଼ ଖସି ପଡ଼ି ଯାଉ ଯାଉ ଆପଣ ହଠାତ୍ ଚମକି ଉଠି ଆପଣଙ୍କ ସମ୍ବିତ୍ ଫେରି ପାଇବେ । ଯଦି ଖୁବ୍ ବେଶୀ ଚୋଟ ନ ଲାଗେ ଆପଣଙ୍କୁ, ଯଦି ପଡ଼ୁ ପଡ଼ୁ ସମ୍ଭାଳି ଯାଆନ୍ତି, ତାହେଲେ ଦେଖିବେ ଆପଣଙ୍କର ମସ୍ତ ଲାଭ ହୋଇଛି । ଆପଣ ଚାରିଆଡ଼କୁ ଚାହିଁ ଦେଖିବେ କେଉଁ ରାସ୍ତା ଦେଇ ଆପଣ ଚାଲୁଛନ୍ତି ବା ଆପଣଙ୍କର ମନେ ପଡ଼ିଯିବ-ଦୁର୍ଘଟଣା ଗୁରୁତର ହେଲେ ଆପଣଙ୍କ ହାତ ଗୋଡ଼ କିମ୍ବା ମୁଣ୍ଡ ଫାଟି ଯାଇଥାନ୍ତା ଭାବି ଆପଣ ଖୁବ ସତର୍କ ହୋଇଯିବେ ଆପଣଙ୍କର ବିପଜ୍ଜନକ ଚାରି ପାଖଟା ସମ୍ବନ୍ଧରେ—ହୁଏତ ଆପଣଙ୍କ ଭିତରର ମୁମୂର୍ଷୁ 'ମୁଁ'ଟା ଜାଗି ଉଠି ଭାବିବ 'ବଂଚି ରହିବା କେତେ ଭଲ—ସେତେବେଳେ ହୁଏତ ମଣିଷ ସମ୍ବନ୍ଧରେ ଆପଣ ଆଉ ଟିକିଏ ସଚେତନ ହୋଇ ଉଠିବେ—ଏବଂ କହି ହେବନି ଆପଣଙ୍କର ହୁଏତ ଏକଥା ବି ମନେ ପଡ଼ି ଯାଇପାରେ ଯେ, ଆଜି ହେଉଛି ଉଣିଶଶ ଅଣଷଠି ସାଲର ଷୋଳ ଜୁଲାଇ—ଆପଣଙ୍କର ବାହାଘରର ତାରିଖ, ତାରିଖ ଯେଉଁଟା ଆପଣ ଆପଣ ଏକଦମ ଭୁଲି ଯାଇଥିଲେ—ଏବଂ ଏ ବର୍ଷ ଆପଣଙ୍କ ବୟସ ଚାଳିଶ ପାର ହେଲା । ଏଇ ଯୁଦ୍ଧ ଏବଂ ବିପ୍ଳବହୀନ ଭାରତବର୍ଷରେ ଗୋଟିଏ ନିସ୍ତେଜ ଦିନହେଲେ ରାସ୍ତାରେ କଦଳୀ ଚୋପା ପକାଇ ମୁଁ ଆପଣଙ୍କର ଖୁବ୍ ଅପକାର କରି ନାହିଁ ।

ଆପଣ କଣ ବର୍ତ୍ତମାନ ଚନ୍ଦ୍ର କଥା ଭାବୁଛନ୍ତି ? ଆଉ ତିନି ଜଣ ଦୁଃସାହାସୀ ମଣିଷଙ୍କ କଥା ! ଭାବିବେ ନାହିଁ । କଣ କାମ ଆମର ସବୁ ଏଗୁଡ଼ାକ ଭାବି ଭାବି । ସାଧାରଣ ମଣିଷ ଏଥିରେ ଭୟଙ୍କର ଉତ୍ତେଜିତ ହୋଇ ପଡ଼େ ଆଉ ତାପରେ ଭୀଷଣ ଅବସାଦ ଆସେ ଏକ ସମୟରେ । ସେମାନଙ୍କର ଖୁବ୍ ଭଲ ଯନ୍ତ୍ର ଅଛି, ସେମାନେ ଠିକ ଚନ୍ଦ୍ର ଉପରେ ଓହ୍ଲାଇ ପଡ଼ିବେ ଏବଂ ଫେରି ଆସିବେ । କିନ୍ତୁ ସେ କଥା ଭାବି ଆପଣ ଅଯଥା ଉତ୍ତେଜିତ ଏବଂ ଅନ୍ୟମନସ୍କ ହେବେ ନାହିଁ । ରାସ୍ତା ଦେଖି ଚାଲନ୍ତୁ । ରାଜ ଭବନର ସାମନା ବାଙ୍କଟା ଘୁରି ଯାଇ ଦେଖନ୍ତୁ କି ସୁନ୍ଦର ଜ୍ୟୋତ୍ସ୍ନା

ପ୍ରକାଣ୍ଡ ମଇଦାନ, ଉଦ୍ୟାନ, ଆକାଶ । ପାଖ ଦେଇ ଯେଉଁ ସବୁ ମଣିଷମାନେ ଚାଲିଛନ୍ତି ସେମାନଙ୍କୁ ଦେଖି ନିଅନ୍ତୁ, ଚିହ୍ନି ରଖନ୍ତୁ ଯେତେଦୂର ସମ୍ଭବ ଅନ୍ୟର ମୁହଁ ଯେମିତି ଯେ କୌଣସି ଜାଗାରେ ଦେଖା ହେଲେ ପୁଣି ଚିହ୍ନି ପାରିବେ । ଏଇ ସୁନ୍ଦର ଅପରାହ୍ନରେ ମଇଦାନ୍ ପାଖାପାଖି ମୁଁ ବି ଆପଣଙ୍କ ସଙ୍ଗରେ ଚାଲିଛି—ମୋତେ ଦେଖନ୍ତୁ । ଏଇ ତ ମୁଁ ମୋ ଅଫିସରୁ ବାହାରିଲି । ଟିକିଏ ଆଗରୁ ବାହାରିଛି ଆଜି, ଖେଳ ଦେଖିବାକୁ ଯିବି ବୋଲି । ମନେ ହେଉଛି ଆପଣ ବି ଏଇ ଦିଗକୁ—ନା ?

ଦେଖନ୍ତୁ କି ଆହାମ୍ମକ ପିଲଟା—ଅଫ୍ ସାଇଡ୍‌ରେ ଛିଡ଼ା ହୋଇ ସୁନ୍ଦର ଚାନ୍ସଟା ନଷ୍ଟ କରିଦେଲା । ଆଉ ମାତ୍ର ଦଶ ମିନିଟ ଅଛି, ଏବେ ସୁଦ୍ଧା ଗୋଲ ହୋଇନି । ଏଇ ପିଲଟା—ହାୟ, ଈଶ୍ୱର କିଏ ଯାକୁ ଏଇ ଲାଲ ହଳଦିଆ ଜର୍ସି ପିନ୍ଧାଇଛନ୍ତି ! ଯାକୁ ବାହାର କରି ଦେଉ ପଡ଼ିଆରୁ । ଦିଅନ୍ତୁ ତ ମହାଶୟ, ଚାର୍ଲି ଗୁଳବ କରି ଯାର ଭୂତ ଛଡ଼ାଇ । ମୋ ଜିଭରେ ପୁଣି ଖରାପ କଥା ଗୁଡ଼ାକ ପଇଟେ ନାହିଁ । କିନ୍ତୁ ଦେଖନ୍ତୁ ରାଗରେ ମୋର ବି ହାତ ଗୋଡ଼ କଂପଛି । ଆଜି ସକାଳୁ ଚନ୍ଦ୍ର ଆଉ ତିନି ଜଣ ଦୁଃସାହସୀ ମଣିଷଙ୍କ କଥା ଭାବୁ ଭାବୁ ମୋର ବି ନଭଗୁଡ଼ାକ ନିସ୍ତେଜ ହୋଇଅଛି । ତା'ପରେ ଏଇ ଦେଖନ୍ତୁ ଫାଲତୁ ଟୀମଟା । ମୋ ଦଳ ପ୍ରାୟରୁ ନେଇ ନେଇଛି ଗୋଟାଏ ପଏଣ୍ଟ, ଗୋଟାଏ ପଏଣ୍ଟ—କି ସାଂଘାତିକ । ଲଆଡ଼େ ଆଉ ଆଠ କି ନ ମିନିଟ୍ ସମୟ ଅଛି ମାତ୍ର । କଣ କହୁଛନ୍ତି ଦାଦା, ଗୋଲ ହେବ ? କିମିତି ହେବ ? ବଜ୍ଜାତ୍ ଟୀମଟାର ସବୁ ଖେଳଓ୍ୱାଡ଼ ପଛେଇ ଆସି ପାଚିରି ଗଢ଼ିଛନ୍ତି ଗୋଲ ସାମନାରେ । ଆଉ ଏମାନେ ଖେଳୁଛନ୍ତି କିମିତି ଦେଖନ୍ତୁ । କିଏ କହିବ ଯେ ଗୋଲ ଦେବାର ଇଚ୍ଛା ଅଛି ? ଏଇ ଯେଉଁ ପିଲଟା—ଅଫ୍ ସାଇଡ୍‌ରେ ଛିଡ଼ାହୋଇ ଦିନର ସବୁଠାରୁ ସହଜ ଚାନ୍ସଟାକୁ ମାଟି କରିଦେଲା -ମୋର ଇଚ୍ଛା ହେଉଛି ଯା ସାମନାରେ ଯାଇ କହନ୍ତି—ଏଇ ମୋତେ ଦେଖ, ମୁଁ ଅରିନ୍ଦମ ବସୁ, ଏଇ ଟୀମ୍‌ଟାକୁ ମୁଁ ପିଲାଟି ଦିନରୁ ସପୋର୍ଟ କରି ଆସିଛି । ଜିତିଲେ ଠାକୁରଙ୍କୁ ଭୋଗ ଦେଇଛି, ହାରିଲେ ସୁଇସାଇଡ୍‌ର କଥା ଭାବିଛି । ତା ବାବୁ ତମେ କଣ ବୁଝିବ ସବୁ ! ତୁମେ ତ ଜାଣ ବି ନାହିଁ ଯେ ମୁଁ—ଏଇ ଭିଡ଼ ଭିତରେ ବିଶେଷ ଏକ ଜଣ—କିଭଳି ଦୁଃଖ ନେଇ ଛଳ ଛଳ ଆଖିରେ ଘଡି ଦେଖୁଛି ! ଅବଶ୍ୟ ସେଥିରେ ଆଉ କଣ ଯାଏ ଆସେ ! ମୁଁ କାନ୍ଦେ କିମ୍ବା ହସେ—କିମ୍ବା ଯାହା କରେ – କେହି ତ ଆଉ ମୋତେ ଦେଖୁନି ।

ନା, ମହାଶୟ ଗୋଲ୍ ହେଲା ନାହିଁ । ରେଫରୀ ଲମ୍ବା ଏକ ହୁଇସିଲ ବଜାଇ ଦେଲା । ଖେଳ ଶେଷ । ବର୍ତ୍ତମାନ ଦୟା କରି ମୋତେ ଥରେ ଦେଖନ୍ତୁ, କିଭଳି ଅବସାଦଗ୍ରସ୍ତ ମୁଁ ! କାନ୍ଧ ଭାଙ୍ଗି ପଡୁଚି । ଦେଖନ୍ତୁ ମୋ ଟୀମ୍‌ଟାକୁ ମୁଁ କେତେ ଭଲପାଏ ? କିନ୍ତୁ ସେଥିରେ ଟୀମ୍‌ର କିଛି ଯାଏ ଆସେ ନାହିଁ । ସେମାନେ ଚିହ୍ନନ୍ତି ନାହିଁ ମୋତେ—ଅଥଚ ମୁଁ ପ୍ରତି ହାରଜିତ୍ ପରେ କେତେ ହସିଛି—ଡେଇଁଛି, କାନ୍ଦିଛି —ଥାପୁଡ଼ାଇ ଦେଇଛି ଅଚିହ୍ନା ଲୋକର ପିଠି । ବିଲକୁଲ । ସେଥିରେ କାହାର କିଛି ଯାଏ ଆସେ ନାହିଁ । ଏଇ ଯେ ସକାଳୁ ମୁଁ ଚନ୍ଦ୍ର ଆଉ ତିନିଜଣ ଦୁଃସାହସୀ ମଣିଷଙ୍କ କଥା ଭାବି ଚିନ୍ତିତ—ଭଲକରି ଭାତ ଖାଇ ପାରିନି ଉତ୍ତେଜନାରେ—ଏଥିରେ ବା କାହାର କଣ ଯାଏ ଆସେ ?

ଦୟାକରି ମୋତେ ଥରୁଟିଏ ଦେଖନ୍ତୁ । ନା, ମୁଁ ଜାଣେ, ଆପଣ ଲୀଗ୍‌—ଟେବୁଲରେ ଆପଣଙ୍କ ଟୀମର ଅବସ୍ଥାନ କଥା ଭାବି ବିବ୍ରତ । ତା ଉପରେ ଚନ୍ଦ୍ର ଓ ତିନିଜଣ ଦୁଃସାହାସୀ ମଣିଷଙ୍କ କଥା ବି ଭାବିବାକୁ ହେଉଛି ଆପଣଙ୍କୁ । କେତେ କଣ ଘଟି ଯାଉଛି ପୃଥିବୀରେ ! ସତ୍ତେ ଅନନ୍ତ୍ରିଶ ଫୁଟ ଲମ୍ଫ ଦେଉଛି ମଣିଷ, ଗୁଳିରେ ମରି ଯାଉଛି ପ୍ରେସିଡେଣ୍ଟ, ଭୋଟରେ ହାରି ଯାଉଛି ଆପଣଙ୍କ ଦଳ, ବିପ୍ଳବ ଆସିବାକୁ ବହୁ ଡେରି କରୁଛି । ତେଣୁ, ମୁଁ ଅରିନ୍ଦମ ବସୁ ବ୍ୟାଙ୍କର କ୍ୟାଶ କ୍ଲର୍କ—ଆପଣଙ୍କର ଏତେ ପାଖରେ ଥାଇ ସୁଦ୍ଧା ଆପଣ ମୋତେ ଦେଖି ପାରୁ ନାହାନ୍ତି ।

ଏଇ ଯେ ଦୋତାଲାର ବାରଣ୍ଡାରେ ରେଲିଂରେ ଝୁଙ୍କି ଛିଡ଼ା ହୋଇଛି ମୋର ଛଅ ବର୍ଷ ବୟସର ସାନ ପୁଅଟା—ହାମ୍ଭୁ । ବଡ଼ ଦୁରନ୍ତ ପିଲା । ସକାଳ ବେଳୁ ବହିନା ଦେଇଛି—ରଥର ମେଳାକୁ ଯିବି ବାବା, ତୁମେ ଜଲଦି ଜଲଦି ଫେରା । ଏଇଯେ ଏଇନା ଛିଡ଼ା ହୋଇଛି ମୋ ପାଇଁ । କୁଂଚୁକୁଂଚିଆ ବାଳ ତଳେ ଜଳ ଜଳ କରୁଚି ଦିଟା ଆଖି, ମୁଁ ଏତେ ଦୂରରୁ ଦେଖି ପାରୁଚି ।

ମୁଁ ସିଡ଼ିରେ ପାଦ ଦେଇଚି ମାତ୍ର, ସେ ଉପରୁ ଦୁମ୍‌ଦାମ୍ କରି ଓହ୍ଲାଇ ଆସିଲା—ଯାର ମା ଉପରୁ ପାଟି କରୁଚି-ହାପୁ-ଉ, କୁଆଡେ ଗଲୁ ଯେ ହାପୁ ଉଉ । ଏକ ଗାଲ ହସି ହାପ ଝାମ୍ପ ପଡ଼ିଲା ପ୍ରାୟ· କେତେ ଡେରି କଲ ବାବା ! ଯିବ ନାହିଁ ! ହଁ ମହାଶୟ, ମାହାବ୍ଯୁ ଫେରି ଆସିଲେ—ଏଇ ନିଜ ଲୋକଙ୍କ ଭିତରେ ମୁଁ ଟିକିଏ ନିଶ୍ୱାସ, ଛାଡ଼ି ବଞ୍ଚେ । ଛୋଟ ପିଲାଟାକୁ ମୁଁ କୋଳକୁ ଉଠାଇ ନେଲି । ଯାର ଦେହରେ ମିଠା ଗୋଟାଏ ଝାଳର ଗନ୍ଧ, ଶୀତଦିନର ଖରା ପରି କବୋଷ୍ଣ ଯାର ନରମ ଦେହ । ମନ୍ଦିଉ ଦାଇ ଦେଲେ ମନେ ହୁଏ ଗୋଟାଏ ଅଦୃଶ୍ୟ ସ୍ନାନ ନେଉଛି ଯେମିତି । କହିଲି,

ଯିବି ବାବା, ବଡ଼ କ୍ଷୁଧା ପାଇଛି । ଟିକିଏ ବିଶ୍ରାମ କରି ନିଏଁ ।

ଯେତେ ଟିକିଏ ସମୟ ମୁଁ ବିଶ୍ରାମ କଲି ହାପୁ ମୋ ଦିହରେ ଲଗିଲା, ଉତ୍ତେଜନାରେ କହିଲା, ଶୀଘ୍ର କର । ଯାର ମା ଧମକ ଦେବାରୁ ବଡ଼ ମାୟାରେ କହିଲି, ବକ ନା, ପିଲା ଲୋକ । ପ୍ରକୃତରେ ଯାର ଏଇ କୁଣ୍ଢେଇ ଧରିବା ଭାବଟିକ ଖୁବ୍ ଭଲ ଲଗେ ମୋତେ ।

ବଡ଼ ଦୁରନ୍ତ ପିଲା । ମେଳାରେ ଗୋଡ଼ ନ ଦେଉଣ ହାତ ଛାଡ଼ି ଛୁଟି ଯିବାକୁ ଚାହେଁ । କହିଲି–ଏମିତି କରନ୍ତି ନାହିଁ । ହାପୁ, ହାତ ଧରିଥା, ମୋ ହାତ ଧରି ହିଁ ତୁ ଠିକ୍ ମେଳା ଦେଖି ପାରିବୁ । ସେ କେବଳ ଏପଟକୁ ସେପଟକୁ ଅନାଏ, ତାପରେ ଭୀଷଣ ଜୋରରେ ଚିତ୍କାର କରି ପଚାରେ–ଏଟା କଣ ବାବା ? ଆଉ ଏଠି ! ମୁଁ ତାକୁ ଦେଖାଇଦିଏ–ଏଟା ନାଗର ଦୋଳା, ମେରି ଗୋ ରାଉଣ୍ଡ, ଏଟା ସର୍କସର ତମ୍ବୁ । ଆଉ ଏଟା ମୃତ୍ୟୁ କୂପ ।

ବଡ ଗୋଟାଏ ପାମ୍ପଡ ଭଜା ହାତରେ ନେଇ ନାଗର ଦୋଳିକୁ ଉଠିଗଲା ହାପୁ । ଏଇ ଯେ ଦେଖା ଯାଉଚି ତାକୁ । ଆକାଶକୁ ଉଠି ହେଁ ହେଁ ହସି ହାତ ହଲାଉଛି-ସାଁ କରି ତଳକୁ ଖସି ଆସୁଚି ପୁଣି-ପୁଣି ଉଠି ଯାଉଚି । ସାରାଟା ସମୟ ମୋ ଆଡକୁ ଚାହିଁ ହସୁଛି ହାପୁ । ଦେଖି ମନ ଭରି ଯାଏ ।

ମୃତ୍ୟୁ କୂପର ଉପ୍ର ପ୍ଲାଟଫର୍ମରେ ଉଠି ଯାକୁ ଦେଖାଇଲି ଭୀଷଣ ଶବ୍ଦ କରି ଘୂରି ଯାଇ ଛୁଟି ଯାଉଛି ତୀର ବେଗରେ ମୋଟର ସାଇକେଲ । ସେ ମୋତେ କୁଣ୍ଢେଇ ଧରି ଦେଖିଲା ।

ତା'ପରେ ଅଧଘଣ୍ଟାର ସର୍କସ ଦେଖିଲୁଁ ଦି'ଜଣ । ଡିମ୍ବିରିଆ ମଣିଷ, ସିଙ୍ଗିଙ୍ଗ୍ ଡଲ, ଆଠଫୁଟ ଲମ୍ବା ଲୋକ । ହାପୁର କଥାବାର୍ତ୍ତା ବନ୍ଦ ହୋଇଗଲା । ଝଲମଲ କରିଉଠିଲା ଆଖି ।

ବାହାରେ ଆଣି ତାକୁ ଛାଡ଼ି ଦେଲି । ମୋ ପାଖେ ପାଖେ ସିଏ ଚାଲିବାକୁ ଲଗିଲା । ଯା ହାତକୁ ଧରିଥିବା ମୋ ହାତଟା ଝାଳେଇ ଯାଇଥିଲା ବୋଲି ମୁଁ ଯାର ହାତ ଛାଡ଼ିଦେଲି ।

ଏଇ ତ ଆଗେଇ ଯାଉଚି ମୋ ହାତ । ଛାଡ଼ି ଦୋକାନରେ ସଜା ହୋଇଥିବା ଗଦାଏ ଚୁଡ଼ିକି ଦେଖୁଚି ଝୁଙ୍କି ପଡ଼ି । ପୁଣି ଆଗେଇ ଯାଇ ଛିଡା ହୁଏ ଆଉ ଗୋଟାଏ ଦୋକାନ ଆଗରେ–ଯେଉଁଠ ଏରୋପ୍ଲେନ ଦୌଡ ହେଉଛି । ତାପରେ

ଆସ୍ତେ ଆସ୍ତେ ଆଗେଇ ଯାଉଚି ଇଏ, ଏଯାର ଗନ୍ ଆଉ ରଙ୍ଗଢଙ୍ଗ୍ ବଲ୍ ଦେଖିବାକୁ ଆସ୍ତେ ଆସ୍ତେ ପାଦ ପକାଉଛି । ......କ୍ରମେ ଭିଡ ଭିତରକୁ ଗ୍ଲଛି ଯାଉଚି ହାପୁ ......ମୁଁ ସେତେବେଳେ ମୋ ଟୀମ୍‌ଟା କଥା ଭବୁଥିଲି । ବେକାର ଗୋଟାଏ ପଏଣ୍ଟ ନଷ୍ଟ ହୋଇଗଲା ଆଜି । ଚାନ୍ଦ ଆଡକୁ ଗ୍ଲଲିଛନ୍ତି ତିନିଟା ମଣଷ—ଏମାନେ କଣ ପହଂଚ ପାରିବେ ?

ହଠାତ୍ ଖିଆଲ ହେଲ, ହାପୁକୁ ଦେଖା ଯାଉନି କେଉଁଠି । ଭିଡ଼ ମଧ୍ୟରେ ଏକ ସେକେଣ୍ଡ ଆଗରୁ ତାର ନେଳିଆ ରଙ୍ଗର ସାର୍ଟଟା ମୁଁ ଦେଖିଛି । ସେଠୁ ସେ ଟୁପ୍‌କିନା ଅଦୃଶ୍ୟ ହୋଇଗଲ । ହାପୁ—ଉ ବୋଲି ଡାକ ଦେଇ ମୁଁ ଛୁଟି ଗଲି.........

ହଁ, ମହାଶୟ, ଆପଣ କିଏ ଦେଖିଛନ୍ତି କି ନେଳିଆ ଜାମା ପିଂଧା ଗ୍ଲରି ବର୍ଷର ଗୋଟିଏ ପିଲକୁ ? ତା ନାଆଁ ହାପୁ, ବଡ଼ ଦୁରନ୍ତ ପିଲା । ଦେଖି ନାହାନ୍ତି ? ଝାଁକଡ଼ା ଝାଁକଡ଼ା ବାଲ, ଜୁଳୁଜୁଳୁ ଦିଟା ଦୁଷ୍ଟ ଆଖି......ନା, ନା, ଏଇ କୁ ଲ୍ଫ ଦୋକାନ ସାମନାରେ ଯିଏ ଛିଡା ହୋଇଛି ସେ ନୁହେଁ—ଯଦିଚ ଅନେକଟା ଏକା ରକମର ଦେଖିବାକୁ । ନା, ତାର ଚେହେରର ବିଶେଷ କିଛି ଚିହ୍ନ ମୋର ମନେ ପଡ଼ୁନାଇଁ—ଖୁବ୍ ସାଧାରଣ ଚେହେର—ଅନେକଟା ମୋ'ରି ପରି । କେବଳ କହିପାରେ ଯେ ତାର ବୟସ ଗ୍ଲରି ବର୍ଷ । ଆଉ ଦିହରେ ନେଳିଆ ଜାମା । ତ'ତ ନୀଳ ଜାମା ପିନ୍ଧା ବହୁ ପିଲା ଏଠି ରହିଛନ୍ତି, ଗ୍ଲରି ବର୍ଷ ବୟସର ବି ଅନେକ । ନା, ମହାଶୟ. ମୋ ପକ୍ଷରେ ଠିକ୍ ଠିକ୍ କହିବା ସମ୍ଭବ ନୁହେଁ ଏତେ—ଏଇ ହଜରେ ପୁଅ-ଝିଅଙ୍କ ଭିତରେ ଠିକ୍ କେଉଁ ଜଣକ—ଠିକ୍ କେଉଁ ଜଣକ ମୋର ହାପୁ—ଆଉ ବୋଧହୁଏ ହାପୁ ପକ୍ଷରେ ବି କହିବା ସମ୍ଭବ ନୁହେଁ ଏତେ ଜଣକ ମଧ୍ୟରେ କେଉଁ ଜଣକ ବୁଝିଲେ ନା, ଯାର ମା ବି ଥରେ ଠିକ୍ କରିପାରି ନଥିଲା । ଯଦି ହାପୁକୁ ଦେଖିବାକୁ ପାଆନ୍ତି ତେବେ ତାକୁ ଥରେ ଦୟା କରି କହିଦେବେ ଯେ, ଏଇ ମୁଁ-ଏଇ ମୁଁଇଁ ତାର ବାବା—। ଏଇ ମୋତେ ଟିକିଏ ଦେଖି ରଖନ୍ତୁ ଦୟାକରି—ଭଲକରି, ଭୁଲିଯିବେ ନାଇଁ— ।

# ପଶ୍ଚାତ୍‌ଭୂମି

## ଦେବେଶ ରାୟ

ବତାସ ଥିଲା ଅଡ଼ୁଆ ତଡ଼ୁଆ—ସାରଟା ଦିନ । ଦିନ ସାର ଚୈତ୍ର ମାସ ପରି ବତାସ ଥିଲା ଅଡ଼ୁଆ—ତଡ଼ୁଆ—ଦିନଟା ସାର । କ୍ଲାସ ଶେଷକରି କମନ-ରୁମକୁ ଯିବା ସମୟରେ ବିନୟର ଆଖି ପଡ଼ିଛି ସେମାନଙ୍କ ଇସ୍କୁଲର ଉତ୍ତର ଦିଗ ଘରଟା ଉପରେ । କମନରୁମ୍‌ରୁ କ୍ଲାସ୍‌କୁ ଯିବା ସମୟରେ ବିନୟ ଆଖିରେ ପଡ଼ିଛି ଇୟୁକ୍ଲିପଟାସ ଗଛର ଚୂଡ଼ା—କବରଖାନାଟା ଏଠୁ ଦେଖାଯାଏ ନାହିଁ ଯାର ପୂର୍ବ-ଦକ୍ଷିଣ କୋଣରେ ଏଇ ଗଛଟା ।

ସେଇ ବତାସରେ ଶରୀରର ଜଳୀୟ ଅଂଶ ଅତିରିକ୍ତ ପରିମାଣରେ ଶୁଖିଯିବା ଫଳରେ ଚମଡ଼ାଟା ଶୁଷ୍କ—ଖଡ଼ଖଡ଼ିଆ । ମୁହଁରେ ହାତ ବୁଲାଇଲେ ଜ୍ୱରର ଗନ୍ଧ । କିମ୍ବା ଲୁଗାପଟା ଯଦି ପରିଷ୍କାର ହୋଇଥାନ୍ତା, ଧୋବ ଫରଫର, ଦାଢ଼ୀଟା ଆଜି ଖିଅର ହୋଇଥାନ୍ତା—ତେବେ ଏତେ ଶୁଷ୍କ ଖଡ଼ଖଡ଼ିଆ ଲାଗୁ ନଥାନ୍ତା ।

ଇସ୍କୁଲର ଉତ୍ତର ଦିଗ ଘରଟା ଉପରେ ଆକାଶ ଛଡ଼ା କେଉଁଦିନ କିଛି ନଥିଲା । ଇୟୁକ୍ଲିପଟାସ ଗଛଟା ଛଡ଼ା ଉଚ୍ଚା କିଛି ନଥିଲା । ସେହି ଆକାଶ ଓ ଇୟୁକ୍ଲିପଟାସ ସମ୍ପୂର୍ଣ୍ଣ ନଥିବା ଶୂନ୍ୟତାକୁ ପ୍ରତିଭାତ କଲା, ଗୁରୁଦଶା ଗଛର ଉପସ୍ଥିତି ପଛରେ ଶୂନ୍ୟତା ପରି । କିଛି ଯେମିତି ଏଠି ଥିଲା ଏବେ ନାହିଁ—ସମାପ୍ତ ଯାତ୍ରାର ଆସର ପରି । ଏହି ଶୂନ୍ୟତାକୁ ବିନୟ ନିଜ ସଙ୍ଗରେ ଏତେ ମିଳାଇ ନେଇଥିଲା ଯେ ଏହି ଅଦିନ ବସନ୍ତର ହଓ୍ୱାରେ ତାର ଯେପରି ଚଞ୍ଚଳ ଆନନ୍ଦିତ ଓ ହୃଷ୍ଟ ହେବା ଉଚିତ ଥିଲା ତାହା ହୋଇ ନପାରି, ଦେହ ଓ ମନରେ ଏକଦା-ବର୍ତ୍ତମାନ, ସମ୍ପ୍ରତି ଅତୀତ କୌଣସି ଅନୁଭୂତିର ସ୍ପର୍ଶ ପାଇଥିଲା । ପଡ଼ିଆରେ ଅଶୋକ ପିଲାମାନଙ୍କୁ ନେଇ କ୍ରିକେଟ ପିଟୁଛି । ଅଶୋକର ପିନ୍ଧା ପ୍ୟାଣ୍ଟ ଏବଂ ଉଇକେଟ ପଛରେ ତାର ପ୍ରସ୍ତୁତ ଭଙ୍ଗିହିଁ ବିଶେଷ କରି ବିନୟର ମନୋହରଣ କରିଥିଲା । ବିନୟ କଳା ବୋର୍ଡ଼ରେ ସାଦା ଚକ୍ ଦେଇ ନିଜ ହାତରେ ଅଙ୍କା ଗଛ ଡାଳରେ ଉଡ଼ିବାକୁ ଉଦ୍ୟତ ଗୋଟିଏ ପକ୍ଷୀ ଆଡ଼କୁ ଅନାଇ ରହିଥିଲା, ତାପରେ ଦରଜାରେ ଅଡ଼ୁଆ ତଡ଼ୁଆ

ବତାସ ମଧ୍ୟରେ ଛଡ଼ା ହୋଇଥିଲା । ଦାଢ଼ୀଟା ଯଦି ସକାଳେ ଖିଅର ହୋଇଥାନ୍ତା, ବା ଜାମା କପଡ଼ା ଯଦିଁ ଆଜି ଧୋବ ଫରଫର ହୋଇଥାନ୍ତା, ତେବେ ବସନ୍ତର ଏ ବତାସକୁ ସେ ଆମନ୍ତ୍ରଣ ହିସାବରେ ଗ୍ରହଣ କରିଥାନ୍ତା । ଜଳୀୟ ପଦାର୍ଥ ଶୁଖି ଯାଇଥିବା ମୁହଁରେ, ଫଟା ଗାଲରେ ବତାସ ଲଗାଇ ଆଖି କୁଞ୍ଚେଇ ବିନୟ ଯେମିତି ନିଜକୁ ଅପଚୟ କରୁଥିଲା । ବସନ୍ତର ବତାସ ଦକ୍ଷିଣମଳୟ । ଏଟା ଉତ୍ତର ବଙ୍ଗଳା, ଦକ୍ଷିଣ ଦିଗରେ ସମୁଦ୍ର, ସମୁଦ୍ର ତୀରରେ କଲିକତା । କଲିକତାରୁ ଏ ବତାସ ଆସୁଛି—ଏମିତି ଗୋଟାଏ ସିଦ୍ଧାନ୍ତ ଯେପରି ବିନୟକୁ ଅପଚୟିତ ହେବା ଦିଗକୁ ଠେଲି ଦେଉଥିଲା । ପରବର୍ତ୍ତୀ କ୍ଲାସରେ ତେଣୁ ସେ ବୋର୍ଡ଼ରେ ଆଙ୍କିଥିଲା ନିଛକ୍ ଡ଼ିଶ୍ ଉପରେ କପ

ସନ୍ଧ୍ୟାବେଳେ ବତାସ ମନ୍ଥର । କୃଷ୍ଣ ପକ୍ଷର ଶୁଦ ବିଳମ୍ବିତ । ମନ୍ଥର ବତାସରେ ଗର୍ତ୍ତିର କଠୋରତର ଶୀତ । ପଥର ଧୂଳି ବାଲି ପରିଷ୍କାର ।

ସ୍ୟାଣ୍ଡେଲଟାର ଏଭଳି ଅବସ୍ଥା ଯେ ଘ୍ଲୁ ଘ୍ଲୁ ପାଦ ଶବ୍ଦର ବିଶିଷ୍ଟ ଏକ ଧ୍ୱନି ବାହାରେ, ଯାହା ଜନତାର ପଦଶବ୍ଦରେ ଅଶ୍ରୁତ ଥାଏ, ଅଥଚ ସାଂଧ୍ୟ ଜନହୀନତାର ସୁଯୋଗରେ ବର୍ତ୍ତମାନ ବିନୟ କାନରେ ସ୍ପଷ୍ଟ । ଲ୍ୟାଂଗ୍ରନୋ, ପଦଧ୍ୱନି କାନକୁ ଆସୁଛି, ଗଭୀର ଗର୍ତ୍ତିରେ ହଠାତ୍ ନିଦ ଭାଙ୍ଗିଗଲେ ଯେମିତି ଘଡ଼ିର ଶବ୍ଦ– ଅଭ୍ୟସ୍ତ, ବ୍ୟତିକ୍ରମହୀନ, ଅର୍ଥଶୂନ୍ୟ । ଏତେ ଏକଘେଇଁଆ, ନିଶ୍ଚିତ ଓ ବିରକ୍ତିହୀନ ଯେ ବିନୟର ମନେ ହେଲା, ଏହା ବନ୍ଦ ନାହିଁ, ଚାଲିଥିବ । ହଠାତ୍ ଥରେ ରହିଲା । ପଦଶବ୍ଦ ବନ୍ଦ । ତେବେ ଏ ପଦଶବ୍ଦ ମୋରି ପାଦର ? ମୋରି ପଥଚଲାର । ମୋରି । ଏହି ସିଦ୍ଧାନ୍ତରେ ପହଂଚି ବିନୟ ପୁଣି ଘ୍ଲିବାକୁ ଲାଗିଲା । ଲ୍ୟାଂଗ୍ରନୋ ବିରକ୍ତିହୀନ, ଅଭ୍ୟସ୍ତ, ବଦଳିବ ନାହିଁ, ରହିବ ନାହିଁ । ବର୍ତ୍ତମାନ ସ୍ୟାଣ୍ଡେଲଟା ଠିକ୍ କରିନେବି, ଏଇକ୍ଷଣି । ଘ୍ରିଆଡ଼କୁ ଏବଂ ସାମନାକୁ ଘ୍ହିଁଲା । ଉପାୟ ନାହିଁ । କଲିକତା ହେଲେ ସବୁରି ପାଦର ଶବ୍ଦରେ ମୋ ଶବ୍ଦ ଢାଙ୍କି ହୋଇଯାନ୍ତା–ଏଠି ଆଉ କାହା ପାଦର ଶବ୍ଦ ନାହିଁ । ମୁମୂର୍ଷୁ ରୋଗୀ ଯେପରି ବିକାର ଜୋରରେ ଶରୀରକୁ ସଙ୍କୁଚିତ-ପ୍ରସାରିତ କରେ, ହାତ ସଂଗ୍ରହିତ ଓ ଚକ୍ଷୁ ବିସ୍ତାରିତ କରେ, ଅତ୍ୟନ୍ତ ଅପରିହାର୍ଯ୍ୟ ନିତାନ୍ତ ଆବଶ୍ୟକ କିଛି ଅନିର୍ଦ୍ଦେଶ୍ୟ ଦାବୀ ଜଣାଇ ପରମୁହୂର୍ତ୍ତରେ ଝାଉଁଳି ପଡ଼େ, ସେମିତି ଜୁତା ମରାମତ କରିବାର ଦାବୀରେ ଚଂଚଳ ଓ ବ୍ୟସ୍ତ ହୋଇଉଠି ବିନୟ ପରମୁହୂର୍ତ୍ତରେ ଝାଉଁଳି ପଡିଲା । ଛ୍ୟା-କର୍-ଛ୍ୟାକ୍ । ଛ୍ୟାକର ଛ୍ୟାକ୍ ଏକଇ ଶବ୍ଦ, ଏକଇ । ଅନ୍ଧକାର ହେଉ ଆଉ ଆଲୋକିତଇ ହେଉ,

କୃଷ୍ଣ ଶୁକ୍ଳ ଯେଉଁ ପକ୍ଷ ହେଉ ନା କାହିଁକି, ଦାଢ଼ୀ ଖିଅର କରାହେଉ—ନ ହେଉ—ଏକଇ ଶବ୍ଦ । ଯଦି ଜନତା ଥାଆନ୍ତା— । ନାହିଁ— । ଅତଏବ— । ଗଧ ଗାଡ଼ି ଚାଲୁ, ଘୋଡ଼ା ଗାଡ଼ି ଚାଲୁ, କ୍ୟାଚ୍-କ୍ୟାଚ୍ କାନ୍ଦୁ, କାନ୍ଦୁ, କାନ୍ଦ୍, ମାନିବାବାଲା ନାହିଁ, ଖବରଦାର ନାହିଁ, କେହି ନାହିଁ ନୌକର, କେହି ନାହିଁ ମାଲିକ, ସବ୍ ହ୍ୟାୟ ପବ୍ଲିକ୍, ଛ୍ୟା-କର-ଛ୍ୟାକ୍ । ଜ୍ୱରଗ୍ରସ୍ତ ରୋଗୀ ପରି କେତେଗୁଡ଼ିଏ କର୍କଶ ଧ୍ୱନି ଉଚ୍ଚାରଣ କରି ବିନୟ ଯେପରି ନିଜର ଅନୁଭୂତିଗୁଡ଼ାକୁ ମୁକ୍ତି ଦେବାକୁ ଚାହିଁଲା, ଆଉ ପାଦଶବ୍ଦରୁ ତାର ମନେ ହେଲା, ଏ ପାଦଶବ୍ଦକୁ ବନ୍ଦ କରିବାର କୌଣସି ପ୍ରକ୍ରିୟା ତାକୁ ଜଣା ନାହିଁ, ଏ ସହରଟାକୁ ଜଣା ନାହିଁ, ଅତଏବ ଛ୍ୟା-କର-ଛ୍ୟାକ ଚାଲୁ ।

ନିଜର ସାରଦିନର ଅନୁଭୂତିକୁ, ବିଶେଷ କରି ସଂଧ୍ୟାବେଳେ ବାଟ ଚାଲିବା ବେଳେ, ଏଇ ଭାଷାରେ ପ୍ରକାଶ କରି ବିନୟର ତଳି ପେଟରୁ କଣ୍ଠ ପର୍ଯ୍ୟନ୍ତ ଭକ-ଭକ୍ ହସର ଗୋଟାଏ ବାନ୍ତି ପରି ଭାବ ଦେଖାଗଲା ।

ହସିବାର ଲୋକ ଘର ଭୁଲି ବିନୟ ପ୍ରାଣପଣେ ଗୋଟାଏ ମାତାଲ ପରି ହସି ଉଠିବାର ଚେଷ୍ଟା କରିବାକୁ ଲାଗିଲା । ବୋଧହୁଏ ହସରୁ ଦୁର୍ଗନ୍ଧ ଶୁଂଘିବାର ମତଲବରେ । ଉଦଗାରର ପ୍ରଥମ ଚେଷ୍ଟା ସମୟରେ ସେ ରହିଗଲା ନାହିଁ, କାରଣ ସେତେବେଳେ ସେ ଚିନ୍ତା କରୁଥିଲା—ଅନ୍ନପ୍ରାଶନ ସମୟରୁ ତ କମ ଜିନିଷ ପେଟରେ ଜମିନାହିଁ ! ପଚି ପଚି ଢୋଳ । ଆଃ ହାଃ କେୟାବାତ୍, ଲଗାଅ ପିଆଜ, ଆଳୁ କବାବ ସଞ୍ଜବେଳେ । ଭାବନାଟା ଶେଷ କରିବାକୁ ଯାଇ ସେ ତିନି ଥରିବାର ହାକୁଡ଼ି ଛାଡ଼ିବାକୁ ଗଲା, ଗଳାନଳୀରେ ଟାଣ ପଡ଼ିଛି । ଭାବନା ଶେଷରେ ଥରେ ଦିଥର ଚେଷ୍ଟା କରିବା ପରେ ସେ ଗୋଟାଏ ହାକୁଟି ମାରିଲା, ମୁହଁ ଆଁ କରିବାକୁ ଭୁଲି ଯାଇଥିଲା ବୋଲି ଗନ୍ଧ ଶୁଙ୍ଘା ହେଲନାହିଁ । ଏଥର ମୁହଁ ଆଁ କରିବାର ଦୁଇ ଚେଷ୍ଟା ପରେ—ଆହା କଣ ହେଉଚି—ବୋଲି ନିଜକୁ ଧମକାଇ ସେ ପୁଣି ବାଟ ଚାଲିଲା । ସଙ୍ଗେ ସଙ୍ଗେ ପୁଣି ସେଇ ଆଓୟାଜଟା ଉଠିଲା । ଛ୍ୟା—କର—ଛ୍ୟାକ୍, ଛ୍ୟା- କର—ଛ୍ୟାକ୍ । ଶବ୍ଦଟାକୁ ନ ଶୁଣିବାର ବାହାନା କରି ବିନୟ ଭାବିଲା—ଚାଲୁଚି, କିନ୍ତୁ କୁଆଡ଼େ ଚାଲିଚି ତ ଭାବୁନାହିଁ, ଭାବିଛି ? ନା ଘରୁ ବାହାରିବା ସମୟରେ ତ ଭାବିନାହିଁ । ସକାଳେ ଚା ଖାଇବା ପରି ଜଣ ସୁଧୀରଦାଙ୍କ ଘରକୁ ଯିବାକୁ ହେବ ? କଣ ହେବ ଯାଇ, ହୁଏତ କାଗଜଟା ଆଉ ଥରେ ପଢ଼ିବି । କିମ୍ବା ବାହାରର ଚୌକୀଟାରେ ଶୋଇ ରହିବି ? କିମ୍ବା ଏଇ ଝିଅଟାର ନାଆଁଟା କଣ ମ ? ଗୋଲାପ, ଟଗର, ଯୁଇ କଣ ? ମେନି ବିଲେଇ ଟିଲେଇ କଣ ?

ବିନୟ ଭବନ ର ସୂତ୍ର ହରାଇ ବସିଲା । ଏବଂ ସୂତା ଛିଣ୍ଡିଯିବା ପରେ ସେ ଆଉ ଗୋଟାଏ ସୂତା ପାଇଲା । ଛ୍ୟା–କର–ଛ୍ୟାକ୍, ଛ୍ୟା–କର–ଛ୍ୟାକ୍ । ଯେଉଁ ପଦଶବ୍ଦ ସମ୍ବନ୍ଧରେ ସେ ଅଚେତନ ଥିଲା, କେଉଁ ଏକ ଫାଙ୍କରେ ତାହା ତାକୁ ପୁଣି ଆକ୍ରମଣ କରିଛି । ଛ୍ୟା–କର–ଛ୍ୟାକ୍ । ଛ୍ୟା–କର–ଛ୍ୟକ୍ । ଯିବି ନାହିଁ, ଯିବି ନାହିଁ, ସୁଧୀରଦାଙ୍କ ଘରକୁ ଯିବି ନାହିଁ । ଗଳିଟା ସାମନାକୁ ଆସି ଯାଇଛି । ତେଣୁ ଆଉ ଥରେ ବିନୟ ନିଜକୁ ଶୁଣାଇଲା–ଯିବିନି, ଯିବିନି, କେବେ ଯିବିନି । ଗଳିଟା ଆସିଗଲା । ବାଆଁକୁ ନ ବଙ୍କାଇ ଯିବିନି ଯିବିନି କହି କହି ଆଉ ଦୁଇ-ଏକ ପାଦ ଯାଇ, ବିନୟ ରହିଯାଇ ନିଜକୁ ଧମକ ଇଲା–କଣ ଅଛି, ଯେତେ ସବୁ, ତା ତ ସୁଧୀରଦା ଘରେ ଅଛି, ଯାଏଁ, ନୋହିଲେ ତ ସାରଟା ସମୟ ଘରେ ବସି ରହିବାକୁ ହୋଇଥାନ୍ତା ।

ବିନୟ ବାଆଁକୁ ବଙ୍କାଇଲା । ଛ୍ୟା–କର–ଛ୍ୟାକ । ଛ୍ୟା–କର–ଛ୍ୟାକ୍ । ଇଏ ଏକ ଆଚ୍ଛା ଜ୍ୱାଳା ତ ! ସବୁ କଥା ଗୋଳମାଳ ହୋଇ ଯାଉଛି । ଆଜି ଯାଇ ବାବୁଇର ଗୀତ ଖାତାରେ ଛବି ଆଙ୍କିଦେବି । ହଁ, ଝିଅଟାର ନାମ ବାବୁଇ ! ବାଳିକାର ନାମ ବାବୁଇ । ଛ୍ୟା–କର–ଛ୍ୟାକ୍ । ଛ୍ୟା–କର–ଛ୍ୟାକ୍ । ଏକଇ ଶବ୍ଦ । ଏକଇ । ଅନ୍ଧକାର ହେଉ ଆଉ ଆଲୋକିତଇ ହେଉ । ସୁଧୀର ବାବୁଙ୍କ ଘର ପାଖକୁ ଆସି ବିନୟ ଦୁଃଖିତ ବୋଧ କଲା । କଲିକତା ପାଇଁ ସେ ବଡ଼ କାତର ହେଲା । ମା–ବାବା–ଭାଇ–ଭଉଣୀ ଭର୍ତ୍ତି ସେଠାର ଘରଠାରୁ, ବନ୍ଧୁ–ବାନ୍ଧବଗଣ ଭର୍ତ୍ତି କଫି ହାଉସ୍‌ଠାରୁ, ଲୋକ ଭର୍ତ୍ତି ସେଠାର ଟ୍ରାମ ବସ୍‌ରୁ ସେ ଏଇଠି ଓହ୍ଲାଇଲା । ଗେଟ୍ ଖୋଲିବା ପାଇଁ ସେଇ ଏକ ଘୋଇଆ ପଦ ଶବ୍ଦଟ କୁ ସେ କିଛି କ୍ଷଣ ପାଇଁ ବନ୍ଦ କଲା । ତା'ପରେ ପୁଣି ଛ୍ୟା–କର–ଛ୍ୟାକ, ଛ୍ୟା–କର–ଛ୍ୟାକ । ଏକଇ ଶବ୍ଦ ।

ବିନୟ ଯେମିତି ଏପରି ଏକ ନାବିକ, କଲିକତା ବନ୍ଦରରେ ଜାହାଜ ନଙ୍ଗର ପରେ ସନ୍ଧ୍ୟା କଟାଇବା ପାଇଁ ଯାହାକୁ ବଙ୍ଗଳା–ଆସ ମଠୁ ଆରମ୍ଭ କରି ମଧ୍ୟପ୍ରଦେଶ ପର୍ଯ୍ୟନ୍ତ ବିସ୍ତୃତ ପଶ୍ଚାତ୍‌ଭୂମିରେ ଛାଡି ଦିଆ ଯାଇଛି ।

ଆଉ ସେଇ ଏକଇ ଶବ୍ଦ । ଅମାବାସ୍ୟା ହେଉ ଆଉ ପୂର୍ଣ୍ଣିମା ହେଉ ଶୀତ ହେଉ, ଆଉ ଗ୍ରୀଷ୍ମ ହେଉ, ଦୃଶ୍ୟ ଏକଇ । ସ୍ଥିର ଦୃଶ୍ୟ ଏକଇ । ସ୍ଥିର ଦୃଶ୍ୟ, ନା ଚଳଚ୍ଚିତ୍ର । ଚିରକାଳର ଆକାଶ, ଚନ୍ଦ୍ର, ନକ୍ଷତ୍ର ଓ ବୃକ୍ଷ ସଙ୍ଗରେ ଆଉ ମେଉଁମାନେ

ଏ ଦୃଶ୍ୟ ରଚନା କରନ୍ତି, ସେମାନେ ବି ନିଷ୍ପ୍ରାଣ ; ଅଥଚ ଏଇ ସ୍ଥିର ପଟରେ ସେମାନଙ୍କର ଅଭିନୟ କରିବାର କଥା ଥିଲା । ଆଉ ଏଇ ପାତ୍ର—ପାତ୍ରୀମାନେ ସମସ୍ତେ ଜୀବନର ଅନୁକରଣ କରିବାକୁ ଶିଖିଛନ୍ତି । ଅନୁକରଣରେ ଶିଳ୍ପ ହୁଏନା । ଯଦି ଏମାନେ ଶିଳ୍ପ ରଚନା କରନ୍ତେ, ତେବେ ଏଇ ସ୍ଥିର ସନାତନ ଦୃଶ୍ୟପଟରେ ହିଁ କେତେ ଟ୍ରାଜେଡ଼ି ବା କମେଡ଼ି ଘଟନ୍ତା ତା ନୁହେଁ, ସବୁ ପ୍ରହସନ ହୋଇଗଲା । ହାୟରେ !

ଏକଇ । ଆଲୁଅ ହେଉ ବା ଅନ୍ଧକାର ହେଉ, କୃଷ୍ଣ ପକ୍ଷ ହେଲେ ରାତି ଅଧରେ ଦୃଶ୍ୟ ବଦଳିବ, ବଦଳଟା ଅବଶ୍ୟ ସନ୍ଧ୍ୟାବେଳର ତୁଳନାରେ । ଶୁକ୍ଳ ପକ୍ଷର ପ୍ରଥମ ରାତି ଓ କୃଷ୍ଣ ପକ୍ଷର ଶେଷ ରାତି ପ୍ରାଗୈତିହାସିକ । ପୂର୍ବ—ଦକ୍ଷିଣ କୋଣର ଆମ୍ବଗଛଟାରେ ଖଣ୍ଡ ବିଳମ୍ବିତ । ଖଣ୍ଡ ଖୋଜୁ ଖୋଜୁ କୁହାଯାଏ ଚନ୍ଦ୍ରକୁ ଖୋଜା । ସେକ୍ଷେଇ ଘରଟା ଲମ୍ବାରେ ଖୁବ୍ ଛୋଟ ନୁହେଁ । କିନ୍ତୁ ଗେଡ଼ାଳିଆ । ଗେଡ଼ାଳିଆ ବି ନୁହେଁ ଖୁବ୍ । ଛାତର ଟିଣଗୁଡ଼ାକ ବଦଳା ହୋଇନି । ବଡ଼ ଝିଅର ବାହାଘର ବେଳେ ସୁଧୀର ବାବୁ ଛାତ ବନ୍ଧେଇ ଥିଲେ । ଆଉ ସେତେବେଳେ ଯେଉଁ ରେଲିଂ ଦେଇଥିଲେ ତାହା ପ୍ରାୟ ଗୃହକୁ ଛୁଇଁଥିଲା । ଦମ୍ ଅଟକି ଯିବା ଭଳି । ସେକ୍ଷେଇ ଘରଟା ପଶ୍ଚିମ ଆଡ଼କୁ । ଉତ୍ତର ପାଖ ଭିଟାରେ ଦି ବଖୁରିଆ ଗୋଟାଏ ଘର ଏବଂ ଦକ୍ଷିଣକୁ ଲମ୍ବା ଆଉ ଏକ ଘର ।

ସେଇ ଏକଇ ଦୃଶ୍ୟ, ଏକଇ । ଆଲୁଅ ହେଉ ବା ଅନ୍ଧକାର ହେଉ । ସକାଳର ଦୃଶ୍ୟ ସବୁ ବଦଳି ଯାଏ । ଶରତ କାଳରେ ବୋଧହୁଏ ସକାଳର ଗୋଟାଏ ଈଷତ୍ ସ୍ଥିର—ରୂପ ଅଛି । ତା ଛଡ଼ା ତ ସେ ଚଳମାନ । ଚଳନ୍ତ ଛୁଟନ୍ତ ସକାଳ ନିୟତ ବଦଳାଏ, ବଦଳାଏ, ବଦଳାଏ । ଦିପହରଟା ବୁଢ଼ା ପହଁର । ଉପରବେଳା ଥାଏ ନା, ଥାଏନା । ଶସ୍ତା ନଡ଼ିଆ ତେଲର ଗନ୍ଧ, ମୁଡ଼ୀ ଡାଟିଆ କୋଳରେ, ମନୁକୁ ଉପରବେଳା ବାଳ ବାନ୍ଧିବାକୁ ହୁଏ, ବାଳ ନ ବାନ୍ଧିଲେ ରାସ୍ତାରେ ବା ମିନୁ ବାହାରିବ କିପରି ? ଅଥଚ ରାସ୍ତାରେ ତ ମିନୁକୁ ଯିବାକୁଇ ହେବ, ମିନୁ ଯେ ମଞ୍ଜଦର୍ଶୀ । ଦାଦାଙ୍କୁ, ସ୍କୁଲରୁ ଫେରିବା ପରେ ମିନୁର ଦାଦାଙ୍କୁ ମୋଟେ, ବିନୟକୁ ଯେ ଗୁଡ଼—ମୁଢ଼ୀ ଖାଇବାକୁ ନ ଦେଇ ସେ ଯିବ ବା କିମିତି ? ତେଣୁ ମିନୁ ହାତର ନଡ଼ିଆ ତେଲ ଗନ୍ଧ ଲାଗେ ମୋ ମୁଢ଼ୀ ଡାଟିଆରେ । ଆହା, ମିନୁଟାର କି କଷ୍ଟ ? ମିନୁର କି ଜ୍ୱାଳା ? ସଞ୍ଜବେଳେ, ଏବେ ଏଇ ସଂଧ୍ୟାରେ, ଆତୁର ଘର ବାହାରର ନୀରବତା ଚରଚରେ ? ନା କଣ ବନ୍ଦରର ପଶ୍ଚାତ୍‌ଭୂମି ଚିରକାଳ ହିଁ ଏମିତି ଶ୍ମଶାନ

ସଦୃଶ । ନା କେଣ ଏଇ ଘରେ ? ସେ କଣ ମୋ ଘରେ ? ନା କଣ ମୋ ମନରେ ଛ୍ୟା—କର—ଛ୍ୟାକ । ଛ୍ୟା—କର—ଛ୍ୟାକ୍ । ସବୁ ଗୁଳିଚି ଏଇ ଘରଟା । ଆଉ ଆମେ ଏଇ ସମାଚର ଯାତ୍ରୀ । କେବେ ଯେ ଇଷ୍ଟେସନ ଆସିବ !

ଦିଙ୍ଖିଚିଆ ତଉର ପାଖ ଘର ପାଖଦେଇ ଭିତରେ ଢୁକିବାର ଟିଣ ଦରଜା । ଘରଟାର ତିନି ଦିଗରେ ଅନେକଗୁଡ଼ାଏ ଝରକା । ପଶ୍ଚିମ ଦିଗ କାନ୍ଥକୁ ଲଗିଛି ବାବୁଇର ଟେବୁଲ । ତାଉପରେ ଏକ ସନ୍ଧ୍ୟାତାରାଙ୍କ ଛବି ଆଉ ମୁଣ୍ଡବିନ୍ଧାର ଔଷଧ । ବାଳିକାର ମୁଣ୍ଡ ବିନ୍ଧେ । ପଢ଼ା ଟେବୁଲ ଉପରେ ଲଣ୍ଠଣର ଆଲୁଅ । ବାବୁଇର ବହି ଦେଇ ଢଙ୍କା, ଆଲୁଅ ଦେଖାଯାଏନା । କିନ୍ତୁ ପଞ୍ଚଦଶୀ ବା ଷୋଡଶୀର ଗ୍ରୀବାପାଖ ଦେଇ ଆଲୁଅଟା ସ୍ରୋତ ପରି ପ୍ରବାହିତ ହୁଏ । ପଶ୍ଚିମର ଝରକା ଗୁଡ଼ାକ ବନ୍ଦ, ପୂର୍ବ ଦିଗର ଝରକା ଗୁଡ଼ାକ ଖୋଲା. ବାବୁଇ ପୂର୍ବ ପାଖ ଝରକାଗୁଡ଼ାକୁ ପିଠି କରି ବସେ । ତେଣୁ ବାଳିକାର ମୁହଁ ଗ୍ରୀବାପଟେ ଆଲୁଅର ସ୍ରୋତ ପୂର୍ବ ଝରକା ଦେଇ ବାହାରି ଆସୁଛି । କେହି ଦର୍ଶକ ଥିଲେ ଦେଖନ୍ତା—ବାବୁଇର ଟେବୁଲ—ଲଣ୍ଠଣର ଆଲୁଅ ପୂର୍ବ ଝରକା ଭେଦି ଏଇ ଟିଣ ଦରଜା ଉପରେ ଗୋଟାଏ ଆଲୁଅର ଆଭା ରଚନା କରିଛି । ଯଦି କେହି ଦର୍ଶକ ଥାଆନ୍ତା ସେ ଦେଖନ୍ତା—ଏଇ ଲଣ୍ଠଣର ଆଲୁଅ ସାମନାରେ ବାବୁଇର ମୁହଁର ସୀମାରେଖା ଦେଖା ଯାଉଛି । (ସେଟା କଣ ପବିତ୍ରତାର ବଳୟ ? ଅଥଚ ସେ ରେଖାର ଗୋଲତ୍ୱର ଇଙ୍ଗିତ, ଈଷତ୍ ଭଙ୍ଗାଚୂର ଅବୟବର ବିଶେଷତ୍ୱ), ଆଉ ସେଥିରେ ଅନେକ ଉଡ଼ା କେଶ । ବାବୁଇ ଜାଣେନା ଯେ ଗୋଟିଏ ଛବି, ଛବି ଜାଣେନା ସେ ଗୋଟାଏ ଛବି,-ଦର୍ଶକ ଜାଣେ ମଣିଷ ଛବି ହୁଏ, କବି ଜାଣେ ଛବି ମଣିଷ ହୁଏ । ବାବୁଇ ଗୀତଗାଏ "ତୁମେ କି କେବଳ ଛବି !"

ଟିଣର ଦରଜା ଦେଇ ଢୁକିଲେ କୁଅ ଘର୍ତ୍ତରେ ବାଡ । ଭଉଣୀର ପାଟିରି ମଝିରେ ଅଙ୍କା ଗୋଟାଏ ଝରକା ଓ ତାର ଶିଖା । ଝରକା ସାମନାରେ ଟେବୁଲ, ଟେବୁଲ ସାମନାରେ ଚନ୍ଦନ । ଚନ୍ଦନର ଆଙ୍ଗୁଠି ଅଗ ଦାନ୍ତରେ ଚିପା । ପଶ୍ଚିମ ଦିଗକୁ ପିଠି କରି ପୂର୍ବ ଦିଗକୁ ମୁହଁ କରି ଚନ୍ଦନ । ଲଣ୍ଠଣର ଆଲୁଅ ତା ମୁହଁରେ ଛାଇ—ଆଲୁଅ ପକାଇ ଚରିତ୍ର ରଚନା କରିଛି । ଆଲୁଅ ଅନ୍ଧାରର ସ୍ୱେଚ୍ଛାକୃତ ପତନରେ କଣ ଚରିତ୍ର ଆସେ ? ଲଣ୍ଠନଟା ଡାହାଣ ଦିଗକୁ, ଚନ୍ଦନର ନାକଟା ଉଚ୍ଚା, ତେଣୁ ତା ବାଆଁ ଆଖି କଣରେ ଅନ୍ଧକାର । ସ୍ୟାଣ୍ଡୋରେଞ୍ଜ, ଚଉଡା ଜବ୍‌ଜା । ଖେଳଓ୍ୱାର୍ଡଙ୍କ ପରି ଛୋଟ ବାଳ । ଗାଲ ହାଡ଼ ଦୃଢ଼, ଆଖି ଏପରି ଅଦ୍ଭୁତ କିଆଁ ? ନଖ ମୁନ ଛିଣ୍ଡାଏ 'କାହିଁକି ଚନ୍ଦନ ? ସମ୍ମୁଖ ଦରଜାରୁ ବହିର୍ଗତ ଆଲୋକ ସ୍ରୋତରେ ଅପସୃୟମାନ ମଣିଷର ମୁଣ୍ଡ—ଗଣ୍ଡି ନାହିଁ । ଚନ୍ଦନ ଭୀତ ?

ଅତଃପର ଟୁକୁଢଏ ଅଗଣାର ବାଆଁ ପଟକୁ ଗେଷେଇ ଘର, ଗେଷେଇ ଘର ବାରଣ୍ଡାରେ ହବିଷଘର ଭିତରେ ଡ଼ିବିରିର ଅଫଯତ ଶିଖା, ଛାଇ ପକାଏ–ପୋଛି ଦିଏ, ଆଲୁଅ ପକାଏ–ପୋଛିଦିଏ । ବାରଣ୍ଡାର ଗୋଟାଏ କୋଣରେ ଘସି କାଠ ବସ୍ତା, କୋଇଲା–ଅନ୍ଧକାରରେ ଢ଼ଡ଼ାଢଡ଼ି, ଆଲୁଅର ଆକସ୍ମିକତାରେ ତ୍ରସ୍ତ-ଗଳ୍ପର ସରଇଖାନାର ପଥିକମାନଙ୍କର ମାଲପତ୍ର ପରି । ହବିଷଘର ଭିତରେ ଗୋଟିଏ ଛୋଟ ନିଆଁ ସାମନାରେ ଖାଇବା ଜିନିସ ତିଆରି କରନ୍ତି ସୁଧୀର ବାବୁଙ୍କ ସ୍ତ୍ରୀ । ଡ଼ିବିରିର ପରିଚିତ ଆଲୁଅରେ ଚୈତ୍ର ପବନ ପରି ଶିହରଣରେ ତିରିଶ ବର୍ଷ ବ୍ୟାପୀ ସ୍ତ୍ରୀ ଅପରିଚିତ ହୋଇଯାଏ କାହିକି ?

ଗୋଧୂଳିରେ ଚରଚର ସ୍ତବ୍ଧ । ସନ୍ଧ୍ୟା ଅପସୃତ । ଭବ । ସଞ୍ଜ ବେଳ । ଭବ । ଭବିବାକୁ ହିଁ ହେବ ସଞ୍ଜବେଳେ । ମୁଁ ଏଥର ଭବିବି, ଭଉଜ ବୋହୂଙ୍କ ସଙ୍ଗେ ଦିପଦ କଥାର କଥା କହି, ଦକ୍ଷିଣ ଘରର ବାରଣ୍ଡାରେ ଚୌକିରେ ଶୋଇ ଭବିବି-କଣ - କଣ ଭବନା ଭବିଥିଲି, ଆଉ ଏବନା କଣ ଭବୁଚି ।

"କିଏ ? " ଭଉଜବୋହୂଙ୍କ ଗଳା ଶୁଣି ହିଁ ଆଖି ଦିଟା ବୁଝାଯାଏ । ଛୋଟ ଉଚ୍ଚା ପିଢ଼ା ଉପରେ ଆଣ୍ଠୁ ଦିଟା ଟେକି ବସି, ଆଣ୍ଠୁ ଉପରେ ବାହୁର ଭର, ଡାହାଣ ହାତରେ କରଚୁଲୀ ଜାତୀୟ କିଛି । ବାଆଁ ହାତରେ କଣ ? ପାଦ ଶବ୍ଦ ଶୁଣି ହିଁ ଅଣ୍ଟାର ଉପର ଅଂଶଟା ସିଧା କରି ଦେଇଛନ୍ତି, ବେକଟା ବି ଉଚ୍ଚା ।

"ମୁଁ ବିନୟ"–ଗେଷେଇ ଘର ପାହାଚରେ ବିନୟ ଗୋଡ଼ ଦିଏ ।

'ବିନୟ ? ଆସ । ଘରେ ସମସ୍ତେ ଭଲତ ।'' —ବିନୟର ଜବାବ ଶୁଣିବା ସଙ୍ଗେ ସଙ୍ଗେ ହିଁ ଭଉଜଙ୍କର ଊର୍ଦ୍ଧ୍ୱାଂଗ ଶିଥିଳ, ବାଆଁ ହାତରେ କାଠ ଠେଲନ୍ତି ଚୂଲୀରେ । ଝୁଲ କେଇଟା, ଆଖି କୁଂଚେଇ ମୁହଁ ଘୁଞ୍ଚାଇବା, ଉତ୍‌ଥାପିତ ପ୍ରଶ୍ନର ଭଙ୍ଗ ଏତେବେଳେ ମୁହଁରେ ଫୁଟାଇ ବିନୟ ଆଡକୁ ଗୁହାନ୍ତି । ବିନୟ ସର୍ବଦା ଏ ପ୍ରଶ୍ନର ଜବାବରେ ଗୋଟାଏ 'ହୁଁ' କହି ଚୌକାଠ ମାଝରେ ବସି ପଡ଼େ । ଭଉଜ ଏ ପ୍ରଶ୍ନ କାହିଁକି କରନ୍ତି ପ୍ରତିଦିନ ? ଅଭ୍ୟାସ ? ପ୍ରତିଟି ଦିନର କଥା ଏକ, ଏକ । ବେଳ ସେଟା ବୋଧ ହୁଏ ବୁଝନ୍ତି ନାଇଁ । ତାଙ୍କ ମନର ଘନିଷ୍ଠତାହିଁ କଣ୍ଠରେ ଆନ୍ତରିକ ସ୍ୱର ଆଣେ ।

"ବ-ସ"—ଉପବିଷ୍ଟ ବିନୟକୁ ଭଉଜ । ବିନୟ ଗୋଟାଏ କାଠି ନେବାକୁ ହାତ ପ୍ରସାରିତ କରେ । କାଠିଟା ନେଇ ତଳେ କଣ ଆଙ୍କେ ଟାଙ୍କେ । ଭଉଜ କାଠିଟାକୁ ବି ଦେଖନ୍ତି, ଅଙ୍କାକୁ ବି । ବିନୟ କାଠିଟା ଫିଙ୍ଗି ଦିଏ ।

"ଇସ୍କୁଲକୁ ଯାଇଥିଲ ?" ଭଉଜଙ୍କ ପ୍ରଶ୍ନ । ଯା ପରେ ପ୍ରଶ୍ନ ହେବ, କଣ

ଦେଇ ଭାତ ଖାଇଲା, ତା ଆଗରୁ ଉଠିବି । ଆଉ ଜଣେ କିଏ ଆସିଲେ ଭଉଜ ଭଲ ଆଡ଼ଡ଼ା ମାରି ପାରିବେ । ତାର ନିଜର କିଛି କଥା ନାହିଁ । ବାପଘର ତିରିଶ ବର୍ଷ ଆଗେ ଯେଉଁ କଥା କେତୋଟି ଶିଖି ଆସିଥିଲେ—ପାଂଚ ବର୍ଷରେ ତାହା ସରି ଯାଇଛି । ଏଠି, ଏଇ ଗାଁଆ ସହରଟିରେ, କଥା ଖୋଜି ପାଇବା କଷ୍ଟ । କଥା ଯେଉଁଠି ଜନ୍ମନିଏ ସେ ଜାଗାଟା ଭଉଜଙ୍କର ତିଆରି ହୋଇ ନାହିଁ । ଭଉଜ ଏମିତି କରି ଅନାଇ ରହିଛନ୍ତି । କାହିଁକି ? ଭଦ୍ରମହିଳାଙ୍କର ଚେହେରରେ ଗୋଟାଏ କୈଶୋର ଅଛି ଯାହା ଦେଖିଲେ ବୁଝାଯାଏ, ବାବୁଇ-ଚଂଦନ ସୋନା-ରୁପା-ମୀର-ଏ ନାଆଁ ଗୁଡ଼ାକ ସେ ରଖିଲେ କିମିତି ? ଏବେ ତା ନାହିଁ, କାହିଁକି ? ଚୁଲୀ ପାଖରେ ଗରମ ? ଆଖିରେ ଧୂଆଁ ?

"ସୁଧୀରଦା ଆସି ନାହାନ୍ତି ?" ବିନୟ ପଚାରେ ଭଉଜଙ୍କୁ ।

"ନା । ଗୁଲିଲ କୁଆଡ଼େ ?" ଭଉଜ ଚୁଲୀକୁ ଚାହିଁ ବିନୟକୁ ।"

"ସେ-ଘରେ ଅଛି । ସୁଧୀରଦା ଫେରି ନାହାନ୍ତି ?"

"ଟିଉଶନୀକୁ ଯାଇଛନ୍ତି ।"

କଣ ଯିମିତି ଭାବିବି ଠିକ୍ କରିଥିଲି ? ସଂଜବେଳେ ଭାବନାର ଇତିହାସ । ପ୍ରଥମ ଅ... ୟ—ସୋନା—ରୁପା—ମୀର ତଥ୍ୟର ଅଭାବ । ଦ୍ୱିତୀୟ ଅଧ୍ୟାୟ—ବାବୁଇ । ତୃତୀୟ ଅଧ୍ୟାୟ—ମୁଁ । ଚତୁର୍ଥ ଅଧ୍ୟାୟ-ଭଉଜ । ପଞ୍ଚମ ଅଧ୍ୟାୟ—ସୁଧୀରଦା ।: ବାବୁଇ କଣ ଭାବେ ?

ବାବୁଇ କହିଥିଲା ସୁଚିତ୍ରା ମିତ୍ରର ଗୋଟାଏ ଛବି ଆଙ୍କି ଦେବାକୁ । ଦେଇନି, ଦେବିନି । ବାବୁଇ ତୁ ପଢ଼ା ଛାଡ଼, ଗୀତ ଛାଡ଼, ଲୁଗାପଟା କାଚ, ରେଷେଇ ଶାଳ ଧୁଅ, ହାତରେ ହଳଦୀର ଗଂଧ ହେଉ, ଲଲସାଲୁର ବ୍ୟାଘଚର୍ମ୍ ତଳେ ତୁ ବିଗତମ୍ ହୁଅ । ନହେଲେ ତୁ ମରିବୁ । ଯା, ମର । ହସ ମାଡ଼ିଲା ବିନୟକୁ, ପେଟରୁ ନୁହେଁ, ଓଠରୁ । ବାବୁଇ ବସୁ—ମରିବାକୁ ଆସିଚି, ବଂଚାଇବ କିଏ ? ସଂଜବେଳେ ଏଇ ସବୁ କୁ ଭାବନା ଭାବିବାକୁ ମନା, ଦକ୍ଷିଣ ଦୁଆରେ ଯିବାକୁ ମନା । ଦକ୍ଷିଣ ଦରଜା ଖୋଲି ମରିଛ ଗୋ ମରିଛ । ବିନୟ ବହୁଦିନର ଶଯ୍ୟାଶାୟୀ ରୋଗୀର ହସ ପରି ନିଜ ହସଟାକୁ ଦେଖିବାକୁ ପାଇଲା । ତେଣୁ ରୋଗକ୍ଳାନ୍ତ ଭାବନା ଭାବିଲା । କିନ୍ତୁ ସଂଜବେଳେ ସରସ୍ୱତୀଙ୍କ ଛବି ପାଖରେ ମଣ୍ଡ ଧରର ଔଷଧ ଆଡ଼କୁ ଚାହିଁ ବାବୁଇ କଣ ସୁଚିତ୍ରା ମିତ୍ରର କଥା ଭାବେ ? ଭାବେ । ଆଉ ଏଇନା ଯେଉଁ ବୟସ, ଅନ୍ୟ ଭାବନା ବି ଭାବେ । ସବୁ ଭାବନା ଭାବି ମନଟା ବଡ଼ ହୁଏ । ମନଟା ବଡ଼ ହୋଇ ହୋଇ...... । ବାବୁଇ

ସୁଚିତ୍ରା ମିତ୍ରର ଛବି ରହିଛି ଆଉ ବି—ତା ଆଗରୁ ଏଇ ଗୀତଟା ଶୁଣିବାକୁ ହେବ—ଆଉ 'ରଖନା ଅଂଧାରେ ମୋରେ ଦେଖିବାକୁ ଦିଅ'—ବାବୁଇ, ତୋର "ଆପଣାର" କେଉଁଠି ? ମୋତେ ଦେଖାଇବୁ ? ମୋର "ଆପଣାର' ଫାଂକା । ସାରଜୀବନ ଶୂନ୍ୟକୁ ଖୋଜା । ହଂଯତେ ।

'ବିନୟ, ଘୁ ଦେବି ?'

'ନା' ।

ବେଶ ଏତେବେଳଯାଏ କଣ ବିଚିତ୍ରଭାବେ କିଛି ଭାବୁଥିଲେ ? ନା । ବେଶ ଚିଂତା ନୁହେଁ, ଶରୀର । ଚୈତନ୍ୟ ନୁହେଁ, ଅସ୍ତିତ୍ୱ । ମୁଁ ବି ସେଇଆ । ବ୍ୟକ୍ତିର ବ୍ୟକ୍ତିତ୍ୱ ଥାଏ, ବ୍ୟକ୍ତି ନଗରରେ ଥାଏ॰ । ମୋର ଛବିଶ ବର୍ଷର ପାପ ଅଛି । ମୁଁ ପଂଚଦଶୀ ସରଳତା ରହିଁଥିଲି । ବାବୁଇ ଗୀତଟା ଗାଅ ତ—'ମୋର ଆପଣାରେ ଦେଖିବାକୁ ଦିଅ ।'

ଏଇଠି ଏ ମଳସ ଶରୀରର । ମନର କେଉଁଠି ? ମନ—ଏକ ଟୁକୁରା ଘାସ, ଏତେ କୋମଳ, ସବୁ—ମନ, ତୁମେ କେଉଁଠି ? ଏ ମନ, ତୁ କେଉଁଠି ? ମନରେ ତୁ ମୋ ଦେହକୁ ଆ ! ଆ ! ଆରେ ! ମୋର ଶୁଖିଲା ଦେହରେ ଝଡ଼ ବହି ଆ । ମନ ତୁ ଆ । ଆ ।

ମନ ପ୍ରସଙ୍ଗରେ ଝଡ କଥା ଭାବିଲେଇ ଆକାଶ-ସମୁଦ୍ର-ପାହାଡ ସବୁ ମିଳିମିଶି ମନରେ ଏକ ଆଶ୍ଚର୍ଯ୍ୟ ଛବି ତିଆରି କରେ । ଏତେ ସବୁ ଛୋଟ ଛୋଟ କଥାବାର୍ତ୍ତା ଶୁଣି ଶୁଣି ବଡ କିଛି ହଜିଯାଏ । ବଡ଼, ବିସ୍ତୃତ, ଓୟାଇଡ୍ (ଓ୍ୱାଇଡ୍ ସଂଗରେ ମେଳ ଥିବା ଯୋଗୁ ଓୟାଇଲଡ୍ ଆସିଲା, ବିନୟ ସେଟାକୁ ନାକଚ କଲା ନାହିଁ), ଓୟାଇଡ୍ ମଧ୍ୟରେ ତ ଓୟାଇଲ୍ଡ଼ନେସ୍ ଥାଏ—କିଛି ନ ଥିଲେ ଛବି ଆଂକିବାର ଇଚ୍ଛା ଜନ୍ମିବ କେଉଁଠୁ ? ଏଠାରେ ଛବି, ଲଣ୍ଡନର ଗ୍ୟରିପାଖେ ଭୁତୁଡ଼ା ମୁହଁ, ଶିଶୁମାନଙ୍କୁ ଚିହ୍ନା ଯିବ ନାହିଁ, ମଣିଷ ଶରୀରର ରେଖାର ଇଂଗିତ ରଂଗ, ଲାଇନ୍‌ର ଆଲୁଅରେ ଉଜ୍ଜ୍ୱଳ ରଂଗରେ ଛାଇ ପଡ଼େ, କିମ୍ବା ଭଉଜଙ୍କର ଅଣ୍ଟାଠାରୁ ଉପର ଅଂଶର ହଠାତ୍ ବ୍ୟଗ୍ର ହୋଇ ଉଠିବା, କେଉଁ ପାଦଶବ୍ଦରେ, ପାନଲତା ପରି ରେଖା, ଦିଗୋଡ଼ ସନ୍ଧିରେ ମୁହଁଗୁଂଜା କୁକୁର ହଠାତ୍ ଆଖି ଖୋଲେ, ଜନ୍ତୁ ବି ସୁନ୍ଦର, ଆଖିରେ ମାନୁଷୀ; କିନ୍ତୁ ଭଉଜଙ୍କ ଚେହେରାର ସେ କୈଶୋରଟା ଗଲା କୁଆଡେ ? ବିନୟ ଆଖ୍ ବୁଜି ଯେପରି ଖୋଦିତ ମୂର୍ତ୍ତିର ଲୁପ୍ତ ରେଖା ଖୋଜେ । କେଉଁ ରେଖାରେ ଭଉଜଙ୍କର କୈଶୋର ?

ଖୁବ୍ ଚଢ଼ା ରଙ୍ଗରେ ବଡ଼ କିଛି, ଚଉଡ଼ା କିଛି, ମସ୍ତ କିଛି ମସ୍ତ କିଛି । ସମ୍ମୁଖର ସମସ୍ତ ବିଷୟର ରେଖା ସଙ୍କୀର୍ଣ୍ଣ ଓ ବର୍ଣ୍ଣ ନିଷ୍ପ୍ରାଣ । ସୁଚିତ୍ରା ମିତ୍ରର ଛବିରେ ବାବୁଇ କଣ ଦେଖିବାକୁ ଚାହେଁ ? ଦେଖିବାକୁ ଦିଅ । ମୋର ଆପଣାରେ ।

ଗଗନେନ୍ଦ୍ର ଠାକୁରଙ୍କ ଅଙ୍କା ଯକ୍ଷପୁରୀ— ଅସ୍ପଷ୍ଟ ଆଲୋକ, ତ୍ରିକୋଣ ଆଲୁଅ—ଛାୟା—ପାତରେ କେବେ ସ୍ୱର୍ଣ୍ଣ ସ୍ତମ୍ଭର, କ୍ୱଚିତ୍ ମଣିଷ ଶରୀରର ଇଙ୍ଗିତ, ନନ୍ଦିନୀର ପ୍ରସାରିତ କେତୋଟି ଆଙ୍ଗୁଠି, ରକ୍ତ କରବୀ ଗୁଚ୍ଛର ଇଲ-ଅସମ୍ଭବ-ଜଟିଳ, ଅସମ୍ଭବ, ନା); ଅବନୀନ୍ଦ୍ରନାଥଙ୍କ ଶାଜାହାନ (ବଡ଼ ମେଲନ୍‌କୋଲି, ବିଷନ୍ନ, ସଂଗରଗୁଡ଼ାକ ଯେମିତି ଅଛନ୍ତି କି ନାହିଁ, ରେଖାଗୁଡ଼ାକ ଯେମିତି ପୋଛି ହୋଇ ଯାଇପାରେ, ଶୀତଦିନେ ଯେମିତି ଆଇନା ଉପରେ ନିଶ୍ୱାସର ପରଦା, ସୂକ୍ଷ୍ମ ସହେନା, ସହେନା); ରବୀନ୍ଦ୍ରନାଥଙ୍କ ନୃତ୍ୟ—(ପ୍ରାଚୀନ ମିଶରୀୟ ଏଲିମେଣ୍ଟାଲଟି, ହାତ ଆଉ ପାଦର ସରଳ ଭଙ୍ଗିରେ ; ଏଲିମେଣ୍ଟାଲିଟି ତ ଗୁହି, ଏ-ଲି-ମେ-ଣ୍ଟା-ଲ, ହିବ୍ରୁ ମନ୍ତ୍ରୋଚ୍ଚାରଣ, ଏ-ଲି-ମେ-ଣ୍ଟା-ଲ, ଲଉଡ ରେଖା କିନ୍ତୁ ରଙ୍ଗ ଏତେ ଜର୍ଟିଲ କାହିଁକି, ଭଙ୍ଗି କ୍ରମଶ ଶଯତାନର ଆରତି ଭଳି କାହିଁକି, ଆଉ ମୁହଁରେ ଯେପରି ମୃତ ଦେହର ଆଧାର ଉପରେ ଅଙ୍କା ଗାତ୍ର-ଚରିତ୍ରର ଅମାନୁଷିକତା, ମରିଯିବା ବଂଚି ଉଠିବା କାହିଁ, ଲଉଡ୍ ରଙ୍ଗରେ, ଲଉଡ ରେଖାରେ—ବାବୁଇ; ଏଇଥିପାଇଁ ତ ତୋ ଗାନକୁ ଏତେ ଭଲପାଏ, ଲଉଡ ଗଳା, ଉଦାର, ସୁଚିତ୍ରା ପରି, ବାବୁଇ, ତୁ ସୁଚିତ୍ରା ମିତ୍ର ହେବୁ ); ନନ୍ଦଲାଲ ବସୁର ଶିବ (ନା ଗୋ ନ ଗୋ ନା । ଅନ୍ନପୂର୍ଣ୍ଣା ଯାର ଘରେ ସେ କାନ୍ଦେ ଅନ୍ନେର ତରେ, ଏ ବଡ଼ ଦାରୁଣ ପରମାଦ ପ୍ରମାଦ-ନା, ନା, ନାଗୋ ନା); ଯାମିନୀ ରାୟଙ୍କ ଜନ୍ମାଷ୍ଟମୀ-(ମେଲି ମଲି, ବଙ୍କିମ-ମୁରଲୀ ତ୍ରିଭଙ୍ଗ ମୁରରୀ, ତ୍ରିଭଙ୍ଗ କେଉଁଠି ? ଖାଲି ଏକ ଆଣ୍ଠୁ ବଙ୍କା, ସେଥିରେ ସମସ୍ତ ଶରୀରର ଭାର ଢଳି ପଡ଼ିଛି, କନ୍ୟା ଭଳି, ଶାଳଗଛ ପରି ଋଜୁତା, ଗୋଟିଏ ମାଛ ପରି ଆଖି, ପର ଅର୍ଖିଟା ହିଁ ଗୋଟାଏ ପୂରା ମାଛ ପରି, ସ୍ୱଚ୍ଛତା, ଏତେ ସରଳତା, ଏତେ ବିସ୍ମୟ ମୋର ବହିବାର କ୍ଷମତା ନାହିଁ); ଭ୍ୟାନ୍ ଗଗ୍‌ଙ୍କ କ୍ରସ୍ ଅନ ଦି ସିଷ୍ଟମ୍—(ଆହ ମୋତେ ବଞ୍ଚାଅ, ମୁଁ ସହି ପାରୁନି ଏ ଯନ୍ତ୍ରଣା କିଏ ଅଛି ମୋତେ ବଞ୍ଚାଅ, ହାୟ କିଏ ଅଛି ମୋତେ ବଞ୍ଚାଅ, ହାୟ କିଏ ମୋତେ ବଞ୍ଚାଇବ ? କଳା କାଉର ପକ୍ଷ ଆଡ଼ଆଳରେ ସୂର୍ଯ୍ୟ ନିରୁଦ୍ଦେଶ, ଏ ଅନ୍ଧକାରର ଆକର୍ଷଣରେ ତଳ ସ୍ରୋତ କୂଳପ୍ଲାବୀ, ମୁଁ ଅକୂଳରେ ଭାସୁଚି ନାରେ । ମୋତେ କୂଳ ଦିଅ ବସା ଦିଅ, ବାବୁଇ, ତୁ କେଉଁଠି; କାଉଗୁଡ଼ାକ ଚକ୍ରବ୍ୟୂହ ହୋଇଗଲେ, ମୋ ଛାତିର ଆଉ ରକ୍ତ ନାହିଁ ଗୋ ଏଇ କଳା ଅନ୍ଧାରରେ ମୋ ଷ୍ଟୁଣରେ ମହାକାବ୍ୟର ଦରିଆ ଜଳ ହୋଇଗଲା—ବାବୁଇ, ତୁ କେଉଁଠି, ମନ ତୁ

କେଉଁଠି, ମୁଁ ପାଞ୍ଚଖଣ୍ଡ ହୋଇଯାଏ) ; ନନ୍ଦଲାଲଙ୍କ ଅର୍ଜୁନ, ଅର୍ଜୁନ, ଆହା, ଶୟିତ ଅର୍ଜୁନ, ରଫ୍ ଡ୍ରଇଂ, ରଫ୍ ରେଖା, ବିରାଟ ମୁହଁ, ବିରାଟ ବୁକୁ, ଉପର ଗୋଲାକାର ହୋଇ ନଇଁ ଯାଇଛି ଜାନୁକୁ ; ଜାନ ବଙ୍କା, ଏକ କହୁଣି ଉପରେ ଭରା ସେ ବାହୁର ପେଶୀ ଯେମିତି ସ୍ଥଳପଦ୍ମର ପାଖୁଡ଼ା, ଆଉ ଏକ ହାତ ଆଶ୍ରୟ ପରି, ବିଦ୍ରୋହ ପରି ସମସ୍ତ ଶରୀରର ପେଶୀଗୁଡ଼ାକରେ ସଚକିତ ଭଙ୍ଗି ଯେପରି ଦୁଇ ପଞ୍ଜା ମଧ୍ୟରେ ମୁହଁ ଗୁଞ୍ଜା ସିଂହ ମର୍ମର ଧ୍ୱନିରେ ଚମକି ଉଠୁଛି । ପିଠି ଆଶ୍ରୟ ପରି ଅଶ୍ୱତ୍ଥ ଗଛର କାଣ୍ଡ ଯେମିତି (ମୁଁ ପାଉଛି ଗୋ, ଏଲିମେଣ୍ଟାଲ ଆଉ ଲିରିକ୍, ମୁଁ ପାଇଛିଗୋ ମୁଁ ପାଇଛି, ମୁଁ ଛବି ଆଙ୍କିବି । –ସମୁଦ୍ର ପରି ରଫ୍,' ଚରାଚର ପରି ସଜଡ଼ା, ଏପକ୍ ପରି ମହତ୍ ସେ ଲିରିକ୍ ପରି କରୁଣ, ମୁଁ ଆଙ୍କିବି) । ବାବୁଇ, ମୁଁ ଅର୍ଜୁନ ।

ଏଇ ପ୍ରତିଜ୍ଞାର ମୁହୂର୍ତ୍ତରେ ବିନୟ ଆଖି ଟେକି ଅନାଇ ପୁଣି ବନ୍ଦ କରି ନେଲା । ମୁହୂର୍ତ୍ତକ ମଧ୍ୟରେ ମନେ ପଡ଼ିଲା ରୋଷେଇଶାଳର ଛିଣ୍ଡା ବାଡ଼ର ଫାଙ୍କ ଦେଇ ଗୋଟିପୋକ ( ) ଆଲୁଅର ବିନ୍ଦୁ ଅଗଣାରେ, ଅଗଣାରେ ରୋଷେଇଘରର ଛାୟା, ଏ-ଘର ଭିତରୁ ଆଲୁଅ ଆସି ଚୌକାଠରେ ପଡ଼ିଛି ଭିଜା ଶାଢ଼ୀ ପରି, ସେ ଦେଗର ଘରର ଆଲୁଅ କୁହୁଡ଼ି ପରି । ମୁଁ ପାଉଛି ଗୋ, ମୁଁ ଆଙ୍କିବି—ଏଇ ମନ୍ତ୍ର ଜପୁ ଜପୁ ଆଖି ଖୋଲି, ଜପୁ ଜପୁ ବନ୍ଦ କରି, ସେ ବୁଝି ପାରିଲା—ଆଉ ଏକ ଶ୍ମଶାନର କାନ୍ଦଣା ଅନେକ ଗଭୀରରେ, ଗଭୀର ରାତିରେ ବହୁ ଦୂରରେ ବିଲୁଆର ଡାକ ପରି, ଶୁଣା ଯାଉଛି । ଲଣ୍ଠନର ଭୂତୁଡ଼ିଆ ଆଲୁଅ ଘରିପାଖେ ଭଙ୍ଗା ରେଖାର ମୁଖ ଲଣ୍ଠନର ବିବର୍ଣ୍ଣ ଆଲୁଅରେ ଉଜ୍ଜ୍ୱଳ ରଙ୍ଗ ଗୁଡ଼ାକ ଫିକା ଫିକା, ଭିଜା ଶାଢ଼ୀ ପରି ଆଲୁଅ, ଆଲୁଅର ପୋକ ପରି ଆଲୁଅ, ପାନ-ଲତା ପରି ଶରୀରର ରେଖା, ହଠାତ୍ ଉପସ୍ଥିତ କୌଶୋରର ହଠାତ୍ ନିରୁଦ୍ଦେଶ, ବେଡ଼ାରେ ଅଙ୍କା ଛାୟାର ଝରକା ଆଉ କଛର ଝରକା ମଝିରେ କିଶୋରର ବିବ୍ରତ ଆଖି, ପଦ୍ମ କରି ବସିଥିବା କିଶୋରୀ ସାମନାରେ ମଥାଧରର ଔଷଧ ବିନୟକୁ ଘେରି ଧରନ୍ତି । କରୁଣ ଭାବରେ ବିନୟ ଯେମିତି କହିବାକୁ ଚାହିଁଲା— ମୁଁ ପ୍ରସନ୍ନ ନାରାୟଣ ବିଦ୍ୟାଳୟର ଡ୍ରଇଂ ଶିକ୍ଷକ, ମୁଁ ଛବି ଆଙ୍କିବିନି, ଆଙ୍କିବିନି ।

"କିଏ, ବିନୟ କକା ?"

"ହୁଁ ।"

"ଚୁପଚାପ ଶୋଇ ଯେ ?"

"କଣ କରିବି ? ତୋର ପଢ଼ା ହୋଇଗଲ ?"

"ଧୁତ୍. ପଢିବାକୁ ଭଲ ଲଗେନା ।"

"କଣ ଭଲ ଲଗେ ?"

"ଗୀତ ଗାଇବାକୁ ।"

"ଗା ।"

"ନା, ମା ବକିବ ।"

"ବକିବ ନାହିଁ, ମୁଁ କହୁଚି ତ ।"

"ଆଜି ନରେନକାକାଙ୍କ ଘରକୁ ଯାଇଥିଲି, ଏମାନଙ୍କ ତଳ ତାଲର ବ୍ୟାନାର୍ଜି ଘର ଗୀତ ଗାଇବାକୁ ଡାକି ନେଇଥିଲେ ।"

"ଗୀତ ଗାଇଲୁ ?"

"ଖୁବ୍ ଭଲ ଲଗିଥିଲ ।"

"କାହିଁକି ?"

ବାବୁଇ କିଛି କଥା କହେନା ।

ଅଗଣାରେ, ହବିଷଘର ବାଡ଼ ଫାଙ୍କରେ ଆଲୁଅ ପ୍ରୋକ ଭଳି ଆଲୁଅ ପଡ଼ିଛି । ଏ ଦୁଇଜଣ ପରସ୍ପରର ଦୃଷ୍ଟି ଏଡ଼ାଇବା ପାଇଁ ଏଇ ଆଲୋକବିନ୍ଦୁ ଚିହ୍ନିତ ଜାଗାଟିରେ ବଦ୍ଧଦୃଷ୍ଟ । ସେଇ ଜଟିଳ ରେଖାଚିତ୍ର ଆଡକୁ ଚାହିଁ ବିନୟର ମନେ ପଡ଼ିଲ ଆଜି ଦିନସାରା ଚଇତାଳି ବତାସ ଦେଇଚି ସବୁ ଅଡ଼ୁଆ - ତଡ଼ୁଆ କରି । ତା ଫଳରେ ପ୍ରକୃତିରେ ଓ ତା ଦେହରେ ଗୋଟାଏ ଶୂନ୍ୟତାବୋଧ ଜନ୍ମ ନେଇଛି । ବାବୁଇ ଯେମିତି ଅନିବାର୍ଯ୍ୟ ପତନରୁ ରକ୍ଷା ପାଉଛି ଏଇ ଆଲୋକ ବିନ୍ଦୁ ଚିହ୍ନିତ ଜାଗାଟିକୁ ଅନାଇ । ତା ମୁହଁ ଓ ଆଖିରେ ଏପରି ଶୋକ ଯାହା ସୁଦୂରତା ମଧ୍ୟରେ ହଜିଯବାକୁ ଲଗେ ।

ଏଇ ଅଗଣାଟାକୁ କେନ୍ଦ୍ର କରି ଦିଜଣଙ୍କ ମଧ୍ୟରେ ଏପରି ଏକ ନୈଶବ୍ଦ ବିଗଳ କରିବାକୁ ଆରମ୍ଭ କଲ ଯାହା ଯେ କୌଣସି ମୁହୂର୍ତ୍ତରେ ଶବ୍ଦର ଦୀର୍ଘଶ୍ୱାସରେ ଗର୍ଭପାତ ଘଟାଇବ । ଆଉ ସେ ସର୍ବନାଶଟାକୁ ପ୍ରତିରୋଧ କରିବା ପାଇଁ ହିଁ ଯେମିତି ଏ ଦୁଇଜଣ ଆଖିମୁହଁର ଏକରକମ ସଙ୍ଗତ ଭଙ୍ଗିରେ ନିଜ ନିଜକୁ ବ୍ୟସ୍ତ ରଖିବାକୁ ଚେଷ୍ଟା କଲେ । ସେତେବେଳେ ଦିଜଣ ଯାକର ଆଖି ସାମନାରେ ଗୋଟାଏ ଅଟି ନାନା ରୂପ ନେଇ ନାନା ଆକାରରେ ଭଙ୍ଗି ଚୁରି ପୁଣି ନୂଆ ହୋଇ ନୂଆ ଭବରେ ଭଙ୍ଗି ଯାଇ ପୁଣି ନୂଆ ଗଠନ ନେବାକୁ ଲଗିଲ ।

ହିଷ୍ଟୀରିଆ ରୋଗୀ ଯେମିତି କିଛିକ୍ଷଣ ଅପାର୍ଥିବ ଓ ଅନିର୍ଦ୍ଦେଶ୍ୟ ବସ୍ତୁ ପାଇଁ ସଂଗ୍ରାମ କରି ପାର୍ଥିବ ଓ ନିର୍ଦ୍ଦିଷ୍ଟ ବସ୍ତୁ ଆଡକୁ ଅସହାୟ ଭଳି ଅନାଏ, ଠିକ୍ ସେମିତି ଏ ଦୁଇଜଣ ପରସ୍ପର ଆଡକୁ ଚାହିଁଛନ୍ତି । ବିନୟ ହସିଲା । ଯେମିତି କି ଏପରି କେଉଁ ମା— ଯାହା ବୁକୁରେ ଟିକିଏ ହେଲେ ଦୁଧ ନାହିଁ । ଅଥଚ ସନ୍ତାନମାନେ ଦୁଧ ଚାହୁଁଛନ୍ତି ଏବଂ ଗୋଟିଏ ପୁତ୍ର ଆହୁରି ସ୍ନେହଶୀଳା ଓ ଦୁଗ୍ଧବତୀ ଜନନୀର ସନ୍ଧାନ ପାଇ ଚାଲି ଯାଇଛି । ଜଲଦି ସେ ବାବୁଙ୍କ ମୁହଁକୁ ଚାହିଁ କହି ଉଠିଲା—"କାହିଁ କହିଲ ତ ନାହିଁ କଣ ହେଲା ନରେନବାବୁଙ୍କ ଘରେ ?"

ମୁହଁ ସାମନାରେ ଆଣ୍ଠୁ ରଖି ଏତେ ବେଳଯାଏ ବାବୁଇ ନିଜକୁ ଗୋଟାଳି ବାନ୍ଧି ରଖିଥିଲା । ଏଥର ସେ ଭଙ୍ଗି ବଦଳାଇ ଯୋଡାସନରେ ବସିଲା । ଥରେ ମଥା ବୁଲାଇ ବାଳ ଟାଳ ଠିକ୍ କରିନେଲା । ଆଉ ଯା ଚାହୁଁ ଶୁଣିବା ପାଇଁ ବିନୟ ନିଜର ଭଙ୍ଗି ପରିବର୍ତ୍ତନ କଲା । ଆଉ ବାବୁଇ ଯେମିତି ପାଗଟିଏ ହୋଇଗଲା ।

ତାପରେ ହଠାତ୍ ଗୋଟାଏ ବିଷଦର ସ୍ରୋତ ମୋଡ଼ ଖାଇ ଯେମିତି ବାବୁଇର ଗଳା ଭିତରୁ ବାହାରି ଆସିଲା—ଆଉ ବାବୁଇ ଚଢ଼ା ଗଳାରେ ଗୀତ ଧରିଲା :—
"ନିଶିଥେ କି କହିଗଇ ମନେ ।"

ପ୍ରଥମ ପାଞ୍ଚୋଟି ଶବ୍ଦ ମଧ୍ୟରେ ହିଁ ବିଷମ ତାଳ ପଡ଼ି ଛନ୍ଦିତ ହୋଇ ଉଠିଲା । ପ୍ରଥମ 'କେଜାଣି' ଧ୍ୱନିତ ହେଲା ଖାଦ୍‌ରେ ତରଳ ସ୍ୱରରେ, ଦ୍ୱିତୀୟ 'କେଜାଣି' ଧ୍ୱନିତ ହେଲା ଚଢ଼ାରେ, ତରଳତର ସ୍ୱରରେ । ଗମ୍ଭୀର-ତରଳର ବିପରୀତ ସଂଘାତରେ ବ୍ୟାକୁଳତା ।

"ସେ କି ଘୁମେ"—ସରଳ ଗମ୍ଭୀର 'ଘୁ' ର ଊର୍ଦ୍ଧ୍ୱଗାମୀ 'ଉ' ରେ ନିମ୍ନଗାମୀ ସହସା ସ୍ତବ୍ଧ 'ମେ' ରେ ଉତ୍-କର୍ଣ୍ଣ ମୃଗନାଭି ହରିଣୀ, ପାନଲତା ପରି ରେଖା ।

"ସେ କି ଜାଗରଣେ"—ଜା ଗ-ରଣେ- ପ୍ରତ୍ୟେକଟି ଶବ୍ଦ ପରେ ଗୋଟିଏ କରି ଛୋଟ ତରଙ୍ଗ, ଆନନ୍ଦ-ଦ୍ୱିଧା-ସଂଶୟ-ଆଗ୍ରହ । ପୁଣି ସେଇ ଖାଦରେ ନିମ୍ନ ସ୍ୱରରେ 'କେ ଜାଣି, ଆଖି ବନ୍ଦ । ଏଇ ଅଗଣାରେ ଅନ୍ଧକାର ପରି ଅସ୍ପଷ୍ଟ ଆଲୁଅ, ଆମଗଛଟା ପର୍ଯ୍ୟନ୍ତ ସୁନ୍ଦର ଆଲୁଅ ପହଂଚୁ ନାହିଁ ।

"ନାନା କାମେ ନାନା ମତେ, ଫେରେ ଘରେ, ଫେରେ ପଥେ ।" ଏ ଘରୁ ସେ ଘର, ସେ ଘରୁ ପଥେ, ଏକା, ଆଉ ସବୁ ସମୟରେ, ନିଶଥ ଦିବସେ କଣ

କହିଗଲ କାନେ ? ମିନୁକୁ ଅପରାହ୍ନ ଡାକେ, ମୋ' ମୁଡ଼ୀ ତାଟିଆରେ ନଡ଼ିଆ ତେଲର ଗନ୍ଧ । ମାଙ୍କୁ ରାତି ବେଳରେ–ମା' ତମକୁ ନିଦ ହୁଏ ? "ସେ କଥା କି ଅଗୋଚରେ ବାଜେ କ୍ଷଣେ କ୍ଷଣେ ?"–ବୁଝେନା, ଜାଣେନା । ନିଜ ଶରୀରର ଯେଉଁ ଅଂଶଟା ଦେଖିବାକୁ ପାଏ, ତା ଅନ୍ତରାଳରେ, କେଉଁଠି ନା କି ଏଇ ଶରୀରର ଅବସ୍ଥାନ ବାହାରେ କେଉଁଠି, ହୃଦୟ ନାମକ ଏକ ସ୍ଥାନ ଅଛି । ଯଦି ଜାଣିଥାନ୍ତି । ଜାଣେନା, ବୁଝେନା । ହାହାକାର ଗୋ ହାହାକାର । "ସେ କଥା କି ଅକାରଣେ ବ୍ୟଥିଛି ହୃଦୟ"–ଗିର୍ଜାର ପ୍ରାର୍ଥନା-ସଂଗୀତ ପରି ଏକ ସଙ୍ଗରେ ଗୁରୋଚି ଧ୍ୱନି, ଶେଷ ଧ୍ୱନିଟି ବିସ୍ତୃତ, "ଏକି ଭୟ" ଆଉ ସେଟି ଫେରି ଯାଉ ନ ଯାଉଣୁ ଆଉ ଗୋଟାଏ ଢେଉ "ଏ କି ଜୟ"–ଢେଉ ପରେ ଢେଉ ତରଙ୍ଗ ପରେ ତରଙ୍ଗ, ତଟଭୂମି ବିତ୍ରସ୍ତ, ଗୋଟାଏ ପ୍ରଚଣ୍ଡ ପ୍ରାର୍ଥନା ସମୁଦ୍ର–ତରଙ୍ଗ ପରି ଆଘାତରେ ଭଙ୍ଗିଚୂରି ଧୂଳି କରି ଧ୍ୱଂସ କରି, ଭସାଇ, ବୁଡ଼ାଇ ସଙ୍କୀର୍ଣ୍ଣ କ୍ଷୁଦ୍ର ମାଂସ ଗଳାର, ହାଡ଼ର ମଜ୍ଜା ବାହାର କରି, ଶିରର ରକ୍ତ ବାହାର କରି, ଟକଟକ ଲାଲ, ପ୍ରବାଳ-ଦ୍ୱୀପ ସୃଷ୍ଟିର ଦ୍ୱୀପ ଗଢ଼େ । ଆହ ଗଢ଼େ, ରକ୍ତବର୍ଣ୍ଣ, ଆହ ସୃଷ୍ଟି ସୃଷ୍ଟି । ପୃଥିବୀ ଭରି ବତାସ ତୋଳପଡ଼–ସୃଷ୍ଟି । ଏ-ଲି-ମେ-ଣ୍ଟ-ଲ, ଲି-ରି-କା-ଲ । ମୁଁ ଛବି ଆଙ୍କିବି, ମୁଁ ଗାନ ଗାଇବି, ମୁଁ ସମୁଦ୍ର ଦେଖିବି । ଆହା ଗୋ ବାଳିକା ଗ୍ରୀବା ତୋଳି, ଶୃଙ୍ଖଳ ଓଠରେ କେଉଁ ଆଗ୍ରହରେ କେଉଁ ଯନ୍ତ୍ରଣାରେ କ୍ରୁଶବିଦ୍ଧ ଖ୍ରୀଷ୍ଟଙ୍କ ପଦତଳେ ବସିଅଛ ଭକ୍ତ ପରି ? ଆହା ଗୋ, ମୁଁ ଏଇ ଅକାଳ-ବାର୍ଦ୍ଧକ୍ୟର ଛବିଶ ସାଲରେ ଦୁଇ ଆଣ୍ଠୁ ମଧ୍ୟରେ ମଥା ଗୁଞ୍ଜି ଚଉଡ଼ା ପିଠିଟାକୁ ଆଟ୍ଲାସ ପରି ରଖି ଗୀତ ଶୁଣୁଛି କେଉଁ ଯନ୍ତ୍ରଣାରେ–ନିଶୀଥରେ, ଏ ନିଶୀଥରେ, କଣ କହିଗଲ ମନେ–ସହେନା, ସହେନ– 'ସେ କଥା କି କାନେ କାନେ ବାରବାର କହ 'ଆଉ ନୁହେଁ ଆଉ ନୁହେଁ'–ସ୍ତିମିତ ଦୃଷ୍ଟି, ଧ୍ୟାନର ଦୃଷ୍ଟି, ଅର୍ଦ୍ଧସ୍ତିମିତ ନୟନ, ଶିବଙ୍କ ଧ୍ୟାନର ଦୁଇ ଭୃରୁ ପାର୍ଶ୍ୱରେ ଦୁଇ ଲମ୍ବା କେଶର ରେଖା, ବଂଶୀ ବାଜେ ମନରେ ନା ବନରେ ? ବଂଶୀରେ କିଏ ଡାକେ ? କଣ ଡାକେ, କେଜାଣି, କେଜାଣି,–"ସେ କଥା କି ନାନା ସୁରେ କହେ ମୋତେ ଘୁଇ ଦୂରେ"–ପ୍ରତି ଗୁରେଟି ଶବ୍ଦର ଛୋଟ ତରଙ୍ଗ, ଧ୍ୟାନର କଥା, ଅନ୍ତରର କଥା, ଉତ୍-କର୍ଣ୍ଣ, ମୃଗନାଭି ହରିଣୀ, ପ୍ରାର୍ଥନା ତରଙ୍ଗରେ ବିଧ୍ୱସ୍ତ ତଟ ଭୂମିର ଆତୁଳନ, ଘୁଇ ଦୂରେ ଦୂରେ–ସମୁଦ୍ର ସଙ୍ଗମେ, ଦୂରେ–ମଧ୍ୟ ସମୁଦ୍ରେ, ଦୂରେ–ସମୁଦ୍ରର ମୃତ୍ତିକାରେ, ଦୂରେ–ନୀଳାମ୍ବୁ ରାଶିର ଅତନ୍ଦ୍ର ତଳେ, ଦୂରେ–ସମୁଦ୍ର ତଳର ଆକାଶେ ! ମୋ ଶିରରୁ ରକ୍ତ ବାହାର କରିନିଅ, ହାଡ଼ରୁ ମଜ୍ଜା;

ଗୋଟିଏ ଦୃଷ୍ଟିର ଦ୍ୱୀପ, ପ୍ରବାଳ-ଦ୍ୱୀପ, ରକ୍ତବର୍ଣ୍ଣ ଆବେଗର ଦ୍ୱୀପ ରଚନା କର । ବାବୁ'ଇ ବାର୍ଲିକା, ମୋର ସମସ୍ତ ପାପ କରଯୋଡ଼ କରି ତୋ ପାଦରେ ଢାଳେ ।

ପାହାଡ଼ରୁ ନଦୀ ସମୁଦ୍ରକୁ ଯାଏ । ଗଙ୍ଗା-ବ୍ରହ୍ମପୁତ୍ର-ବାହିତ ପଲିମାଟିରେ ଗୋଟିଏ ଦେଶ, ଭୂଗୋଳର ଗୋଟିଏ ନାମ, ପୃଥିବୀର କେତେକ ମଣିଷ—ନିସର୍ଗର କେତୋଟି ଶୋଭ ରଚନା କରନ୍ତି । ନଦୀ ସମୁଦ୍ରକୁ ଯାଏ "ସ୍ୱଳ୍ପ ଦୂରେ" ମୁହାଣ ଗଙ୍ଗାର ମୁହାଣ, କଲିକତା ଗୋଟିଏ ବନ୍ଦର, କଲିକତା ଗୋଟିଏ ନାମ, ସମୁଦ୍ର କିନାରେ, ତା ପଛରେ ପାଖରେ ଆଉ କେତେ ନାମ । କଲିକତା, ତାପରେ ସମୁଦ୍ର । କଲିକତା ସମୁଦ୍ର ନିକଟରେ ଭଗୀରଥୀ ତୀରସ୍ଥିତ ଗୋଟିଏ ବନ୍ଦର—ଆସାମ, ବଙ୍ଗଳା, ବିହାର, ଓଡ଼ିଶା, ଉତ୍ତର ପ୍ରଦେଶ, ମଧ୍ୟପ୍ରଦେଶ ତାର ପଶ୍ଚାତ୍‌ଭୂମି । ତାପରେ ମଧ୍ୟସମୁଦ୍ର ।

ଏଇ ଅନ୍ଧକାରରେ ସେ ଦୁହେଁ ରବୀନ୍ଦ୍ରନାଥଙ୍କର ଗୋଟିଏ ଗାନର ପାଣ୍ଡୁଲିପି ହୋଇଯାନ୍ତି, କାଟି ଦିଆ କଥା, ଭଂଗା ଚରଣ, ଇତସ୍ତତ ହସ୍ତାକ୍ଷର ଆଉ ଅନ୍ତର୍ବର୍ତ୍ତୀ ସ୍ୱରରେ ଭରଭର ।

# ଗଳ୍ପଲେଖକମାନଙ୍କର ସଂକ୍ଷିପ୍ତ ପରିଚୟ

## ତାରାଶଙ୍କର ବନ୍ଦୋପାଧ୍ୟାୟ (1889-1971)

ଶରତ୍‌ଚନ୍ଦ୍ରଙ୍କ ପରେ ବଙ୍ଗଳା କଥା ସାହିତ୍ୟର ଅଧିନାୟକ । ଗଳ୍ପ, ଉପନ୍ୟାସ, ନାଟକ ଓ ଗୀତ ରଚନାରେ ସିଦ୍ଧହସ୍ତ । ତାଙ୍କ ସଂପର୍କରେ ରବୀନ୍ଦ୍ରନାଥଙ୍କ ମନ୍ତବ୍ୟଟି ସ୍ମରଣଯୋଗ୍ୟ, "ମାଟିକୁ ଆଉ ମଣିଷକୁ ସେ ଜାଣେ, ସେମାନଙ୍କ ସଙ୍ଗରେ ତାର ଯୋଗ ଅଛି ।" ଏହି ଯୋଗ ବାହାରର ନୁହଁ, ଏକାବେଳେକେ ଅନ୍ତରର । ଶରତସ୍ମୃତି ପୁରସ୍କାର (୧୮୪୭), ରବୀନ୍ଦ୍ରସ୍ମୃତି ପୁରସ୍କାର (୧୯୬୬), ସାହିତ୍ୟ ଏକାଡେମୀ ପୁରସ୍କାର (୧୯୫୬), ଜ୍ଞାନପୀଠ ପୁରସ୍କାର (୧୯୬୬) ପାଇଛନ୍ତି । କଲିକତା, ଉତ୍ତରବଙ୍ଗ ଓ ରବୀନ୍ଦ୍ର-ଭାରତୀ ବିଶ୍ୱବିଦ୍ୟାଳୟରୁ ଡ.ଲିଟ୍ ଉପାଧିରେ ଭୂଷିତ ହୁଅନ୍ତି । ବିଷ୍ଣୁପଦ ମନେ ନୀତ ରାଜ୍ୟ ସଭାର ସଦସ୍ୟ ଓ ସାହିତ୍ୟ ଏକାଡ଼େମୀର ଫେଲୋ ଥିଲେ । ତାଙ୍କର ଗଳ୍ପ ଉପନ୍ୟାସ ବହୁ ଭାରତୀୟ ଭାଷାରେ ଅନୂଦିତ, ଚଳଚିତ୍ରରେ ରୂପାୟିତ । ଜନ୍ମ ବୀରଭୂମ ଜିଲାର ଲଭପୁର ଗ୍ରାମରେ, ମୃତ୍ୟୁ କଲିକତାରେ । ବୀରଭୂମର ଭାଙ୍ଗିଯାଇଥିବା ଜମିଦାର ବଂଶର ସନ୍ତାନ । ଲେଖାହିଁ ତାଙ୍କର ଜୀବିକା । ଭାରତ ସରକାର ତାଙ୍କୁ ପଦ୍ମଭୂଷଣ ଉପାଧିରେ ଭୂଷିତ କରନ୍ତି ।

## ବନଫୁଲ (1899)

ଅସଲ ନାମ ଶ୍ରୀ ବଳାଇ ଚାଁନ୍ଦ ବନ୍ଦୋପାଧ୍ୟାୟ । ପେଶାରେ ଚିକିତ୍ସକ । କଲିକତା ମେଡ଼ିକାଲ କଲେଜରୁ ପାଶ୍ କରି ଦୀର୍ଘକାଳ ଭାଗଲପୁରରେ ଡାକ୍ତରୀ କରନ୍ତି । ବର୍ତ୍ତମାନ କଲିକତାବାସୀ । କବିତା, ଗଳ୍ପ, ନାଟକ, ଉପନ୍ୟାସ ରଚନାରେ ସିଦ୍ଧହସ୍ତ । ଅସଂଖ୍ୟ ଶ୍ରେଷ୍ଠଗଳ୍ପ ଲେଖିଛନ୍ତି । ବିଷୟବସ୍ତୁର ଦୀପ୍ତିରେ ଓ ଗଠନ ଚାତୁରୀରେ ତାର ତୁଳନା ନାହିଁ । କଲିକତା ବିଶ୍ୱବିଦ୍ୟାଳୟର ଶରତ୍‌ସ୍ମୃତି ପୁରସ୍କାର (୧୯୫୨), ଆନନ୍ଦ-ପୁରସ୍କାର (୧୯୬୧) ଓ ରବୀନ୍ଦ୍ର ପୁରସ୍କାର (୧୯୬୮) ଲାଭ କରନ୍ତି । ତାଙ୍କର ଗଳ୍ପ ଉପନ୍ୟାସ ଏକ ଚରିତ୍ର ଚିତ୍ରଶାଳା ଯାର ଅସରନ୍ତି ବୈଚିତ୍ର୍ୟ ପାଠକକୁ ମୁଗ୍ଧ ଓ ବିସ୍ମିତ କରେ । ୧୯୭୫ ରେ 'ପଦ୍ମଭୂଷଣ' ଉପାଧିରେ ଭୂଷିତ ।

## ଅଚିନ୍ତ୍ୟକୁମାର ସେନଗୁପ୍ତ (1912-1976)

କଲ୍ଲୋଲ-ଗୋଷ୍ଠୀର ଅନ୍ୟତମ ଶ୍ରେଷ୍ଠ ଲେଖକ । ସବ୍ୟସାଚୀ ଲେଖକ, ଗଳ୍ପ, ଉପନ୍ୟାସ, କବିତା, ଜୀବନୀ, ଶିଶୁସାହିତ୍ୟ, ନାଟକ ରଚନାରେ ସିଦ୍ଧହସ୍ତ । ଶିକ୍ଷଣ

ପର୍ଯ୍ୟବେକ୍ଷଣ, ଗଭୀର ସହାନୁଭୂତି, ଅପରିମେୟ ମମତାରେ ତାଙ୍କର ଗଳ୍ପ-ଉପନ୍ୟାସ ସମୃଦ୍ଧ । ବିଚାର ବିଭାଗରେ କାମ କରିଛନ୍ତି । ଜିଲ୍ଲା-ଜଜ ପଦରେହିଁ ଅବସର ନେଇଥିଲେ । ପୂର୍ବ ବଙ୍ଗଳାର ଗରିବ ମୁସଲମାନ ନର-ନାରୀ, ସରକାରୀ ଅମଲା, ରାଜଧାନୀର ଉଚ୍ଚତାଲର ବାସିନ୍ଦା-ସମାଜର ନାନା ସ୍ତରରେ ବିଶ୍ଳେଷଣୀ ଦୃଷ୍ଟି ଚଳାଇଛନ୍ତି । ତାଙ୍କ ରଚନା ବାଣୀଲାବଣ୍ୟରେ ସ୍ନିଗ୍ଧ । ୧୯୭୫ ରେ ରବୀନ୍ଦ୍ର ପୁରସ୍କାରରେ ସମ୍ମାନିତ ।

## ପ୍ରେମେନ୍ଦ୍ର ମିତ୍ର (1904)

କଲ୍ଲୋଲ-ଗୋଷ୍ଠୀର ଅନ୍ୟତମ ଲେଖକ । ସବ୍ୟସାଚୀ ଲେଖକ, କବି, କଥାଶିଳ୍ପୀ ଗୀତିକାର, ପ୍ରବନ୍ଧକାର, ଚଳଚ୍ଚିତ୍ର ରଚୟିତା, ଶିଶୁସାହିତ୍ୟ ରଚୟିତା । ତାଙ୍କ ରଚିତ ଘନାଦା ଓ ପରାଶର ବର୍ମାର ଗଳ୍ପ ପିଲା ବୁଢ଼ା ସମସ୍ତଙ୍କୁ ମୁଗ୍ଧ କରେ । ଜୀବନର ଗୋଟାଏ ଅଂଶ କଟିଛି କାଶୀରେ । ନାନା ଧରଣର କାମ କରିଛନ୍ତି । ଆକାଶବାଣୀ କଲିକତା କେନ୍ଦ୍ରରେ ସାହିତ୍ୟ-ସଲାହକାର ଥିଲେ କିଛି ଦିନ । ଶେଷ ପର୍ଯ୍ୟନ୍ତ ସାହିତ୍ୟହିଁ ତାଙ୍କର ମୁଖ୍ୟ ଆଶ୍ରୟ । ମାନବ ଜୀବନ ପ୍ରତି ପରମ ମମତା ତାଙ୍କ ଲେଖାରେ ଅଛି । ବାହାର ଜୀବନ ଗୁଡ଼ି ଅନ୍ତରାତ୍ମାର ଅନ୍ୱେଷଣରେ ତାଙ୍କର ଉତ୍ସାହ । ମନର ଗଭୀରକୁ ହିଁ ସେ ଯିବାକୁ ଚାହାନ୍ତି । ଶରତ୍‌ସ୍ମୃତି ପୁରସ୍କାର (୧୯୫୫) ରବୀନ୍ଦ୍ରସ୍ମୃତି ପୁରସ୍କାର (୧୯୫୮) ସାହିତ୍ୟ ଏକାଡେମୀ ପୁରସ୍କାର (୧୯୭୬) ପାଇଛନ୍ତି । 'ପଦ୍ମଶ୍ରୀ' ଉପାଧିରେ ମଧ୍ୟ ଭୂଷିତ ହୋଇଛନ୍ତି ।

## ଅନ୍ନଦାଶଙ୍କର ରାୟ (1904)

ଜନ୍ମ ଢେଙ୍କାନାଳ, ଓଡ଼ିଶା । ଆଇ. ସି. ଏସ୍. ୧୯୨୭, ସ୍ୱେଚ୍ଛା ତ୍ୟାଗ, ୧୯୫୧ ୟୁରୋପରେ ପ୍ରବାସ, ୧୯୨୭-୨୯, ଜାପାନ ଭ୍ରମଣ ୧୯୫୭, ପଶ୍ଚିମ ଜର୍ମାନୀ ଓ ଇଂଲଣ୍ଡ ଭ୍ରମଣ ୧୯୭୩, ସାହିତ୍ୟ ଏକାଡେମୀ ପୁରସ୍କାର, ୧୯୬୨ ଭ୍ରମଣ ଗ୍ରନ୍ଥ 'ପଥେ ପ୍ରବାସେ' (୧୯୩୧) ଆଣିଦିଏ ଖ୍ୟାତି । ସବ୍ୟସାଚୀ ଲେଖକ । ପ୍ରଧାନ ଉପନ୍ୟାସ ଛଅ ଖଣ୍ଡରେ 'ସତ୍ୟାସତ୍ୟ' (୧୯୩୨-୪୨), ତିନି ଖଣ୍ଡରେ 'ରତ୍ନ ଓ ଶ୍ରୀମତୀ' (୧୯୫୬-୭୩) ଶ୍ରେଷ୍ଠଗଳ୍ପ ଲେଖିଛନ୍ତି ୪୦ ବର୍ଷ ଯାବତ୍ । ଗଳ୍ପ ସଂକଳନ ଦୁଇଟି, 'ଗଳ୍ପ' (୧୯୬୦) 'କଥା' (୧୯୭୦) । ଗଳ୍ପର ସଂଖ୍ୟା ଶହେ ଟପି ନାହିଁ । ଗଳ୍ପର ରୂପବୈଚିତ୍ର୍ୟ ଆଉ ବକ୍ତବ୍ୟ ଏ ଦୁଇଟି ପ୍ରତି ହିଁ ତାଙ୍କର ଝୁଙ୍କ । ଚଳନ୍ତି ଧରଣର କାହାଣୀ ସର୍ବସ୍ୱ ଗଳ୍ପରେ ତାଙ୍କର ଆସ୍ଥା ନାହିଁ । ରସୂଲଟୀର ଅନ୍ୱେଷଣ ହିଁ ଗଳ୍ପରେ ତାଙ୍କର ସାଧନା । ତାଙ୍କ ଗଳ୍ପର ଦୁଇଟି ପର୍ବ ୧୯୩୦-୫୬, ଦ୍ୱିତୀୟ ପର୍ବ ୧୯୫୯ ରୁ ଆରମ୍ଭ । 'ମୀନପିଆସୀ' ଗଳ୍ପରେ ଦ୍ୱିତୀୟ ପର୍ବର ସୂଚନା । ପ୍ରଥମ ପର୍ବରେ ଥିଲା ମାନବ ଜୀବନର ବହିର୍ଭାଗରେ ରଅଲଟୀର ଅନ୍ୱେଷଣ । ଦ୍ୱିତୀୟ ପର୍ବରେ ଭିତର ଦିଗରେ ତାଙ୍କର ଅନ୍ୱେଷଣ । ସାହିତ୍ୟ ଜୀବନର ଆରମ୍ଭରେ ଲେଖୁଥିଲେ ଓଡ଼ିଆ, ଇଂରାଜୀ, ବଙ୍ଗଳାରେ, ଏବେ କେବଳ ବଙ୍ଗଳାରେ । ବର୍ତ୍ତମାନ ସମସ୍ତ ସମସ୍ତଧର ସାହିତ୍ୟ କର୍ମୀ । ରହନ୍ତି କଲିକତାରେ ।

## ସତୀନାଥ ଭାଦୁଡ଼ୀ (1906-1965)

ଘର ପୂର୍ଣ୍ଣିଆରେ । ବହୁକାଳ ରାଜନୀତିରେ ଥିଲେ । ବିହାର କଂଗ୍ରେସ ମହଲରେ ପରିଚିତ । ଅଗଷ୍ଟ ଆନ୍ଦୋଳନରେ ଯୋଗ ଦେଇ କାରାବରଣ କରନ୍ତି । ଏହି କାରାଜୀବନର କାହାଣୀକୁ ନେଇ ଲେଖନ୍ତି ପ୍ରଥମ ଉପନ୍ୟାସ 'ଜାଗରୀ' । ଏହି ବହି ତାଙ୍କୁ ଖ୍ୟାତିର ଅଧିକାରୀ କରେ । ଏହି ବହି ପାଇଁ ସର୍ବପ୍ରଥମ ରବୀନ୍ଦ୍ର ସ୍ମୃତିପୁରସ୍କାର (୧୯୫୦) ଲାଭ କରନ୍ତି । ଗଳ୍ପ, ଉପନ୍ୟାସ, ପ୍ରବନ୍ଧ ରଚନାରେ ନିପୁଣ । ତାଙ୍କର 'ସତ୍ୟ ଭ୍ରମଣ କାହାଣୀ' ଏକ ଅସାଧାରଣ 'ଜର୍ଣାଲ' । ମନଗହନର ଗଭୀରରେ ତାଙ୍କର ସ୍ୱଚ୍ଛନ୍ଦ ବିଚରଣ । ମାନବ ମନର ସୂକ୍ଷ୍ମାତିସୂକ୍ଷ୍ମ ସମସ୍ୟା ଓ ଆବେଗ ବିଶ୍ଳେଷଣରେ ନିର୍ମମ ନିପୁଣ ସତୀନାଥ 'ଲେଖକମାନଙ୍କର ଲେଖକ ।' 'ଢୋଁଡ଼ାଇ ଚରିତ ମାନସ' (ଦୁଇ ଖଣ୍ଡ) ଭାରତୀୟ ଉପନ୍ୟାସରେ ଅଦ୍ୱିତୀୟ । ପ୍ରଖ୍ୟାତ ହିନ୍ଦୀ ଲେଖକ ଫଣୀଶ୍ୱରନାଥ ରେଣୁଙ୍କ ସାହିତ୍ୟଗୁରୁ ।

## ଆଶାପୂର୍ଣ୍ଣା ଦେବୀ (1909)

ମାନବମନର ରହସ୍ୟ ଉଦ୍‌ଘାଟନରେ ତାଙ୍କର ଅନାୟାସ ନୈପୁଣ୍ୟ, ମାନବ ଜୀବନ ସମ୍ପର୍କରେ ତାଙ୍କର ସହାନୁଭୂତି ଅସୀମ । ସହଜ ସାଧାରଣ ସଂସାର ଯାତ୍ରାର ନେପଥ୍ୟରେ ନଗଣ୍ୟ ବିଷୟରେ ବୈଚିତ୍ର୍ୟ ଉଦ୍‌ଭାସିତ କରିବାର ଅସାମାନ୍ୟ ନୈପୁଣ୍ୟ ତାଙ୍କର ଅଛି । ଆମର ସମାଜ ଓ ପରିବାର ଜୀବନକୁ ଉଦ୍‌ଘାଟିତ କରିଛନ୍ତି । ଲୀଳା ପୁରସ୍କାର ଓ ରବୀନ୍ଦ୍ର ପୁରସ୍କାର (୧୯୬୬) ଲାଭ କରିଛନ୍ତି । 'ଜ୍ଞାନପୀଠ' ପୁରସ୍କାର ପାଇଛନ୍ତି । ତାଙ୍କର ଅନେକ ବହି ଚଳଚ୍ଚିତ୍ରରୂପ ପାଇଛି ।

## ସୁବୋଧ ଘୋଷ (1910)

ଅସାମାନ୍ୟ ଶକ୍ତିଶାଳୀ ଲେଖକ । ଗଳ୍ପ ଉପନ୍ୟାସ ପ୍ରବନ୍ଧ ରଚନାରେ ସିଦ୍ଧହସ୍ତ । ବହୁ ବିଚିତ୍ର ବିଷୟରେ ତାଙ୍କର ଅନୁରାଗ । ପ୍ରଥମ ଜୀବନ କଟିଛି ଛୋଟନାଗପୁର ଅଞ୍ଚଳରେ । ତାଙ୍କର ବହୁ ରଚନାର ପଟ୍ଟଭୂମି ଏଇ ଅଂଚଳ । 'ଶତକିୟା' ଉପନ୍ୟାସ ତାର ଶ୍ରେଷ୍ଠ ପରିଚୟ । ତାଙ୍କର ବିଚିତ୍ର ଏବଂ ବ୍ୟାପକ ଅଭିଜ୍ଞତା ସଙ୍ଗରେ ମିଶିଛି ବୈଦଗ୍ଧ୍ୟ ଓ ଶିଳ୍ପନୈପୁଣ୍ୟ । ଜନ୍ମ ହଜାରିବାଗରେ । ବର୍ତ୍ତମାନ କଲିକତାର ଦୈନିକ ପତ୍ରିକାର ସହଯୋଗୀ ସଂପାଦକ । ତାଙ୍କ ଭାଷାର ଶିଳ୍ପନୈପୁଣ୍ୟ ଅସାମାନ୍ୟ । ଆଦିବାସୀଠାରୁ ନାଗରିକ ଜୀବନ, ନୃତତ୍ତ୍ୱରୁ ସ୍ଥାପତ୍ୟକଳା ସବୁ ବିଷୟରେ ତାଙ୍କର ସ୍ୱଚ୍ଛନ୍ଦ ବିଚରଣ । ମାନବମନର ଗୋପନତାର ରହସ୍ୟ ଉଦ୍‌ଘାଟନରେ ନିପୁଣ ।

## ଜ୍ୟୋତିରୀନ୍ଦ୍ର ନନ୍ଦୀ (1912)

ଯୁଦ୍ଧୋତ୍ତର ମଧ୍ୟବିତ୍ତ ଓ ନିମ୍ନ ବିତ୍ତ ସଂପ୍ରଦାୟର ନିପୁଣ ରୂପକାର । ମନନଧର୍ମୀ ଏଇ ଲେଖକ ହୃଦୟବୃତ୍ତିର ବିଶ୍ଳେଷଣରେ ନିଜସ୍ୱ ପଥ ଅନୁସରଣ କରନ୍ତି । ତାଙ୍କର

ଭାଷାଶୈଳୀ ମଧ୍ୟ ନିଜସ୍ୱ । ମାନସିକ ଘାତ-ପ୍ରତିଘାତ ରୂପାୟନରେ ନିପୁଣ । ତାଙ୍କ ଗଳ୍ପ-ଉପନ୍ୟାସରେ କେବଳ ସମକାଳୀନ ସମାଜର ଗଳିତ ଦେଖାଇ ଦିଆଯାଇନାହିଁ, ମାନବ ଜୀବନରେ ପ୍ରକୃତିର ପ୍ରବଳ ଭୂମିକା ମଧ୍ୟ ସ୍ୱୀକୃତ । ଏ କ୍ଷେତ୍ରରେ ମଧ୍ୟ ସେ ନିଜସ୍ୱ ପଥରେ ଚାଲିଛନ୍ତି ।

## ନରେନ୍ଦ୍ରନାଥ ମିତ୍ର (1916-1975)

ମିତଭାଷୀ ମୃଦୁଭାଷୀ ନରେନ୍ଦ୍ରନାଥଙ୍କ ଗଳ୍ପ-ଉପନ୍ୟାସ ମଧ୍ୟ ଏକ ଅର୍ଥରେ ତାଙ୍କର ସୁମିତଭାଷଣ । ମଧ୍ୟବିତ୍ତ ଜୀବନର ନିପୁଣ ରୂପକାର । ଦୁର୍ଜ୍ଞେୟ ମାନବମନର ରହସ୍ୟ ଉନ୍ମୋଚନରେ ଏବଂ ହୃଦୟର ନିପୁଣ ବିଶ୍ଳେଷଣରେ ସେ ଯେଉଁ ଗଭୀର ଅନ୍ତର୍ଦୃଷ୍ଟିର ପରିଚୟ ଦେଇଛନ୍ତି ତାହା କମ୍ ନୁହେଁ । ସବୁଠାରୁ ବେଶୀ ସଂଖ୍ୟକ ଉତ୍କୃଷ୍ଟ ଶ୍ରେଷ୍ଠଗଳ୍ପ ଅନ୍ୟମାନଙ୍କ ମଧ୍ୟରେ ନରେନ୍ଦ୍ରନାଥ ହିଁ ଲେଖିଛନ୍ତି । ସହଯୋଗୀ ଲେଖକମାନେ ଏକଥା କହନ୍ତି । କାହାଣୀ-ବିନ୍ୟାସ ଓ ଚରିତ୍ର-ସୃଷ୍ଟିରେ ତାଙ୍କର ଅନାୟାସ ନୈପୁଣ୍ୟ ସହଜରେ ଦୃଷ୍ଟି ଆକର୍ଷଣ କରେ । କଲିକତାରେ ଏକ ଦୈନିକ ପତ୍ର ସଙ୍ଗେ ଯୁକ୍ତ ଥିଲେ । ଜନ୍ମ ଫରିଦପୁରରେ ।

## ନାରାୟଣ ଗଙ୍ଗୋପାଧ୍ୟାୟ (1918-1970)

ନରେନ୍ଦ୍ରନାଥ ମିତ୍ର ଓ ନାରାୟଣ ଗଙ୍ଗୋପାଧ୍ୟାୟ ଏକ ସଙ୍ଗେ ସାହିତ୍ୟକ୍ଷେତ୍ରକୁ ଆସନ୍ତି । ଜନ୍ମ ଫରିଦପୁରରେ । ଶେଷ କୈଶୋର ଠାରୁ କଲିକତାବାସୀ । ଏକାନ୍ତଭାବେ ନାଗରିକ ଜୀବନର ରୂପକାର । କେବେ ଗ୍ରାମଜୀବନ ନେଇ ଲେଖିନାହାନ୍ତି । ଗଳ୍ପ, ଉପନ୍ୟାସ, ନାଟକ, କବିତା ରଚନାରେ ସିଦ୍ଧହସ୍ତ ।

ନିପୁଣ ଭାଷାଶିଳ୍ପୀ । ତାଙ୍କ ଗଳ୍ପରେ 'ଫର୍ମ'ର ଦାମ ନଗଣ୍ୟ ନୁହେଁ । ଉପସ୍ଥାପନ ରୀତିକୁ ସେ ମୂଲ୍ୟବାନ ମନେ କରନ୍ତି । ତୀକ୍ଷ୍ଣ ମାର୍ଜିତ ଶିକଏ ବ୍ୟଙ୍ଗବିଦ୍ଧ ଭାଷାରେ ହୃଦୟର ସୂକ୍ଷ୍ମତମ ଅନୁଭବକୁ ବ୍ୟକ୍ତ କରିବାର ବିରଳ ନୈପୁଣ୍ୟ ତାଙ୍କର କରାୟତ୍ତ । ସେ ଜୀବନ ପ୍ରେମୀ, ସେ ପ୍ରେମର କ୍ଷତ ବେଦନା ଓ ନୈରାଶ୍ୟ ଅଛି । ସମସ୍ୟ ଓ ଶିଳ୍ପ ଉଭୟ କ୍ଷେତ୍ରରେ ସଚେତନ ଲେଖକ । କିଛି କାଳ ଦିଲ୍ଲୀରେ ଥିଲେ । ବର୍ତ୍ତମାନ ପ୍ରଖ୍ୟାତ ଦୈନିକ ସମ୍ବାଦପତ୍ରର ସଂଯୁକ୍ତ ସମ୍ପାଦକ ।

## ସମରେଶ ବସୁ (1921)

ନରେନ୍ଦ୍ରନାଥ, ନାରାୟଣ, ସନ୍ତୋଷକୁମାରଙ୍କ ସଙ୍ଗରେ ଏକ ନିଶ୍ୱାସରେ ଉଚ୍ଚାରିତ ଯେ ନାମ, ତାହା ହେଲା ସମରେଶ ବସୁ । ସେ ନାଗରିକ ଲେଖକ ନୁହନ୍ତି । ବଙ୍ଗଳା ଦେଶ ମାଟିର ଖୁବ୍ ନିକଟର ଶିଳ୍ପୀ । ଜୀବନବାଦୀ । ଜନ୍ମ ଢାକାରେ । ଜୀବନରେ ନାନା ରକମ କାମ କରିଛନ୍ତି । ଶେଷ ପର୍ଯ୍ୟନ୍ତ ସାହିତ୍ୟ ହିଁ ତାଙ୍କର ଜୀବିକା । ମାନବ ଜୀବନ ସମ୍ବନ୍ଧରେ

ତାଙ୍କର କୌତୁହଳ ଓ ସହାନୁଭୂତି ଅପରିମେୟ । ଗଳ୍ପ ଉପନ୍ୟାସରେ ତାଙ୍କର ପରିଚୟ ବ୍ୟାପ୍ତ । କେବଳ ମଣିଷ ନୁହେଁ, ପ୍ରକୃତି ମଧ୍ୟ ତାଙ୍କର ଉପଜୀବ୍ୟ । ଭ୍ରମଣଧର୍ମୀ କାହାଣୀ ଲେଖନ୍ତି 'କାଳକୂଟ' ଛଦ୍ମନାମରେ । ଗାନ ରଚନା କରନ୍ତି, ଗାଇ ପାରନ୍ତି । ମାଣିକ ଓ ତାରାଶଙ୍କରର ଯୁଗ୍ମପ୍ରଭାବରେ ଲାଳିତ ସମରେଶ ବସୁ ଅଙ୍କା ନିଜସ୍ୱ ଚିତ୍ର ଶିଳ୍ପୀ । ସେ ଜୀବନକୁ ଜାଣିଛନ୍ତି ଅଭିଜ୍ଞତା ମାଧ୍ୟମରେ । ଏହି ଅଭିଜ୍ଞତା ସଙ୍ଗରେ ଯୁକ୍ତ ହୋଇଛି ନିବିଡ଼ ଆନ୍ତରିକତା ।

## ବିମଳ କର (1921)

ମନନଧର୍ମୀ ଲେଖକ । ଜୀବନକୁ ଦେଖିଛନ୍ତି ନିଜସ୍ୱ ଦୃଷ୍ଟିକୋଣରେ । ପ୍ରଥମ ଜୀବନରେ ଡାକ୍ତରୀ ପଢ଼ିଥିଲେ, ଶେଷ କରି ନାହାନ୍ତି । କିନ୍ତୁ ପରବର୍ତ୍ତୀ ଜୀବନରେ ଗଳ୍ପ ଉପନ୍ୟାସ ରଚନାରେ ଚିକିତ୍ସକର ନିର୍ମମ ନିରାସକ୍ତ ଦୃଷ୍ଟି କାମରେ ଲଗାଇଛନ୍ତି । ବଙ୍ଗଳା କଥାସାହିତ୍ୟରେ ନୂତନ ରୀତି ଆନ୍ଦୋଳନର ପଥିକୃତ୍ । ମନନ ଓ ବୁଦ୍ଧି ତାଙ୍କର ହାତିଆର । ଆବେଗକୁ ସେ ବର୍ଜନ କରି ନାହାନ୍ତି, କିନ୍ତୁ କେବେ ଆବେଗ ନିକଟରେ ଆତ୍ମସମର୍ପଣ କରି ନାହାନ୍ତି । ବାଲ୍ୟକାଳ କଟିଛି ହଜାରିବାଗରେ । ବର୍ତ୍ତମାନ କଲିକତାର ଏକ ପ୍ରଖ୍ୟାତ ସାହିତ୍ୟ ପତ୍ରିକା ସଙ୍ଗରେ ଯୁକ୍ତ । ଜନ୍ମ ୨୪-ପରଗଣା ଜିଲ୍ଲାରେ । ଜୀବନର ପାଖରେ ହିଁ ସେ ମୃତ୍ୟୁକୁ ଦେଖିଛନ୍ତି । ତାଙ୍କ ଗଳ୍ପ ଉପନ୍ୟାସରେ ଜୀବନ-ଚେତନା ଓ ମୃତ୍ୟୁ-ଚେତନା ଏକ ବୃନ୍ତରେ ଧୃତ । ତାଙ୍କର ବହୁ କାହାଣୀ ଚଳଚ୍ଚିତ୍ରରେ ରୂପାୟିତ ।

## ରମାପଦ ଚୌଧୁରୀ (1922)

ସଂପ୍ରତିକ ବଙ୍ଗଳା କଥାସାହିତ୍ୟର ଅନ୍ୟତମ ପ୍ରଧାନ ଲେଖକ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଲେଖିବାକୁ ଆରମ୍ଭ କରନ୍ତି । ଜନ୍ମ ଖଡ଼୍ଗପୁରରେ । ଛୋଟନାଗପୁର ଅଞ୍ଚଳରେ ଚାକିରି ଉପଲକ୍ଷରେ କିଛିଦିନ ଥିଲେ । ନାନା ଚାକିରିପରେ ବର୍ତ୍ତମାନ କଲିକତାରେ ଏକ ଦୈନିକ ପତ୍ରିକାରେ ବିଭାଗୀୟ ସମ୍ପାଦକ । ଅରଣ୍ୟର ପଟଭୂମିରେ ଅନେକ ଗଳ୍ପ ଲେଖିଛନ୍ତି ଏକ ସମୟରେ । ବର୍ତ୍ତମାନ ସହରଜୀବନ ଦେଇହିଁ ଗଳ୍ପ-ଉପନ୍ୟାସ ଲେଖନ୍ତି । ତାଙ୍କ କାହାଣୀକୁନେଇ ଚଳଚ୍ଚିତ୍ର ହୋଇଛି । ତାଙ୍କ ଭାଷା ମାର୍ଜିତ, ଲାବଣ୍ୟମଣ୍ଡିତ । କେବଳ ବିଷୟରେ ବା ବୈଚିତ୍ର୍ୟରେ ଅଭିନବତ୍ୱ ନୁହେ, ଟ୍ରିଟ୍‌ମେଣ୍ଟରେ ବି ସେ ସ୍ୱକୀୟ । ଜୀବନର ପ୍ରତି ଘାଟରେ ସେ ନୌକା ଭିଡ଼ିଛନ୍ତି, କିନ୍ତୁ ଅନ୍ତରେ ସେ ସ୍ଥିତଧୀ । ରବୀନ୍ଦ୍ର ପୁରସ୍କାରରେ ସମ୍ମାନିତ ।

## ସୈୟଦ ମୁସ୍ତାଫା ସିରାଜ (1930)

ସ୍ୱାଧୀନତା ପରବର୍ତ୍ତୀ ପର୍ବର ଅପେକ୍ଷାକୃତ ତରୁଣ ଗୋଷ୍ଠୀର ଲେଖକ । ଜନ୍ମ ମୁର୍ଶିଦାବାଦ, ଗ୍ରାମରେ । ଜୀବନର ଅଭିଜ୍ଞତା ବିଚିତ୍ର । ମୁର୍ଶିଦାବାଦର ଭ୍ରାମ୍ୟମାଣ ଆଲକାପ ଦଳର 'ମାଷ୍ଟର' ଗୀତକାର ଥିଲେ (୧୯୫୦-୫୮) ସାମ୍ବାଦିକତା କରନ୍ତି ତା

ଆଗରୁ (୧୯୪୯-୫୦), ବର୍ତ୍ତମାନ କଲିକତାରେ ପ୍ରଖ୍ୟାତ ଦୈନିକପତ୍ର ସଙ୍ଗେ ଯୁକ୍ତ । ତାରାଶଙ୍କର ମାର୍ଗରେ ଲେଖୁ ଲେଖୁ ସ୍ୱକୀୟତାରେ ପହଞ୍ଚିଯାଆନ୍ତି । ପ୍ରଥମ ଗଳ୍ପ ଲେଖନ୍ତି 'ଦେଶ'ରେ 'ଭଲପାଇବା' ଓ 'ଡାଉନ୍ ଟ୍ରେନ' । ବର୍ତ୍ତମାନ ଲେଖାହିଁ ମୁଖ୍ୟ ଜୀବିକା । ବଙ୍ଗଳାର ମାଟିର ମଣିଷ ତାଙ୍କ ରଚନାରେ ଯେପରି ଜାଗା ପାଇଛି, ସେମିତି ସହରର ମଣିଷ ବି । ତୀକ୍ଷ୍ଣ ସମାଜ ସଚେତନ ଲେଖକ । ପ୍ରଚୁର ଲେଖନ୍ତି ।

## ମତି ନନ୍ଦୀ (1932)

ଉତ୍ତର କଲିକତାରେ ଏକ ବୃନିୟାଦୀ ବଂଶରେ ଜନ୍ମ । ଅଟମୋବାଇଲ୍ ଇଞ୍ଜିନିୟରିଂ ଡିପ୍ଲୋମାଧାରୀ । ଷ୍ଟେଟ ଟ୍ରାନ୍ସପୋର୍ଟରେ ତୃଇବର୍ଷ ଶିକ୍ଷାନବିଶୀ କରି ବି. ଏ. ପାସ୍ କରି ସାମ୍ବାଦିକତା କର୍ମରେ ଆତ୍ମନିୟୋଗ କରନ୍ତି । ବର୍ତ୍ତମାନ କଲିକତାର ଏକ ଦୈନିକ ପତ୍ରିକାର କ୍ରୀଡ଼ା-ବିଭାଗର ସମ୍ପାଦକ । କ୍ରିକେଟ ଅନୁରାଗୀ । କ୍ରିକେଟ୍ ଉପରେ ଗୋଟିଏ ବହି ଲେଖିଛନ୍ତି । 'ଦେଶ'ରେ 'ଶ୍ୱେତ' ଗଳ୍ପ (୧୯୫୬) ଲେଖି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରନ୍ତି । ତାଙ୍କ ଲେଖାର ଭଙ୍ଗୀ ରିଜୁ, ବାହୁଲ୍ୟ ବର୍ଜିତ । ରୂଢ଼ ବାସ୍ତବର ମାଟିରେ ଛିଡ଼ା ହୋଇ ମଣିଷ ପ୍ରତି ବିଶ୍ୱସ୍ତ ରହିବାହିଁ ସେ ଅଭ୍ୟସ୍ତ । ମଧ୍ୟବିତ୍ତ ଜୀବନର ନିପୁଣ ରୂପକାର ।

## ସୁନୀଲ ଗଙ୍ଗୋପାଧ୍ୟାୟ (1934)

ଜନ୍ମ ଫରିଦପୁରରେ । କବି ଓ କଥା ସାହିତ୍ୟିକ । 'ଦେଶ'ରେ ପ୍ରକାଶିତ 'ଏକଟି କବିତା' ତାଙ୍କୁ ଚର୍ଚ୍ଚିତ କରେ । କବି ସୁନୀଲ ନା କଥାଶିଳ୍ପୀ ସୁନୀଲ କିଏ ବେଶୀ ଜନପ୍ରିୟ କହିବା କଠିନ । ନାନା ଧରଣର ଚାକିରୀ କରିଛନ୍ତି । ବର୍ତ୍ତମାନ କଲିକତାର ଏକ ଦୈନିକ ପତ୍ରିକା ସଙ୍ଗରେ ଯୁକ୍ତ । ଆମେରିକା ଭ୍ରମଣ କରନ୍ତି ୧୯୬୦ରେ । ପ୍ରଚୁର ଲେଖନ୍ତି । କେତୋଟି ଗଳ୍ପ ଚଳଚ୍ଚିତ୍ରରେ ରୂପାୟିତ ହୋଇଛି । ପରିଚିତ ମଧ୍ୟବିତ୍ତ ଜୀବନର ନାନା ଆବେଗ ଓ ଅନୁଭବକୁ ସେ ହାର୍ଦ୍ଦ୍ୟ ଭଙ୍ଗୀରେ ନିପୁଣ କାହାଣୀ ବୟନ ମାଧ୍ୟମରେ ଉପସ୍ଥିତ କରନ୍ତି । ଭାଷାର ଲାବଣ୍ୟ, ଅଙ୍ଗିକର ପାରିପାଟ୍ୟ, ଗଳ୍ପର ଟାଣ ସୁନୀଲଙ୍କୁ ଜନପ୍ରିୟ କରିଛି ।

## ପ୍ରଫୁଲ୍ଲ ରାୟ (1934)

ଜନ୍ମ ଢାକାରେ । ଆଞ୍ଚଳିକ ଜୀବନକୁ ଅବଲମ୍ବନ କରି ଉପନ୍ୟାସ ଲେଖି ସାହିତ୍ୟ ଜୀବନ ଆରମ୍ଭ କରନ୍ତି । 'ଦେଶ'ରେ ପ୍ରକାଶିତ 'ପୂର୍ବପାର୍ବତୀ' ଉପନ୍ୟାସ ତାଙ୍କୁ ଚର୍ଚ୍ଚିତ କରେ । ତାଙ୍କର ଉଚ୍ଛାଶୀ ଉପନ୍ୟାସ 'କେୟାପାତାର ନୌକା' (ଛ ଖଣ୍ଡ) ଏକାନ୍ତର ବଙ୍ଗାଳୀ ଜୀବନର ଝଲକ୍ । ବର୍ତ୍ତମାନ କଲିକତାରେ ଏକ ଦୈନିକ ପତ୍ରିକାର ବିଭାଗୀୟ ସମ୍ପାଦକ । ତାଙ୍କ ବହି ଅବଲମ୍ବନରେ କେତୋଟି ଛବି ହୋଇଛି । ହାର୍ଦ୍ଦ୍ୟ ଭଙ୍ଗୀରେ ନିବିଡ଼ ଆନ୍ତରିକତାରେ ସେ କାହାଣୀକୁ ଉପସ୍ଥାପିତ କରନ୍ତି । କାହାଣୀ ବୟନ ଓ ଚରିତ୍ର ଚିତ୍ରଣ ଏ ଉଭୟ ଦିଗରେ ତାଙ୍କର ସମାନ ନୈପୁଣ୍ୟ ।

## ଶୀର୍ଷେନ୍ଦୁ ମୁଖୋପାଧ୍ୟାୟ (1935):

ଜନ୍ମ ମୟମନସିଂହରେ (ବାଂଲାଦେଶ) । ବୃତ୍ତି ଶିକ୍ଷକତା, '୧୯୬୦ରେ 'ଦେଶ'ରେ 'ଜଳତରଙ୍ଗ' ଗଳ୍ପଟି ପ୍ରକାଶ ପାଇବା ସଙ୍ଗେ ପ୍ରତିଷ୍ଠା ପାଆନ୍ତି ଶ୍ରେଷ୍ଠ ଗଳ୍ପକାର ହିସାବରେ । ଏ ପର୍ଯ୍ୟନ୍ତ ଦଶଟି ଉପନ୍ୟାସ ଏବଂ ଅର୍ଦ୍ଧଶତାଧିକ ଗଳ୍ପ ଲେଖିଛନ୍ତି । ତାଙ୍କ ଗଳ୍ପ ଉପନ୍ୟାସରେ ବାସ୍ତବ ଆଉ ମଗ୍ନ ଚୈତନ୍ୟର ଟୋଓଟସ ଲକ୍ଷ୍ୟ କରାଯାଏ ! ଶୀର୍ଷେନ୍ଦୁର ଗଳ୍ପରେ ଅସ୍ଥିରତା ନାହିଁ, ଅଛି ସ୍ଥିର ବିଶ୍ୱାସ, ଆନ୍ତରିକତାବୋଧ, ମଗ୍ନ-ଚେତନାରେ ଆସ୍ଥା । ଆତ୍ମଜୈବନିକ ଢଙ୍ଗରେ ରଚିତ ଗଳ୍ପରେ ସେ ଅନ୍ତର୍ଲୋକର ଗଭୀରରେ ସତ୍ୟର ଅନ୍ୱେଷଣ କରନ୍ତି ।

## ଦେବେଶ ରାୟ (1936):

ଜଳପାଇଗୁଡ଼ିରେ ରହନ୍ତି । ବଙ୍ଗଳା ସାହିତ୍ୟର ଅଧ୍ୟାପକ । ଷଷ୍ଠ ଦଶକରେ ବଙ୍ଗଳା ଶ୍ରେଷ୍ଠଗଳ୍ପ ଆନ୍ଦୋଳନର ନେତୃସ୍ଥାନୀୟ ଲେଖକ । ଉପସ୍ଥାପନା ଓ ଭାଷା ବ୍ୟବହାରରେ ସବିଶେଷ ମନଯୋଗୀ । ୧୯୬୧ରେ ତାଙ୍କର ପ୍ରଥମ ଗଳ୍ପ ଗ୍ରନ୍ଥ 'ଦେବେଶ ରାୟର ଗଳ୍ପ' ପ୍ରକାଶିତ ହୁଏ । ତାଙ୍କର ପ୍ରଥମ ଉପନ୍ୟାସ 'ଯଯାତି' ବାହାରେ ୧୯୭୧ରେ । 'ଦେଶ'ରେ 'ହାଡ଼କଟା' ଗଳ୍ପ ଲେଖା ପାଠକମାନଙ୍କ ନଜରକୁ ଆସନ୍ତି । ପ୍ରାୟ ଶହେଟି ଗଳ୍ପ ଲେଖିଛନ୍ତି ।